# ଜୀବନ ଓ ସଂସ୍କୃତି

ସଂକଳକ

ଡକ୍ଟର ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର



ପ୍ରକାଶକ :

ଶ୍ରୀ ଅଭିରାମ ମହାପାତ୍ର
ଗ୍ରନ୍ଥ ମନ୍ଦିର
କଟକ-୨ : ବ୍ରହ୍ମପୁର

ପ୍ରଥମ ପ୍ରକାଶ :

୧୯୬୭

ମୁଦ୍ରାକର :

ଶ୍ରୀ ଜୟରାମ ମହାପାତ୍ର
ଗ୍ରନ୍ଥ ପ୍ରକାଶିନୀ
ଚୁଡ଼ହାଟ
କଟକ—୧

ମୂଲ୍ୟ ଟ [redacted]

# ସୂଚୀପତ୍ର

# ଉପୋଦ୍‌ଘାତ

ପୃଥିବୀର ପ୍ରତ୍ୟେକ ସାହିତ୍ୟର ଆଦ୍ୟାବସ୍ଥା ପଦ୍ୟମୟ । ସଭ୍ୟତାର ବିକାଶ ଏବଂ ବିଜ୍ଞାନର ପ୍ରସାର ସଙ୍ଗେ ସଙ୍ଗେ ପରବର୍ତ୍ତୀକାଳରେ ସାହିତ୍ୟରେ ଗଦ୍ୟର ପ୍ରଚଳନ ହୋଇଥିଲା । ଗଦ୍ୟ ଆଧୁନିକ ଜୀବନର ଭାବ ପ୍ରକାଶର ଏକ ଶକ୍ତିଶାଳୀ ମାଧ୍ୟମ, ଏହା ସର୍ବବାଦୀ ସମ୍ମତ । ଗଦ୍ୟର ବିଭିନ୍ନ ବିଭାଗ ମଧ୍ୟ ସ୍ୱୀକୃତ; ଯଥା—କାହାଣୀ, ଉପନ୍ୟାସ, ଆଖ୍ୟାୟିକା, ନାଟକ ଏବଂ ପ୍ରବନ୍ଧ । ଏହି ସମସ୍ତ ବିଭାଗ ମଧ୍ୟରେ ବୈଜ୍ଞାନିକ ଯୁଗର ପ୍ରଭାବ ଓ ବିସ୍ତାରକୁ ସମର୍ଥ ଭାବରେ ଅଭିବ୍ୟକ୍ତ କରିପାରିବା ନିମନ୍ତେ ପ୍ରବନ୍ଧ ହିଁ ଏକମାତ୍ର ଶକ୍ତିଶାଳୀ ମାଧ୍ୟମ । ଜୀବନର ବିସ୍ତୃତି ଓ ବିକାଶ ଗଦ୍ୟରଚନା ମାଧ୍ୟମରେ ଯେପରି ପ୍ରାଞ୍ଜଳ ଓ ନିଖୁଣ ଭାବରେ ପ୍ରକାଶିତ ହୋଇ ପାରୁଛି ତାହା ଆଧୁନିକ ସାହିତ୍ୟର ଏକ ବିଶିଷ୍ଟ ସାଧନ । ପ୍ରବନ୍ଧ ସାଧାରଣତଃ ଲେଖକର ବୁଦ୍ଧିବୃତ୍ତି, ବିବୃତି କୌଶଳ ଏବଂ ବିବେଚନାକୁ ଅପେକ୍ଷା ରଖେ । ବିବେଚନାତ୍ମକ ପ୍ରବନ୍ଧ ଯେତେବେଳେ ଏକ ନିର୍ଦ୍ଦିଷ୍ଟ ଶୃଙ୍ଖଳାକୁ ଆଶ୍ରୟକରେ ସେତେବେଳେ ତାକୁ ନିବନ୍ଧ ବା ପ୍ରବନ୍ଧ କୁହାଯାଏ । ବିଷୟବସ୍ତୁ, ଭାଷା ନିର୍ବାଚନ ଏବଂ ଲେଖକର ଦୃଷ୍ଟିକୋଣ ପ୍ରବନ୍ଧ ରଚନାରେ ନିର୍ଦ୍ଦିଷ୍ଟ । ଜଣେ ପାଶ୍ଚାତ୍ୟ ସମାଲୋଚକଙ୍କ ମତରେ ପ୍ରବନ୍ଧର ସଜ୍ଞା ହେଉଛି. "While therefore, we know fairly well what to expect of a poem called lyric and even of one called an epic or a tragedy, we have hardly the vaguest idea of what we shall find in a composition entitled an essay." କାବ୍ୟ କବିତା ଏବଂ ଅନ୍ୟାନ୍ୟ ରଚନାରେ ପାଠକ ଯାହା ଆଶା କରିଥାଏ ତାହାର ଏକ ସ୍ପଷ୍ଟ ଧାରଣା ଆଗରୁ ଥାଏ; କିନ୍ତୁ ପ୍ରବନ୍ଧରେ ଯେ କୌଣସି ବିଷୟକୁ ଆଶା କରି ଯାଇପାରେ । ପ୍ରାବନ୍ଧିକ ଜନସନ୍‌ଙ୍କ ଭାଷାରେ ପ୍ରବନ୍ଧ ହେଉଛି ବନ୍ଧନହୀନ ଚିନ୍ତାଧାରାର ବିଳାସ । ଆଉ କେହି କେହି କହନ୍ତି ଏହା ବିକ୍ଷିପ୍ତ ଚିନ୍ତାର ବିଳାସ । ଆଉ ମଧ୍ୟ କେତେକ କହନ୍ତି ଏହା ଏକ ଶିଳ୍ପାତ୍ମକ ରଚନା । ତେଣୁ ସଂକ୍ଷେପରେ କହିବାକୁ ଗଲେ କଳ୍ପନା, ବୁଦ୍ଧି, ଆବେଗ ଏହି ସମସ୍ତର ସମନ୍ୱୟରେ ସୁକ୍ରମଯୁକ୍ତ ଏବଂ ଶୃଙ୍ଖଳିତ ଭାବରେ ଯେତେବେଳେ ଲେଖକ ନିଜର ଚିନ୍ତାରାଶିକୁ ଏକ ସୂତ୍ରରେ ଗ୍ରଥିତ କରେ ସେତେବେଳେ ତାହା ପ୍ରବନ୍ଧ ନାମରେ ଅଭିହିତ ହୁଏ । ସଫଳତା ଦୃଷ୍ଟିରୁ ପ୍ରବନ୍ଧର ପରିସର ମଧ୍ୟ ବିସ୍ତୀର୍ଣ୍ଣ । ଲେଖକର ବ୍ୟକ୍ତିଗତ ଭାବ ପ୍ରକାଶ ଓ ଜ୍ଞାନ ପ୍ରକାଶର ଯେତେପ୍ରକାର ପନ୍ଥା ଅଛି ପ୍ରବନ୍ଧହିଁ ସେମାନଙ୍କ ମଧ୍ୟରେ ସର୍ବାପେକ୍ଷା ଶକ୍ତିଶାଳୀ ଓ ଅଧିକ କାର୍ଯ୍ୟକାରୀ ।

ପ୍ରବନ୍ଧ ସାଧାରଣତଃ ଦୁଇ ଭାଗରେ ବିଭକ୍ତ—

(୧) ବ୍ୟକ୍ତିନିଷ୍ଠ ପ୍ରବନ୍ଧ ।

(୨) ବସ୍ତୁନିଷ୍ଠପ୍ରବନ୍ଧ । ଏହା ପୁଣି ବିଷୟାତ୍ମକ (narrative), ବର୍ଣ୍ଣନାତ୍ମକ (descriptive), ତାତ୍ତ୍ୱିକ ବା ଭାବନାତ୍ମକ (reflective or argumative), ବାଖ୍ୟାମୂଳକ ବା ବିଶ୍ଳେଷଣାତ୍ମକ (critical) । ପ୍ରବନ୍ଧର ଏହି ପ୍ରକାର ବର୍ଗୀକରଣ ପାଠକଙ୍କୁ ଅନେକ ସମୟରେ କଥା ବସ୍ତୁ ଉପଲବ୍ଧି କରିବାରେ ସାହାଯ୍ୟ କରିଥାଏ ।

ପ୍ରାଚୀନକାଳରେ କାବ୍ୟକୁ ପ୍ରବନ୍ଧ ନାମରେ ନାମିତ କରାଯାଉଥିଲା । ପ୍ରତ୍ୟେକ ପ୍ରବନ୍ଧରେ କେତେକ ନିର୍ଦ୍ଦିଷ୍ଟ କ୍ରମ ଓ ଶୃଙ୍ଖଳା ରହିବା ଆବଶ୍ୟକ—

(୧) ପ୍ରସ୍ତାବନା
(୨) ତର୍କ ବିତର୍କର ଖଣ୍ଡନମଣ୍ଡନ
(୩) ଉଭୟ ପକ୍ଷର ତୁଳନାତ୍ମକ ବିଚାର
(୪) ସ୍ୱପକ୍ଷ ପ୍ରଦର୍ଶନ
(୫) ପରିଚ୍ଛେଦ କିମ୍ବା ଉପସଂହାର ।

ପୁନଶ୍ଚ ପ୍ରତ୍ୟେକ ପ୍ରବନ୍ଧର ସାର୍ଥକତା, ଶୈଳ୍ପିକଯୋଗ୍ୟତା ନିମ୍ନଲିଖିତ ଦୃଷ୍ଟି କୋଣରୁ ଆଲୋଚ୍ୟ—

(୧) କଥା ବସ୍ତୁର ଉପାଦେୟତା ବା ଯୋଗ୍ୟତା
(୨) ବିଷୟ ଉପଯୋଗୀ ଭାଷାର ଆବଶ୍ୟକତା
(୩) ବିଷୟ ଉପସ୍ଥାପନାରେ କୌଶଳ, ସ୍ପଷ୍ଟତା କିମ୍ବା ଅସ୍ପଷ୍ଟତା
(୪) ଉପସ୍ଥିତ ବିଷୟର ସାର୍ଥକ ପ୍ରତିଫଳନ
(୫) ବିଷୟ ବସ୍ତୁର ପ୍ରାମାଣିକତା
(୬) ଶେଷରେ ପ୍ରାବନ୍ଧିକଙ୍କର ଜୀବନ-ଦର୍ଶନ ।

ପୁନଶ୍ଚ ତନ୍ମଧ୍ୟ ବା ବ୍ୟକ୍ତିନିଷ୍ଠ ପ୍ରବନ୍ଧର ନିମ୍ନଲିଖିତ ଯୋଗ୍ୟତା ଥିବା ଆବଶ୍ୟକ—

(୧) ବିଷୟ ବସ୍ତୁର ପୂର୍ଣ୍ଣତା ଓ ଶୃଙ୍ଖଳା
(୨) ପ୍ରବନ୍ଧର ଆରମ୍ଭ, ମଧ୍ୟ ଓ ପ୍ରାନ୍ତ ସୁବିନ୍ୟସ୍ତ ହେବା ଉଚିତ
(୩) ଭାଷା ଯଥାର୍ଥ ହେବା ଉଚିତ
(୪) ଚିନ୍ତାର ଗମ୍ଭୀରତା
(୫) ସର୍ବୋପରି ପାଠକ ମନରେ ପ୍ରବନ୍ଧର ପ୍ରଭାବ ।

ପ୍ରବନ୍ଧ ସାହିତ୍ୟର ଏହାହିଁ ହେଉଛି ସଂକ୍ଷିପ୍ତ ସ୍ୱରୂପ ସଜ୍ଞା । ଅନେକ ସମୟରେ ଏହା ଐତିହାସିକ, ସାମାଜିକ ଏବଂ ରମ୍ୟରଚନା ଅନ୍ତର୍ଗତ ହୋଇପାରେ । ମୌଳିକ ଆତ୍ମଗତ ଦୃଷ୍ଟିଭଙ୍ଗୀ ବ୍ୟକ୍ତିନିଷ୍ଠ ପ୍ରବନ୍ଧର ପ୍ରଧାନ ଯୋଗ୍ୟତା । ପ୍ରବନ୍ଧରେ ପ୍ରମାଣିତ ବିଷୟ ବସ୍ତୁର ମାଧ୍ୟମରେ ଲେଖକ ନିଜର ଦୃଷ୍ଟିକୋଣର ପରିଚୟ ଦେଇଥାଏ । ସେଥିଯୋଗୁଁ ବ୍ୟକ୍ତିନିଷ୍ଠ ପ୍ରବନ୍ଧରେ ଜୀବନର ବ୍ୟକ୍ତିସ୍ଫୁର୍ତି, ଅନୁଭୂତି, ଅଭିଜ୍ଞତା ପ୍ରକାଶ ପାଇଥାଏ ।

ବସ୍ତୁନିଷ୍ଠ ପ୍ରବନ୍ଧର ପ୍ରଧାନ ଉପାଦାନ ହେଉଛି ସୁକଳ୍ପିତ ବିଷୟ ବସ୍ତୁ । ଉପାଦାନ, ଘଟଣାବଳୀ ଓ ତଥ୍ୟର ସମାବେଶ ଦ୍ୱାରା ପ୍ରାବନ୍ଧିକ ନିଜର ପ୍ରବଣତା ସେଥିରେ ପ୍ରତିଫଳିତ କରାଇଥାନ୍ତି ।

ଓଡ଼ିଆ ସାହିତ୍ୟର ଆଦ୍ୟାବସ୍ଥା ପଦ୍ୟମୟ ଥିଲା । ଶହ ଶହ ବର୍ଷ ଧରି କାବ୍ୟର ଆକର୍ଷଣରେ ଓଡ଼ିଆ ସାହିତ୍ୟ ଓତଃପ୍ରୋତ ଜଡ଼ିତ ଥିଲା । କେତେବେଳେ କଦାଚିତ ବିକ୍ଷିପ୍ତ ଭାବରେ ଗଦ୍ୟ ରଚନା ସମ୍ଭବ ହୋଇଥିଲା । ଇଂରେଜମାନଙ୍କ ଆଗମନ ପରେ ଊନବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟରେ ଯେଉଁ ଅଭ୍ୟୁଦୟ ଘଟିଥିଲା, ତାହାର ଏକ ଦିଗ ଥିଲା ପ୍ରବନ୍ଧ ସାହିତ୍ୟର ବିକାଶ ।

ମାଦଳା ପାଞ୍ଜି, ରୁଦ୍ରସୁଧାନିଧି, ସୋମନାଥ ବ୍ରତକଥା, ଚତୁର ବିନୋଦ ପ୍ରଭୃତିକୁ ପ୍ରାଚୀନ କାଳର ପ୍ରତୀକ ଗଦ୍ୟ ରଚନା ବୋଲି ଧରିନିଆ ଯାଇଛି । କିନ୍ତୁ ପ୍ରକୃତରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପତ୍ରପତ୍ରିକାର ପ୍ରକାଶନ ଓ ପାଠ୍ୟ ପୁସ୍ତକର ପ୍ରଣୟନ ପରେ ଗଦ୍ୟ ସାହିତ୍ୟର ସୂତ୍ରପାତ ହେଲା । କବିବର ରାଧାନାଥ ରାୟଙ୍କର ଉତ୍କଳ ଦର୍ପଣ ପତ୍ରିକାରେ ପ୍ରକାଶିତ 'ବିବେକୀ' ହେଉଛି ଏକ ଭାବାତ୍ମକ ବା ବିବେଚନାତ୍ମକ ପ୍ରବନ୍ଧ । ଏହା ପ୍ରାୟ ୧୮୭୩ ମସିହାର ଘଟଣା । ଯଥାର୍ଥରେ ଭକ୍ତକବି ମଧୁସୂଦନ ରାଓ, ଫକୀରମୋହନ ସେନାପତି ପ୍ରଭୃତିଙ୍କ ହାତରେ ପ୍ରବନ୍ଧର ବିକାଶ ଘଟିଥିଲା । ସମ୍ପାଦକ ବିଶ୍ୱନାଥ କର, ଗୌରୀଶଙ୍କର ରାୟ, ନୀଳମଣି ବିଦ୍ୟାରତ୍ନ, ପ୍ୟାରୀମୋହନ ଆଚାର୍ଯ୍ୟ ପ୍ରଭୃତିଙ୍କ ଯତ୍ନରେ ଊନବିଂଶ ଶତାବ୍ଦୀର ଶେଷ-ପାଦରେ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଉଜ୍ଜ୍ୱଳ ସମ୍ଭାବନା ସ୍ୱୀକୃତ ହୋଇଥିଲା । ସେହି ଆଦର୍ଶ ପର୍ଯ୍ୟାୟର ପ୍ରେରଣା ଓ ପ୍ରଭାବରେ ମୃତ୍ୟୁଞ୍ଜୟ ରଥ, କପିଳେଶ୍ୱର ବିଦ୍ୟାରତ୍ନ, ଶଶିଭୂଷଣ ରାୟ ପ୍ରଭୃତି ବହୁ ପ୍ରାବନ୍ଧିକ ସୃଷ୍ଟି ହୋଇଥିଲେ ।

ଆଧୁନିକ ଯୁଗରେ ପ୍ରାବନ୍ଧିକ ବିପିନବିହାରୀ ରାୟ, ରତ୍ନାକର ପତି, ବାସୁଦେବ ମହାପାତ୍ର, ପଣ୍ଡିତ ନୀଳକଣ୍ଠ ଦାସ, ଜଳନ୍ଧର ଦେବ, ଜଗବନ୍ଧୁ ସିଂହ, ଗୋପାଳଚନ୍ଦ୍ର ପ୍ରହରାଜ, ଚିନ୍ତାମଣି ଆଚାର୍ଯ୍ୟ ଓ କୃପାସିନ୍ଧୁ ମିଶ୍ର ପ୍ରଭୃତି ବହୁ ଚିନ୍ତାଶୀଳ ଲେଖକ ସେମାନଙ୍କର ରଚନାଦ୍ୱାରା ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ସତ୍ୟବାଦୀ

ଜାତୀୟ ବିଦ୍ୟାଳୟ ଓ ସତ୍ୟବାଦୀ ପତ୍ରିକାର ପ୍ରତିଷ୍ଠାତା ପଣ୍ଡିତ ଗୋପବନ୍ଧୁ ଦାସ ଓଡ଼ିଆ ପ୍ରବନ୍ଧ ରଚନାରେ ଏକ ନିର୍ଦ୍ଦିଷ୍ଟ ଗଦ୍ୟ ଶୈଳୀ ପ୍ରବର୍ତ୍ତନ କରିଯାଇ ଅଛନ୍ତି । ଉତ୍କଳ ଦୀପିକା, ଉତ୍କଳ ମଧୁପ, ଉତ୍କଳ ପ୍ରଭା, ଉତ୍କଳ ସାହିତ୍ୟ, ମୁକୁର ଏବଂ ସତ୍ୟବାଦୀ ପ୍ରଭୃତି ବିଶିଷ୍ଟ ପତ୍ରପତ୍ରିକା ଓଡ଼ିଆ ସାହିତ୍ୟରେ ଆଧୁନିକ ପ୍ରବନ୍ଧ ଯୁଗର ବିକାଶ ପାଇଁ ଦାୟୀ । ଏହାପରେ ଭକ୍ତପ୍ରଦୀପ, ନବଭାରତ, ସହକାର, ଝଙ୍କାର ପ୍ରଭୃତି ଉଚ୍ଚକୋଟୀର ସାହିତ୍ୟ ପତ୍ରିକା ଓଡ଼ିଆ ପ୍ରବନ୍ଧ ସାହିତ୍ୟର ବିଭିନ୍ନ ଦିଗ ପ୍ରସାର କରିଛନ୍ତି ।

ଗତ ତିରିଶ ବର୍ଷ ଧରି ଓଡ଼ିଆ ସାହିତ୍ୟରେ ପ୍ରବନ୍ଧ ସାହିତ୍ୟର ବିଶେଷ ଉନ୍ନତି ଘଟିଅଛି । ବିଶେଷତଃ ବୈଜ୍ଞାନିକ ବିଷୟ ବସ୍ତୁକୁ ଆଶ୍ରୟ କରି ବହୁ ପ୍ରବନ୍ଧ ରଚିତ ହେଉଅଛି । ସେଥିପାଇଁ ବର୍ତ୍ତମାନ ପ୍ରବନ୍ଧର ବ୍ୟାପ୍ତି ଓ ପରିସର ସ୍ୱାଧୀନତା ବର୍ଷ ତଳେ ଲିଖିତ ପ୍ରବନ୍ଧର ବ୍ୟାପ୍ତି ଓ ପରିସରଠାରୁ ଭିନ୍ନ । ବର୍ତ୍ତମାନ ଆଧୁନିକ ପ୍ରାବନ୍ଧିକଙ୍କର ଦୃଷ୍ଟିକୋଣ ସଂପୂର୍ଣ୍ଣ ସମାଜ ସଚେତନ ଓ ଜାତୀୟତା ପ୍ରଭାବ ସମନ୍ୱିତ । ବର୍ତ୍ତମାନ ରାଜନୀତି, ସମାଜନୀତି, ସମାଲୋଚନା ପ୍ରବନ୍ଧର କଥାବସ୍ତୁ ନିର୍ବାଚନରେ ପ୍ରଧାନ ସ୍ଥାନ ଅଧିକାର କରିଅଛି । ଏହି ପ୍ରକାର ଶୈଳୀ ଓ ସମାଜ ସଚେତନ ପୃଷ୍ଠଭୂମିରେ ସଂଶ୍ଳିଷ୍ଟ ପ୍ରବନ୍ଧ ସଂବେଦନଟି ପରିକଳ୍ପିତ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ବିଶ୍ୱବିଦ୍ୟାଳୟମାନଙ୍କର ଅଧ୍ୟାପନା ସ୍ତରରେ ଆଞ୍ଚଳିକ ଭାଷାର ଗୁରୁତ୍ୱଦୃଷ୍ଟିରୁ ବିଶ୍ୱବିଦ୍ୟାଳୟ ଶିକ୍ଷା ଆରମ୍ଭ କରୁଥିବା ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ଏହି ସଙ୍କଳନଟି ପ୍ରସ୍ତୁତ । ଆଧୁନିକ ଓଡ଼ିଆ ପ୍ରବନ୍ଧସାହିତ୍ୟର ବିଭିନ୍ନ ଦିଗ ସହିତ ଛାତ୍ରମାନଙ୍କୁ ପରିଚିତ କରାଇବା ଏହାର ଉଦ୍ଦେଶ୍ୟ ।

**ସଙ୍କଳକ**

# ସଭ୍ୟତା ଓ ବିଜ୍ଞାନ

ଡକ୍ଟର ବଂଶୀଧର ସାମନ୍ତରାୟ

ମାନବ ଯେଉଁ ବୈଷୟିକ, ଶାରୀରିକ, ମାନସିକ ଓ ନୈତିକ ଉନ୍ନତି ଏବଂ ଜ୍ଞାନ ସାଧନ କରିଥାଏ, ତାହାକୁ ଆମ୍ଭେମାନେ ସଭ୍ୟତା ଆଖ୍ୟା ଦେଇଥାଉଁ । ବିଭିନ୍ନ ବିଭାଗର ବିଭିନ୍ନ ପରିମାଣର ଉନ୍ନତି ଅନୁସାରେ ସଭ୍ୟତା ନ୍ୟୂନତର ବା ଉଚ୍ଚତର ବୋଲି ନିରୂପିତ ହୋଇଥାଏ । ପ୍ରାଚୀନ ଆଦିମ ମାନବ କିମ୍ବା ଅଧୁନାତନ ନିଗ୍ରୋ ବା ପାର୍ବତ୍ୟ ବନ୍ୟଜାତିମାନଙ୍କ ସହିତ ଆମ୍ଭମାନଙ୍କୁ ତୁଳନା କଲେ ଆମ୍ଭେମାନେ ଦେଖିପାରିବା ଯେ, ସଭ୍ୟତାର ଅର୍ଥ କଣ ଓ ତାର ମୂଲ୍ୟ କେତେ ? ବିଭିନ୍ନ କାଳରେ ଓ ବିଭିନ୍ନ ଯୁଗରେ ବିଭିନ୍ନ ଜାତିମାନଙ୍କର ଏହି ସଭ୍ୟତାର ଆଦର୍ଶ ଭିନ୍ନ ଭିନ୍ନ ଥିଲା । ଆମ୍ଭେମାନେ ପ୍ରାଚୀନ ରୋମୀୟ ଓ ଗ୍ରୀସୀୟ ସଭ୍ୟତାରେ ଦେଖିବାକୁ ପାଉଁ ଯେ, ଯାବତୀୟ ବୈଷୟିକ ଉନ୍ନତି ସେମାନଙ୍କ ସଭ୍ୟତାର ଆଦର୍ଶରୂପେ ପରିଗଣିତ ହେଉଥିଲା । ଭୋଗ ଥିଲା ତାଙ୍କ ସଭ୍ୟତାର ଆଦର୍ଶ । ପ୍ରାଚୀନ ମିଶରୀୟ ସଭ୍ୟତା ମଧ୍ୟ ଏହି ଭାବରେ ଅନୁପ୍ରାଣିତ । ମାତ୍ର ଭାରତୀୟ ସଭ୍ୟତା ଥିଲା ଅନ୍ୟ ପ୍ରକାର । ଭାରତୀୟ ସଭ୍ୟତାର ଆଦର୍ଶ ଥିଲା ତ୍ୟାଗ ଓ ଆତ୍ମସଂଯମ । ସର୍ବବିଧ ବୈଷୟିକ ଜଞ୍ଜାଳକୁ ସେମାନେ ବିପଦର ହେତୁବୋଲି ଭାବୁଥିଲେ । ତଥାପି ବୈଷୟିକ ଉନ୍ନତି ସେହି ତ୍ୟାଗ ଧର୍ମ ଦେଇ ସମ୍ଭବ ହୋଇଥିଲା । ବିଷୟ-ଜଞ୍ଜାଳ ପରିବେଷ୍ଟିତ ଗୃହସ୍ଥ ଯାବତୀୟ ପାରିପାର୍ଶ୍ୱିକ ପଦାର୍ଥ ସହିତ ସଂଶ୍ଳିଷ୍ଟ ନଥିଲା । ତ୍ୟାଗ ମାର୍ଗରେ ଦୀକ୍ଷିତ ହୋଇ ଯେତେବେଳେ ସେ ବିଷୟର ମାଲିକ ହୁଏ, ତେତେବେଳେ ଭୋଗମାର୍ଗଗାମୀ ଜାତିଠାରୁ ତାର ପଥ ସମ୍ପୂର୍ଣ୍ଣ ପୃଥକ୍ ହୋଇଯାଏ । ପ୍ରାଚୀନ ଗ୍ରୀସ୍ ଓ ରୋମ ସଭ୍ୟତାର ବୈଷୟିକ ଉନ୍ନତିର ନିଦର୍ଶନ ଯାହା ଆମେ ପାଉଁ, ତାହା ଇଚ୍ଛାକୃତ; ମାତ୍ର ଭାରତର ବୈଷୟିକ ଉନ୍ନତିର ନିଦର୍ଶନ ଯାହା ରୋମୀୟ ଓ ଗ୍ରୀସୀୟ ନିଦର୍ଶନମାନଙ୍କଠାରୁ କୌଣସି ଅଂଶରେ ନ୍ୟୂନତର ନୁହେଁ—ତାହାର ସୃଷ୍ଟି ଓ ଉନ୍ନତି ଇଚ୍ଛାକୃତ ନୁହେଁ, ତାହା ତ୍ୟାଗ ମାର୍ଗର ଏକତମ ସ୍ୱତଃସମ୍ଭୂତ ଫଳ ମାତ୍ର । ଭାରତର ବୈଶିଷ୍ଟ୍ୟ ତାର ଆଧ୍ୟାତ୍ମିକତା ।

ବିଭିନ୍ନ ଜାତିର ସଭ୍ୟତାର ଆଦର୍ଶ ଯାହା ହେଉନା କାହିଁକି, ବର୍ତ୍ତମାନ ପୃଥିବୀର ସଭ୍ୟତାର ଆଦର୍ଶ ହେଉଛି—ମାନବଜାତିର ସର୍ବାଙ୍ଗୀନ ଉନ୍ନତି ସାଧନ । ବୈଷୟିକ, ଶାରୀରିକ, ମାନସିକ, ନୈତିକ ଉନ୍ନତି ସହିତ ବିଶ୍ୱମାନବିକତାର ପ୍ରତିଷ୍ଠାନ ଓ ବିରାଟ ସୃଷ୍ଟି ରହସ୍ୟର ଉଦ୍‌ଘାଟନ ଓ ସେମାନଙ୍କ ମୂଳରେ କେଉଁ ମହାଶକ୍ତି ନିହିତ ଅଛି ଏବଂ ତାହା କଣ, ଏହାର ନିରୂପଣ ହିଁ ବର୍ତ୍ତମାନ ସଭ୍ୟତାର ଆଦର୍ଶ । ବିଭିନ୍ନ କାଳରେ ବିଭିନ୍ନ ଜାତି ଏହାର ଅଂଶ ବିଶେଷକୁ ତାର ସଭ୍ୟତାର ଆଦର୍ଶ ଧରିନେଉ-ଥିଲେ । ପୁଣି କୌଣସି କୌଣସି ଜାତି ଏମାନଙ୍କ ମଧ୍ୟରୁ ପ୍ରାୟଶଃ ଅଧିକାଂଶକୁ ନିଜ ସଭ୍ୟତାର ଆଦର୍ଶ-ଅଙ୍ଗୀଭୂତ କରିଥିଲେହେଁ ସେମାନଙ୍କର ସାଧନକୁ ସେମାନେ ଭିନ୍ନ ପଥଦେଇ ନିରୂପଣ କରିବାକୁ ଯାଇଥିଲେ । କେହି ଚିନ୍ତାରେ ନିରୂପିତ କରିବାକୁ ଚେଷ୍ଟିତ ଥିଲେ ଓ କେହି କାର୍ଯ୍ୟରେ ଚେଷ୍ଟିତ ଥିଲେ ଏବଂ ଏମାନଙ୍କ ମଧ୍ୟରୁ କେତେକ ସେହି ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିଥିବାର ପ୍ରକାଶ କରନ୍ତି । ହିନ୍ଦୁମାନେ କହନ୍ତି ସେମାନେ ଲକ୍ଷ୍ୟସ୍ଥାନ ପାଇଅଛନ୍ତି । ସେମାନଙ୍କର ବିଭିନ୍ନ ଦର୍ଶନ ଶାସ୍ତ୍ରନିହିତ ପ୍ରଣାଳୀ—ଦ୍ୱାରା ବିଶ୍ୱ ବିରାଟ ଶକ୍ତି କଣ ତାହା ମାନବ ନିରୂପଣ କରିପାରେ; ସେହି ପଥରେ ଚାଲେ ପ୍ରଥମରେ ଜୀବନର ଉଦ୍ଦେଶ୍ୟ ହୃଦୟଙ୍ଗମ ନ ହେଲେହେଁ, ଲକ୍ଷ୍ୟସ୍ଥଳରେ ଉପସ୍ଥିତ ହେଲା ପରେ ସ୍ପଷ୍ଟ ପ୍ରତିଭାତ ହେବ । ଏହାର ସାଧନ ପାଇଁ ଶାରୀରିକ, ମାନସିକ ଉନ୍ନତି ସର୍ବାଦୌ କରଣୀୟ । ଏହା କେବଳ ଶିକ୍ଷା, ସଂଯମ ଓ ବ୍ରହ୍ମଚର୍ଯ୍ୟ ପାଳନରେ ସମ୍ଭବପର ହୁଏ । ଏହାର ମୂଳରେ କଠୋର ସାଧନା ଦରକାର । ସେମାନଙ୍କ ମତରେ ସେମାନେ ସଭ୍ୟତାର ଉଚ୍ଚତମ ସୋପାନ ଆରୋହଣ କରିଥିଲେହେଁ ତାହାର ବିଲୋପ ସାଧନ କଲେ ସଭ୍ୟେତର ଜାତି । ଯେତେଦିନ ପର୍ଯ୍ୟନ୍ତ ଭାରତୀୟ ସଭ୍ୟତା ଉପରେ କାହାରି କେହି ହସ୍ତକ୍ଷେପ କରିପାରି ନଥିଲେ, ତାହା ସେପର୍ଯ୍ୟନ୍ତ ଅକ୍ଷୁଣ୍ଣ ଥିଲା । ଅନ୍ୟ ଜାତିମାନେ ମଧ୍ୟ ସେହିପରି ନିଜ ନିଜ ସଭ୍ୟତାର ଉତ୍କର୍ଷ ପ୍ରମାଣ କରିବାକୁ ଚେଷ୍ଟିତ ହୋଇଥାନ୍ତି । ମାତ୍ର ଆମ୍ଭେମାନେ ବର୍ତ୍ତମାନ ଏପରି ଏକ ପରିସ୍ଥିତିରେ ଉପସ୍ଥିତ ହୋଇଅଛୁଁ ଯେ, କାର୍ଯ୍ୟରେ ସେହିସବୁ ସାଧନ କରି ତାହାର ଯଥାର୍ଥତା ପ୍ରତିପାଦନ କରିବା ଅସମ୍ଭବ ହୋଇପଡ଼ିଅଛି; ତେଣୁ ସେହିସବୁ ସଭ୍ୟତା ପ୍ରଦର୍ଶିତ ପଥ ବିଷୟରେ ଆମ୍ଭମାନଙ୍କର ମତ ଯଥାଯଥ ଭାବରେ ଦିଆଯାଇ ନପାରେ ।

ବର୍ତ୍ତମାନ ଆଧୁନିକ ସଭ୍ୟତା ବିଷୟ ଆଲୋଚନା କରାଯାଉ । ଏହାର ଲକ୍ଷ୍ୟ ଆମ୍ଭେମାନେ ପୂର୍ବେ କହିଥାଇଁ, ବର୍ତ୍ତମାନ ଏହାର ପଥ କଣ ଦେଖାଯାଉ । ଆଜିପର୍ଯ୍ୟନ୍ତ ଆମ୍ଭେମାନେ ଆମ୍ଭମାନଙ୍କର ଆଦର୍ଶର ଉଚ୍ଚତମ ସୋପାନରେ ପହଞ୍ଚି ପାରିନାହୁଁ । ସେ ପଥରେ କେତେ ବାଟ ଯେ ଆସିଛୁଁ, ତାହା କିଛିମାତ୍ର ନିରୂପିତ ହୋଇପାରେ । ଅନ୍ୟାନ୍ୟ ସଭ୍ୟତାମାନଙ୍କ ପରି ଏହାର ଲକ୍ଷ୍ୟସ୍ଥଳରେ ଉପସ୍ଥିତ ହେବାକୁ ବହୁ ସମୟ ଦରକାର ବୋଲି ଅନୁମାନ କରାଯାଉଅଛି । ଏହାର ଶେଷ ଫଳ କଣ ହେବ, ତାହା

ଭବିଷ୍ୟତ ଗର୍ଭରେ ନିହିତ । ବର୍ତ୍ତମାନ କେବଳ ପରୀକ୍ଷା ହିଁ ଚାଲିଛି । ଆଧୁନିକ ସଭ୍ୟତାର ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ ଆମ୍ଭେମାନେ ବିଜ୍ଞାନକୁହିଁ ଅବଲମ୍ବନ କରିଥାଉଁ ।

ତେବେ ବିଜ୍ଞାନ ଆମ୍ଭମାନଙ୍କର ଅବଲମ୍ବନ ଥିବାସ୍ଥଳେ ତାହା କିଣ ଓ ତତ୍‌ସାହାଯ୍ୟରେ ଆମ୍ଭେମାନେ କିପରି ଅଗ୍ରସର ହେଉଥାଉଁ ଓ କିପରି ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବା, ତାହା ଜାଣିବା ପାଇଁ ଆମ୍ଭମାନଙ୍କର ଚେଷ୍ଟା ଅନବରତ ଲାଗି ରହିଛି । ବିଜ୍ଞାନକୁ ବ୍ୟାପକ ଅର୍ଥରେ ବ୍ୟବହାର କଲେ ଆମ୍ଭେମାନେ ଜାଣୁଁ ଯେ, ଯେ କୌଣସି ବିଷୟରେ ସମ୍ୟକ୍ ଜ୍ଞାନକୁ ହିଁ ବିଜ୍ଞାନ କହୁଥାନ୍ତି । ମାତ୍ର ସାଧାରଣତଃ ଜଡ଼ ଓ ଜୀବନ୍ତ ବିଷୟରେ ସୁସମ୍ବନ୍ଧ, ଶୃଙ୍ଖଳିତ ସମ୍ୟକ୍ ଜ୍ଞାନକୁ ବିଜ୍ଞାନରୂପେ ବ୍ୟବହାର କରାଯାଏ । ଏହି ସାଧାରଣ ବ୍ୟବହୃତ ଅର୍ଥ ଯାହା, ବ୍ୟାପକ ଅର୍ଥ ମଧ୍ୟ ତାହାହିଁ ବୁଝାଇ ଥାଏ । କାହିଁକିନା ଜଡ଼ ଓ ଜୀବନ୍ତ ବିଷୟ କହିଲେ ବିଶ୍ୱବ୍ରହ୍ମାଣ୍ଡର ସକଳ ପଦାର୍ଥକୁ ତନ୍ମଧ୍ୟରେ ଏକତ୍ର କରାଗଲା । ଏଣୁ ଏମାନଙ୍କର ବିଭିନ୍ନ ବିଭାବ ବିଷୟରେ ଜ୍ଞାନ ହେବା ଯାହା ବିଶ୍ୱ ବ୍ରହ୍ମାଣ୍ଡର ପ୍ରତ୍ୟେକ ପଦାର୍ଥ ବିଷୟରେ ଜ୍ଞାନ ଲାଭହେବା ତାହା । ସୁତରାଂ ଆମ୍ଭମାନଙ୍କର କଳାବିଦ୍ୟା, ଦର୍ଶନ, ମନସ୍ତତ୍ତ୍ୱ, ଇତିହାସ ପ୍ରଭୃତି ଯାହାକୁ ସାଧାରଣ ଲୋକେ ବିଜ୍ଞାନ ବୋଲି ଭାବି ନଥାନ୍ତି, ସେ ପ୍ରତ୍ୟେକେ ବିଜ୍ଞାନର ଅନ୍ତର୍ଗତ ।

ଆମ୍ଭେମାନେ ଏହି ବିଜ୍ଞାନ ବଳରେ ଆମ୍ଭମାନଙ୍କର ସଭ୍ୟତାର ଉଚ୍ଚତମ ସୋପାନ ଆରୋହଣ କରିବାପାଇଁ ଉଦ୍‌ଯୋଗ କରାଇ ଥାଉଁ । ଜଡ଼ ବିଜ୍ଞାନ ମୂଳରେ ଆମ୍ଭମାନଙ୍କର ଗଣିତଶାସ୍ତ୍ର ନିହିତ । ତାହାର ବଳରେ ଜଟିଳତମ ସମସ୍ୟାମାନ ଅନାୟାସରେ ସାଧିତ ହୋଇ ପାରୁଅଛି । ଜଡ଼ ବିଜ୍ଞାନ ଦୁଇ ଭାଗରେ ବିଭକ୍ତ—ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନ । ଏହି ଦୁଇ ବିଜ୍ଞାନ ମଧ୍ୟ ନାନା ବିଭାଗ ଓ ଉପବିଭାଗମାନଙ୍କରେ ବିଭକ୍ତ । ପଦାର୍ଥ ବିଜ୍ଞାନ ଆଲୋକ, ଉତ୍ତାପ, ବିଦ୍ୟୁତ୍, ଶବ୍ଦ ପ୍ରଭୃତି ବିଭିନ୍ନ ତତ୍ତ୍ୱ ଅନୁସନ୍ଧାନର ବିଭାଗମାନଙ୍କରେ ବିଭକ୍ତ ହୋଇଅଛି । ରସାୟନ ମଧ୍ୟ ସେହିପରି ବିଭିନ୍ନ ବିଭାଗରେ ବିଭକ୍ତ । ଏହି ଜଡ଼ ବିଜ୍ଞାନ ବଳରେ ଜଡ଼ ପଦାର୍ଥର ଘାତପ୍ରତିଘାତ; କ୍ରିୟା ପ୍ରତିକ୍ରିୟା, ବ୍ୟବହାର, ଆକର୍ଷଣ, ଗତି ଓ ମିଳନ ପ୍ରକ୍ରିୟା ପ୍ରଭୃତି ବିଭିନ୍ନ ବିଷୟ ଆଲୋଚନା କରି ଆମ୍ଭେମାନେ ଜଡ଼ ବିଷୟରେ ସମ୍ୟକ୍ ଜ୍ଞାନଲାଭ କରିଥାଉଁ । ସେହି ଜ୍ଞାନ ବଳରେ ପ୍ରକୃତିର ସଙ୍ଘଟିତ ଯାବତୀୟ କ୍ରିୟାଗୁଡ଼ିକ ହୃଦୟଙ୍ଗମ କରିପାରୁଥାଉଁ । ଆମ୍ଭମାନଙ୍କର ସୌରଜଗତ ଧରି ଆଉ ଯେ କେତେ ବିରାଟ ଜଗତ ଅଛି ଓ ବିଭିନ୍ନ ଗ୍ରହ, ଉପଗ୍ରହ, ତାରା କିପରି ନିୟନ୍ତ୍ରିତ ହେଉଅଛନ୍ତି ଓ ସେଗୁଡ଼ିକର ଶକ୍ତିର ବିକାଶ ଓ କାର୍ଯ୍ୟ ପ୍ରଣାଳୀ କିପରି ତାହା ଆମ୍ଭେମାନେ ଜାଣି ପାରୁଥାଉଁ । ଏହି ଜଡ଼ ବିଜ୍ଞାନ ବଳରେ ଆମ୍ଭେମାନେ ଜାଣୁଥାଉଁ ଯେ, ଶକ୍ତି ବଳରେ ପ୍ରତ୍ୟେକ ପଦାର୍ଥ ଅନ୍ୟ ସହିତ ସମ୍ବନ୍ଧ ସ୍ଥାପନ କରିବାରେ କ୍ଷମ ହୋଇଅଛି । ତାହାଛଡ଼ା ଆମ୍ଭେମାନେ ବୈଦ୍ୟୁତିକ

ଉନ୍ନତରେ ଏତେ ଅଗ୍ରସର ହୋଇଥାଇଁ ଯେ, ପୂର୍ବବର୍ତ୍ତୀ ମାନବ ତାହା ସ୍ୱପ୍ନରେ ସୁଦ୍ଧା ଭାବିଥିଲେ କି ନାହିଁ ସନ୍ଦେହ । ଆମ୍ଭେମାନେ ଆଜି ଏହି ଜଡ଼ ବିଜ୍ଞାନ ବଳରେ ବିଭିନ୍ନ ଧାତୁ ଓ ଉପାଦାନକୁ ବିଶୁଦ୍ଧ ଭାବରେ ଆହରଣ କରି ପାରୁଛୁଁ । ରେଳ, ମଟର, ଉଡ଼ାଜାହାଜ, ବୁଡ଼ାଜାହାଜ, ବେତାରଯନ୍ତ୍ର, ରେଡ଼ିଓ, ଟେଲିଭିଜନ୍, ଟେଲିଫୋନ୍ ପ୍ରଭୃତି ବିବିଧ ଉପକରଣରେ ବୈଷୟିକ ସୁଖସମୃଦ୍ଧି ସମ୍ପାଦନରେ ଯଥେଷ୍ଟ କ୍ଷମ ହୋଇଅଛୁଁ । ବିରାଟ ସାଗର ଆଜି ଦୁର୍ଲଙ୍ଘ୍ୟ ହୋଇନାହିଁ । ଏ ସବୁର ମୂଳରେ ଏହି ଜଡ଼ ବିଜ୍ଞାନର ଅନୁଶୀଳନ ଓ ଚର୍ଚ୍ଚାର ଫଳ ବିଦ୍ୟମାନ ।

ଜଡ଼ ବିଜ୍ଞାନ ଓ ଜୀବ ବିଜ୍ଞାନର ସଂଯୋଗରୁ ନାନା ବିଭାଗ ସୃଷ୍ଟିହୋଇ ଅଶେଷ କଲ୍ୟାଣ ସାଧନ କରିପାରିଛି । ଜୀବ ବିଜ୍ଞାନ ବିଷୟ ଦେଖାଯାଉ । ଜୀବ ବିଜ୍ଞାନ ଦୁଇ ଭାଗରେ ବିଭକ୍ତ—ପ୍ରାଣୀ ବିଜ୍ଞାନ (zoology) ଏବଂ ଉଦ୍ଭିଦ ବିଜ୍ଞାନ । ଏମାନଙ୍କ ଚର୍ଚ୍ଚାରୁ ପ୍ରାଣୀର ବିଭିନ୍ନ ଗଠନ, ପ୍ରକ୍ରିୟା ଓ କେଉଁ ଶକ୍ତିବଳରେ ସେମାନେ ଜୀବନର ଅଧିକାରୀ ହୋଇଅଛନ୍ତି, ତାହାର ସନ୍ଧାନ ମିଳିଥାଏ । ବିଭିନ୍ନ ପ୍ରଣାଳୀ ବିଶ୍ଳେଷଣ ଓ ସଂଶ୍ଳେଷଣ ବଳରେ ଜୀବନ୍ତ ବସ୍ତୁର ବିଭିନ୍ନ ସମସ୍ୟା ନିରୂପିତ ହେବାର ଉଦ୍ୟୋଗ ଚାଲିଛି । ବର୍ତ୍ତମାନ ବୈଜ୍ଞାନିକମାନେ ଜୀବନ୍ତ ପଦାର୍ଥର ସୃଷ୍ଟି କରି ପାରି ନାହାନ୍ତି । ଯେତେଦୂର ଗବେଷଣା ହୋଇପାରିଛି, ସେଥିରୁ ଅନେକ ଚିନ୍ତାଶୀଳ ମନୀଷୀ ସ୍ଥିର କରି ଅଛନ୍ତି ଯେ ମାନବ ଦିନେ ଜୀବନ୍ତ ପଦାର୍ଥର ସୃଷ୍ଟି କରିବାରେ କ୍ଷମ ହୋଇ ପାରିବ । ମାତ୍ର ତାହା ବହୁ ଦୂର ଭବିଷ୍ୟତରେ କି ନିକଟରେ ହେବ, ତାହା କହିବାର ପ୍ରୟାସ ଧୃଷ୍ଟତାରୂପେ ପରିଗଣିତ ହେବ । ଏହି ଜୀବ ବିଜ୍ଞାନ ବଳରେ ଆମ୍ଭେମାନେ ଅଣୁବୀକ୍ଷ ଜୀବନ୍ତ ପଦାର୍ଥଠାରୁ ଆରମ୍ଭ କରି ବିଶାଳକାୟ ହସ୍ତୀ, ତିମି ଓ ବଟ ବୃକ୍ଷ ପର୍ଯ୍ୟନ୍ତ ସମସ୍ତ ବିଶ୍ଳେଷଣ କରି ବିଭିନ୍ନ ପ୍ରକ୍ରିୟା ଓ ସମସ୍ୟା ସାଧନରେ ଅନେକ ପରିମାଣରେ ସଫଳ ମନୋରଥ ହୋଇ ପାରିଥାଇଁ । ଜଡ଼ ଓ ଜୀବ ବିଜ୍ଞାନର ସମ୍ମିଶ୍ରଣ ଓ ସହଯୋଗିତାରୁ ଆମ୍ଭେମାନେ ଶରୀରତତ୍ତ୍ୱ, ଆୟୁର୍ବେଦ (ଡାକ୍ତରୀ), ମନସ୍ତତ୍ତ୍ୱ, କୃଷିବିଜ୍ଞାନ, ପୃଥିବୀ ତତ୍ତ୍ୱ, ଜ୍ୟୋତିଷ ପ୍ରଭୃତି ନାନାବିଧ ଶାସ୍ତ୍ରବଳରେ ଆମ୍ଭମାନଙ୍କ ଜ୍ଞାନର ସୀମା ବିସ୍ତୃତ କରି କରିପାରିଥାଇଁ । ବିଭିନ୍ନ ବିଭାଗର ସାହାଯ୍ୟ ବଳରେ (engineering) ପ୍ରଭୃତିରେ ପରାକାଷ୍ଠା ଲାଭ କରିଥାଇଁ । ଏମାନଙ୍କ ବଳରେ ଆମ୍ଭେମାନେ ବୈଷୟିକ, ମାନସିକ ଓ ଶାରୀରିକ ଉନ୍ନତି ବହୁ ପରିମାଣରେ କରି ପାରିଥାଇଁ ଏବଂ ବିଭିନ୍ନ ରୋଗ କବଳରୁ ମୁକ୍ତି ଲଭୁଥାଇଁ । ଅନେକତ୍ର ଏହି ସବୁ ବିଭିନ୍ନ ବିଜ୍ଞାନ ଓ ଶିକ୍ଷାର ପ୍ରସାର ହୋଇ ପାରୁନାହିଁ, ବିଶ୍ୱମାନବିକତାର ବିକାଶ ଆଜଯାଏ ହୋଇପାରି ନ ଥିବାରୁ । ମାତ୍ର ଏହାଦ୍ୱାରା ଯେ ଆମ୍ଭମାନଙ୍କର ଉନ୍ନତି ଅବଶ୍ୟମ୍ଭାବୀ, ସେଥିରେ ଅଣୁମାତ୍ର ସନ୍ଦେହ କରିବାର ନାହିଁ ।

ଜୀବ ବିଜ୍ଞାନ ଆଲୋଚନାରେ ଆମ୍ଭେମାନେ ଦେଖୁଥାଉଁ ଯେ, ଜୀବଜନ୍ତୁର ଶରୀର କେବଳ ବିଭିନ୍ନ ଜଡ଼ ଉପାଦାନରେ ଗଠିତ। ପୂର୍ବର ପଞ୍ଚଭୂତ ବର୍ତ୍ତମାନ ବିଶ୍ଳେଷଣ ପାଇଁ ଅଶେଷ ଉପାଦାନର ସମଷ୍ଟି ରୂପେ ନିରୂପିତ ହୋଇଅଛି। ଏହି ବିଭିନ୍ନ ଜଡ଼ ଉପାଦାନର ସମାବେଶ ସହି ଜୀବନୀ ଶକ୍ତିର ବିକାଶ ଜୀବଜନ୍ତୁ ସମ୍ଭବପର କରିଅଛି। ଆମ୍ଭେମାନେ ଦେଖୁଥାଉଁ, ଗେଙ୍ଗୁଟି ପଥରରେ ପାଣି ଢାଳିଲେ ତହିଁରୁ ଚୂନ, ଅଙ୍ଗାରକାମ୍ଳବାଷ୍ପ ଏବଂ ବିଶେଷ ଉତ୍ତାପ ବାହାରେ। ଏହି ଉତ୍ତାପ ଶକ୍ତିର ଏକ ଅବସ୍ଥା ମାତ୍ର। ଆମ୍ଭେମାନେ ଚୂନ ଓ ଅଙ୍ଗାରକାମ୍ଳ ବାଷ୍ପ ଏକତ୍ର କରି ଗେଙ୍ଗୁଟି ପଥର ପ୍ରସ୍ତୁତ କଲେ ତହିଁରେ ଶକ୍ତି ସଂଯୋଗ ପ୍ରୟୋଜନ। ବିଭିନ୍ନ ପଦାର୍ଥରେ ଶକ୍ତିର ସଂଯୋଗ ବା ବିଯୋଗରେ ଆମ୍ଭେମାନେ ଦେଖୁଥାଉଁ ଯେ, ପଦାର୍ଥଗୁଡ଼ିକ ବିଭିନ୍ନ ଅବସ୍ଥାପ୍ରାପ୍ତ ହୋଇଥାଏ; ସେହିପରି ବିଭିନ୍ନ ଜାତୀୟ ଉପାଦାନର ସମ୍ମିଶ୍ରଣ ସହିତ ଜୀବନୀ ଶକ୍ତିର ସଂଯୋଗ ହେଲେ ଜୀବନୀ ପଦାର୍ଥ ସମ୍ଭବପର ହୋଇଥାଏ। ତେବେ ସେହି ଜୀବନୀ ଶକ୍ତି ଜଡ଼ ମଧ୍ୟରେ ସଂଯୋଗ ବିଯୋଗ କରୁଥିବା ଶକ୍ତି କିମ୍ବା ତାହାଠାରୁ ସମ୍ପୂର୍ଣ୍ଣ ପୃଥକ ତାହା ଏ ପର୍ଯ୍ୟନ୍ତ ସ୍ଥିରୀକୃତ ହୋଇନାହିଁ। ସମ୍ଭବତଃ ସେହି ଜୀବନୀ ଶକ୍ତି ପ୍ରବହମାନ ଶକ୍ତି (kinetic energy) ଏବଂ ପ୍ରଚ୍ଛନ୍ନ ଶକ୍ତି (potential energy) ଭଳି ଶକ୍ତିର ଏକତମ ଅବସ୍ଥା କିମ୍ବା ପ୍ରବହମାନ ଶକ୍ତିର ଅନ୍ତର୍ଗତ—ଆଲୋକ, ଉତ୍ତାପ ଯେପରି ପ୍ରବହମାନ ଶକ୍ତିର ଏକ ଏକ ଅବସ୍ଥା,—ସେହିପରି ଜୀବନ ଶକ୍ତି ପ୍ରବହମାନ ଶକ୍ତିର ଏକତମ ଅବସ୍ଥା ହୋଇପାରେ। ତେବେ ସେ ଯାହାହେଉ, ଜୀବନ ଏକ ଶକ୍ତିର ଅବସ୍ଥା ବିଶେଷ।

ଆଧୁନିକ ସଭ୍ୟତାର ବିପକ୍ଷବାଦୀମାନେ କହନ୍ତି ଯେ, ଏହି ସଭ୍ୟତା ମାନବର ଈଶ୍ୱର ବିଶ୍ୱାସ କମେଇ ଦେଇ ତାହାକୁ ବିପଥଗାମୀ କରି ପକାଇଛି। ସର୍ବତ୍ର ସଂଯମର ଅଭାବ ପରିଲକ୍ଷିତ ହେଉଅଛି। ମାନବ ମାନବ ପ୍ରତି ସ୍ନେହ ସୌହାର୍ଦ୍ଦ୍ୟ ନ ଦେଖାଇ ହିଂସାଦ୍ୱେଷର ଚରମ ସୋପାନ ଦେଖାଇବାକୁ ଛାଡ଼ୁ ନାହାନ୍ତି। ବୈଜ୍ଞାନିକମାନେ ମାରାତ୍ମକ ଗ୍ୟାସ୍ ଓ ବିଷ୍ଫୋରକର ଉଦ୍ଭାବନ କରି ମାନବକୁ ଧ୍ୱଂସ ପଥର ପଥିକ କରୁଅଛନ୍ତି। ଅବଶ୍ୟ ବିଜ୍ଞାନର କେତେକ ଆଶ୍ଚର୍ଯ୍ୟଜନକ ପଦାର୍ଥବଳରେ ଧ୍ୱଂସ ସାଧିତ ହେଉଅଛି; ମାତ୍ର ତାହା ବିଜ୍ଞାନର ଦୋଷ ନୁହେ। ସାଧାରଣ ମାନବ ଯେତେବେଳେ ସଭ୍ୟତାର ଅର୍ଥ ବୁଝିବ, ସେତେବେଳେ ଯାଇ ଏହାର ଅବସାନ ହେବ। ବର୍ତ୍ତମାନ ଆମ୍ଭମାନଙ୍କ ବିଜ୍ଞାନର ଚରମ ଉନ୍ନତି ନ ହେବା ପର୍ଯ୍ୟନ୍ତ ଆମ୍ଭେମାନେ ସଭ୍ୟତା ବିଷୟରେ ଶେଷ ଉନ୍ନତିରେ ପହଞ୍ଚିପାରିବୁ ନାହିଁ; ସେହି ଶେଷ ସୀମା ପର୍ଯ୍ୟନ୍ତ ଯେଉଁ ବ୍ୟତିକ୍ରମଗୁଡ଼ିକ ଦୃଷ୍ଟ ହେବ, ତାହା ସବୁ କାଳରେ, ସବୁ ଯୁଗରେ ହୋଇଥିଲା ଏବଂ ହେବା ସମ୍ଭବପର। ଯେତେବେଳେ ଆଧୁନିକ ସଭ୍ୟତାର ଆଦର୍ଶ ପ୍ରତ୍ୟେକେ ଜାଣିବେ, ସେତେବେଳେ ମୈତ୍ରୀର ଧ୍ୱଜା ଉଡ଼ିବ। ବର୍ତ୍ତମାନ ଜାତିସଂଘ (League

of Nations) ତାର ସୂତ୍ରପାତ କରିଛି ମାତ୍ର । ବର୍ତ୍ତମାନ ଏହି ସଂଘର କାର୍ଯ୍ୟପ୍ରଣାଳୀ ସମସ୍ତେ ମାନୁ ନାହାନ୍ତି; ତଥାପି ଆଶା କରାଯାଏ ଯେ, ଭବିଷ୍ୟତରେ ଯେତେବେଳେ ସମସ୍ତେ ନିଜ ନିଜ ପ୍ରତି କର୍ତ୍ତବ୍ୟ ବୁଝିପାରିବେ, ସେତେବେଳେ ଏ ସବୁ ଅନର୍ଥ ଦୃଷ୍ଟିଗୋଚର ହେବନାହିଁ । ବିଜ୍ଞାନର ଏହି ବିସ୍ଫୋରକ ଓ ମାରାତ୍ମକ ଗ୍ୟାସ୍ ବଳରେ ଅଶେଷ କ୍ଷତି ହେଉଥିଲେ ହେଁ, ସେମାନଙ୍କ ବଳରେ ଅନେକ ବିଶ୍ୱହିତକର କାର୍ଯ୍ୟ ସାଧିତ ହେଉଅଛି । ଡିନାମାଏଟ୍ ନାମକ ବିସ୍ଫୋରକ ସାହାଯ୍ୟରେ ତୁଙ୍ଗ ଗିରି ଫଟାଇ ନିଜର ଇପ୍ସିତ କାର୍ଯ୍ୟ ଅକ୍ଲେଶରେ ସାଧନ କରାଯାଇ ପାରୁଛି । ବିଭିନ୍ନ ସାମୟିକ ପଦାର୍ଥ ବଳରେ ମାନବର ବିଭିନ୍ନ ରୋଗ ଓ ରୋଗର ଜୀବାଣୁ ପ୍ରଭୃତି ନଷ୍ଟ କରାଯାଇ ପାରୁଛି । ସେମାନଙ୍କର ଅପକାରିତା ମାନବର ଜ୍ଞାନର ଅଳ୍ପତା ଯୋଗୁଁହିଁ ସଂଘଟିତ ହେଉଅଛି; ବିଜ୍ଞାନ ବଳରେ ନୁହେ ।

ଧର୍ମଭାବ ଓ ଈଶ୍ୱର ବିଶ୍ୱାସ ବିଜ୍ଞାନ କମାଇ ଦେଇଛି ବୋଲି ଅନେକେ ଅଭିଯୋଗ କରିଥାନ୍ତି । ମାତ୍ର ବାସ୍ତବରେ କଣ ହୋଇଛି ଦେଖାଯାଉ । ଯେଉଁମାନେ ଉଲ୍ଲିଖିତ ମତ ପୋଷଣ କରନ୍ତି, ସେମାନେ ପ୍ରାଚୀନ ସଭ୍ୟତାକୁ ନିଜର ଆଦର୍ଶ ବୋଲି ଧରି ନେଇ ନିଶ୍ଚିତ ଅଛନ୍ତି ଯେ, ଈଶ୍ୱର ଦେବମାନ ଓ ତାଙ୍କଠାରେ ବିଶ୍ୱାସ ସ୍ଥାପନ କର୍ତ୍ତବ୍ୟ । ମାତ୍ର ବର୍ତ୍ତମାନର ସଭ୍ୟତା ଗତି ପଥରେ ଅବସ୍ଥିତ । ତାହା ଲାଭ କରିବାକୁ ଆମ୍ଭେମାନେ ଅତୀତ ଅଭିଜ୍ଞତାର ସାହାଯ୍ୟ ନେଉଥାଉଁ, ମାତ୍ର ଅତୀତ କଥାକୁ ମାନିନେଇ ନ ଥାଉଁ । ଆମ୍ଭେମାନେ ବିଜ୍ଞାନ ବଳରେ ସେହି ବିରାଟ ଶକ୍ତିର କଳନା କରିବାକୁ ଯାଉଥାଉଁ, ତେଣୁ ପ୍ରଥମେ ତାହାର ଉପସ୍ଥିତି କାହିଁକି ବିଶ୍ୱାସ କରିନେବୁ ? ଏହି ଯୋଗୁଁ ଯାହା ଧର୍ମ ଭାବର ଶୈଥିଲ୍ୟ ଓ ଈଶ୍ୱର ବିଶ୍ୱାସର ଅପଚୟ ହୋଇଛି । କିନ୍ତୁ ଅପର ଦିଗକୁ ଦୃଷ୍ଟି ଦେଲେ ଅମ୍ଭେମାନେ ଦେଖିବା ଯେ ବିଜ୍ଞାନର ଅନୁଶୀଳନରେ ଆମ୍ଭେମାନେ ସର୍ବତ୍ର ଶକ୍ତିର ଅବସ୍ଥିତି ବିଭିନ୍ନ ଅବସ୍ଥାରେ ଦେଖିବାକୁ ପାଉଁ । ଜୀବଜନ୍ତୁରେ ଥିବା ଶକ୍ତି ଏହି ଶକ୍ତିର ଏକତମ ଅବସ୍ଥା । ଏଣୁ ଏହି ଶକ୍ତି କଣ, ତାହାର ଜଡ଼ ଓ ଜୀବଜନ୍ତୁ ସହିତ କି ସମ୍ପର୍କ ତାହା ଅମ୍ଭେମାନେ ଜାଣିବା ପାଇଁ ଚେଷ୍ଟିତ ଥାଉଁ । ଏପରି ସ୍ଥଳେ ଅମ୍ଭମାନଙ୍କର ଧର୍ମଭାବ କମି ଯାଇଛି ବୋଲି କହିବା ସମ୍ପୂର୍ଣ୍ଣ ଅଯୌକ୍ତିକ । ବରଂ ଏହା ବୋଲିଯାଇ ପାରେ ଯେ, ଆମ୍ଭେମାନେ ଏହି ଧର୍ମର ଅନୁସନ୍ଧାନରେ ନିୟୋଜିତ,—ଯଦି ସୃଷ୍ଟି ରହସ୍ୟ ଭେଦ କରିବା ଧର୍ମପଦବାଚ୍ୟ ହୋଇଥାଏ । ଆମ୍ଭମାନଙ୍କର ଏହି ପ୍ରାଚୀନ ଧର୍ମଭାବର ଶୈଥିଲ୍ୟ ଦେଖି ଯଦି କେହି ବିଚଳିତ ହେଉଛନ୍ତି, ତାହା ହେଲେ ଆମ୍ଭେମାନେ ଯେ ପ୍ରାଚୀନ ପ୍ରଥା ଅନେକକୁ ଛାଡ଼ି ଦେଇଅଛୁ, ତାହାପାଇଁ ସେମାନଙ୍କର ବିଚଳିତ ହେବା ତ ଦେଖାନାହିଁ । ଏଣୁ ଅମ୍ଭେମାନେ କହୁ ଯେତେବେଳେ ଆମ୍ଭେମାନେ ଏକ ନୂତନ ପଥର ଅନୁସନ୍ଧାନରେ ନିଯୁକ୍ତ ସେତେବେଳେ ଅମ୍ଭମାନଙ୍କୁ ଅନ୍ଧପଥରେ ନେବାଣୀ

ଜର୍ଜରିତ ନ କରି, ପ୍ରାଚୀନପଥ ଦେଇ ଅଗ୍ରସର ହେବାପାଇଁ ଉପଦେଶ ନ ଦେଇ, ଆମ୍ଭେମାନେ ନୂତନ ପଥରେ କେତେଦୂର ସଫଳକାମ ହୋଇ ପାରୁଥାଉଁ, ତାହାହିଁ ଦେଖିବା ଉଚିତ ଓ ଶେଷସୀମାରେ ପହଞ୍ଚିବା ପାଇଁ ଚେଷ୍ଟିତ ହେବା ଆବଶ୍ୟକ ।

ଅବଶ୍ୟ ଆଧୁନିକ ବୈଜ୍ଞାନିକ ପ୍ରଣାଳୀର ଅନୁଗାମୀ ବିଭିନ୍ନ ଗଢିଗତି ଶିକ୍ଷା-ସଭ୍ୟତାରେ କେତେକ ପରିମାଣରେ ଦୋଷ ଥାଇପାରେ; ମାତ୍ର ତାହାର ସଂଶୋଧନ କରଣୀୟ । ଅନେକ ବିଷୟରେ ଅଜ୍ଞତା ଆମ୍ଭମାନଙ୍କର କଲ୍ୟାଣକର ବୋଲି ଅନେକେ ବିଶ୍ବାସ କରନ୍ତି । ମାତ୍ର ସେମାନଙ୍କର ମନେ ରଖିବା ଉଚିତ, ଯେଉଁ ଘରଟିରେ ତାଲାଦେଇ ବାରଣ କରି ଦିଆଯାଏ ଯେ ତାହା ଖୋଲିବ ନାହିଁ, ତାହାକୁ ହିଁ ଖୋଲିବା ପାଇଁ କୌତୂହଳ ଜନ୍ମିଥାଏ । ଏ ବିଷୟରେ ସୁବିଧା ବାଟ ହେଉଛି ତାଲାଟା ଖୋଲି ତାହାର ଅପକାରିତା ଦେଖାଇ ଦେଇ ସେଥିରୁ ରକ୍ଷା ପାଇବାର ଉପାୟ ନିରୂପଣ କରିବା ଉଚିତ । ବର୍ତ୍ତମାନର ବିଜ୍ଞାନ ତାହାହିଁ କରିଛି । ଯାବତୀୟ ବିଷୟରେ ନିଜର ଜ୍ଞାନ ଲାଭରେ ନିଜର ସଭ୍ୟତାର ଭିତ୍ତି ସ୍ଥାପନ ପାଇଁ ଆଧୁନିକ ମାନବ ଚେଷ୍ଟିତ । ଯେତେବେଳେ ଆମ୍ଭେମାନେ ସମସ୍ତ ବିଷୟ ଜାଣି ପାରିବା, ଯେତେବେଳେ ପର୍ବତ ଶିଖରରେ ପହଞ୍ଚି ପାରିବା; ସେତେବେଳେ ବିଜ୍ଞାନର ଅନ୍ଧକାର ଦିଗଟି ଅପସାରିତ ହୋଇଯିବ, ରହିବ ଆଲୋକମୟ ପ୍ରଭାବ ।

ଦେଖିବାକୁ ଗଲେ ପ୍ରାଚୀନ ସଭ୍ୟତା ମଧ୍ୟ ଏହି ବିଜ୍ଞାନକୁ ପଥ ପ୍ରଦର୍ଶକ ବୋଲି ଧରି ନେଇଥିଲା । ତତ୍କାଳୀନ ଲୋକେ କେତେକ ବିଷୟରେ ହିଁ ଜ୍ଞାନ ଲାଭ କରିଥିଲେ, ଅପର କେତେକ ବିଷୟ ପାରି ନ ଥିଲେ—ପାର୍ଥକ୍ୟହିଁ ହେଉଛି ଏହିଠାରେ ।

ଏଣୁ ଆମ୍ଭେମାନେ କହିବାକୁ ଚାହୁଁ ଯେ ଆଧୁନିକ ସଭ୍ୟତା ତାର ଲକ୍ଷ୍ୟ ପଥରେ ପହଞ୍ଚିବା ପାଇଁ ଉଦ୍‌ଯୋଗ କରୁଛି ମାତ୍ର । ଏହି ପଥରେ ପହଞ୍ଚିବା ପାଇଁ ସେ ବିଜ୍ଞାନକୁ ପଥପ୍ରଦର୍ଶକରୂପେ ବରଣ କରି ନେଇଅଛି । ତାହାର ବଳରେ ଯେ ଆମ୍ଭେମାନେ ଅନେକ ଦୂର ଅଗ୍ରସର ହୋଇଥାଉଁ ତାହା ସମସ୍ତେ ଦେଖି ପାରୁଥିବେ । ଯେଉଁଗୁଡ଼ିକ ପଥପ୍ରଦର୍ଶକର ଦୋଷରୂପେ ବର୍ଣ୍ଣିତ ହେଉଛି, ସେଗୁଡ଼ିକ ବାସ୍ତବରେ ପାରିପାର୍ଶ୍ୱିକ ପଦାର୍ଥମାନଙ୍କରୁ ଜାତ, ସେଥିରେ ବିଜ୍ଞାନର ଦୋଷ ନାହିଁ । ଆମ୍ଭେମାନେ ଅତୀତ ପ୍ରତି ଦୃଷ୍ଟିପାତ କରି ବର୍ତ୍ତମାନକୁ ଦେଖିଲେ ଦେଖୁଥାଉଁ ଯେ, ବିଜ୍ଞାନ ଆଶାତୀତ ଭାବରେ ଆମ୍ଭମାନଙ୍କୁ ସଭ୍ୟତା ଅନ୍ୱେଷଣରେ ବାଟ ଦେଖାଇ ଆସିଅଛି । ଏଣୁ ଆମ୍ଭେମାନେ ଦିନେ ସେହି ପଥପ୍ରଦର୍ଶକ ସାହାଯ୍ୟରେ ଯାବତୀୟ ବିଷୟରେ ସର୍ବାଙ୍ଗୀନ ଉନ୍ନତ ଓ ଜ୍ଞାନ ଲାଭ କରି ଏକ ଅଲୌକିକ ସଭ୍ୟତାର ଅଧିକାରୀ ହୋଇ ପାରିବୁ ବୋଲି ପୂର୍ଣ୍ଣ ଆଶା ପୋଷଣ କରୁଁ ।

---

[ ଉତ୍କଳ ସାହିତ୍ୟ ]

# ବିଶ୍ୱରୂପ-ଦର୍ଶନ

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ

[ସେ ସାହିତ୍ୟ ନିଶ୍ଚୟ ଅସାମାନ୍ୟ ଯେଉଁ ସାହିତ୍ୟରେ ସମଗ୍ର ବିଶ୍ୱର ଓ ଭବିଷ୍ୟତ୍ ସମାଜର ବିରାଟ ପ୍ରତିବିମ୍ବ ଶିଶୁ ଭିତରେ ବିଶ୍ୱରୂପ ଦର୍ଶନ କଳ୍ପନା ସମ୍ଭବ ହୋଇଥିଲା । ନବ ଯୁଗର ପ୍ରତୀକ ଶିଶୁ, ଅମୃତର ଅଧିକାରୀ ସେ···କୌଣସି କଂସ ତାହାକୁ ନିଧନ କରିବା ଅସମ୍ଭବ; ସେହି ଚିତ୍ର ଶିଶୁ କୃଷ୍ଣଙ୍କ ମୁଖ ଗହ୍ୱର ଭିତରେ ଦର୍ଶନ କରିଥିଲେ ମା ଯଶୋଦା···ସେହି ଚିତ୍ର ଦର୍ଶନ କରିଥିଲା ମହିଷାସୁର···ନାରୀ ଦୁର୍ବଳା ନୁହେଁ···ନଖିଲ ସମ୍ଭାବନାର ଜନନୀ ସେ···ତାର ଗୋଟିଏ ହାତରେ ବରାଭୟ ଓ ଅନ୍ୟ ହାତରେ ଖଡ୍‌ଗ-ଖର୍ପର ! ମନୁଷ୍ୟ କ୍ଷୁଦ୍ର ନୁହେଁ, ବିରାଟର ଏକ ଅଂଶ—ବିଶ୍ୱରୂପ-ଦର୍ଶନର ଏହା ହେଉଛି ମୌଳିକ ତାତ୍ପର୍ଯ୍ୟ ଓ ତାହା ଏହି ପ୍ରବନ୍ଧର ପ୍ରତିପାଦ୍ୟ ବସ୍ତୁ ।]

ଆମ ପୁରାଣ ସାହିତ୍ୟରେ ବିଶ୍ୱରୂପ ଦର୍ଶନର ଏକାଧିକ ଉଦାହରଣ ମିଳେ । ଏହି ଚିତ୍ର ସାହାଯ୍ୟରେ ଜଗତରେ ଜନ୍ମମୃତ୍ୟୁର ରହସ୍ୟ ଏବଂ ମନୁଷ୍ୟ ଜୀବନର ବ୍ୟକ୍ତିଗତ ତଥା ସାମୂହିକ ଦର୍ଶନକୁ ଯେପରି ସହଜରେ ଦେଖାଇ ଦିଆଯାଇଅଛି, ତାହାର ତୁଳନା ବିଶ୍ୱସାହିତ୍ୟରେ ଦୁର୍ଲ୍ଲଭ ।

ମନୁଷ୍ୟ ଜୀବନର ଅସଂଖ୍ୟ ଉତ୍ଥାନ-ପତନ, ଯୁଦ୍ଧ-ବିଗ୍ରହ, ଶତ୍ରୁ-ମିତ୍ର, ହିଂସା-ପ୍ରେମ, କୀର୍ତ୍ତି-ଅପକୀର୍ତ୍ତିର ରୂପ, ତାହାର ଶକ୍ତି ଏବଂ ଦୁର୍ବଳତା, ଗର୍ବ ଏବଂ କ୍ଷମତାର ପରିମାଣ ହିଁ ମହାକାଳର କରାଳ ମୁଖରେ ଅହରହ ଲୀନ ହୋଇଯାଏ; ପୁଣି ନାନା ବିଚିତ୍ର ଅଦ୍ଭୁତ ରୂପ ଘେନି ଜୀବନ୍ତ ହୋଇ ଉଠେ । ରୂପ ଭିତରେ ଅରୂପ, ସୀମା ଭିତରେ ଅସୀମ ଏବଂ କ୍ଷୁଦ୍ର ପୌତ୍ତଳିକତା ଭିତରେ ଦେଶ କାଳାତୀତ ପରମେଶ୍ୱର ଆବିଷ୍କାର ପୃଥିବୀର ଆଉ କେଉଁ ସାହିତ୍ୟରେ ଏପରି ସ୍ପଷ୍ଟ ଓ ଜୀବନ୍ତ ହୋଇ ଥିବାର ଜଣାଯାଇ ନାହିଁ ।

ବିଶ୍ୱରୂପ ଦର୍ଶନର ଗୋଟିଏ ଉଦାହରଣ ମିଳେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ବର୍ଣ୍ଣନରେ । ଶିଶୁ ମୃତ୍ତିକା ଭକ୍ଷଣ କଲେ ଜନନୀ ଯଶୋଦା ପୁଅକୁ ଆକଟ କରି

ମୁହଁରୁ ତାହାର ମାଟି କାଢ଼ିବାକୁ ଉଦ୍ୟତ ହୁଅନ୍ତି । ପୁଅ ପାଟି ମେଲାକରି ଦେଖାଏ । ପାଟି ଭିତରକୁ ଗୁହିଁ ଯଶୋଦା ସ୍ତମ୍ଭୀଭୂତ ! ଶିଶୁର ସେହି କ୍ଷୁଦ୍ର ମୁଖ ମଧ୍ୟରେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ଦୃଶ୍ୟ ଦେଖି ଜନନୀଚକ୍ଷୁ ଭୀତ-ବିହ୍ୱଳ ହୋଇ ପଡ଼ିଲା ।

ନିଜ କୋଳରେ ବଢ଼ାଇଥିବା ଏବଂ ଅତି କ୍ଷୁଦ୍ର ଓ ସଙ୍କୀର୍ଣ୍ଣ ବୋଲି ବିଗ୍ଭରୁଥିବା ଏକ ଶିଶୁ ତେବେ ତ ଶିଶୁ ନୁହେଁ ! ତାହା ଭିତରେ ଯେ ସମଗ୍ର ବିଶ୍ୱରୂପ ବିଦ୍ୟମାନ । ସେ ଦୃଶ୍ୟ ଦେଖି ଯଶୋଦା ନିଜର ମାତୃତ୍ୱ ସଙ୍ଗେ ପୁତ୍ରର ଶିଶୁତ୍ୱକୁ ସୁଦ୍ଧା ପାସୋର ପକାଇଲେ । ସେ ଆଉ ତାକୁ ଆକଟ କରିବେ କଣ, ନିଜ ଅସ୍ମିତା ମଧ୍ୟ ତାଙ୍କର ଦୂର ହୋଇଗଲା । ମଣିଷ ପିଲାଠାରେ କେତେ ଜଣ ମାଆ ଏହି ଦୃଶ୍ୟ ଦେଖି ପାରନ୍ତି ? ଯଶୋଦାଙ୍କ ଛଡ଼ା ଆଉ ବୋଧହୁଏ କେବେ କେହି ଦେଖିନାହିଁ ଅବା ସେ ସୌଭାଗ୍ୟ ପାଇନାହିଁ । ମାତ୍ର ଶିଶୁଠାରେ ହିଁ ସମଗ୍ର ବିଶ୍ୱର ଓ ଭବିଷ୍ୟତ ସମାଜର ବିରାଟ ପ୍ରତିବିମ୍ବ ଦର୍ଶନ କରିବା ପରିକଳ୍ପନା ଯେଉଁ ସାହିତ୍ୟରେ ସମ୍ଭବ ହୋଇ ପାରିଅଛି, ତାହା ଅସାମାନ୍ୟ ।

ନବଯୁଗର ପ୍ରତୀକ ସେହି ଶିଶୁହିଁ ଯେ ସମଗ୍ର ବିଶ୍ୱର ଅଧିକାରୀ ଏବଂ ତାହାର ହତ୍ୟା କାମ୍ନା ବିନାଶ ଯେ କୌଣସି କଂସ ପକ୍ଷରେ ସମ୍ଭବପର ନୁହେଁ, ଶିଶୁ କୃଷ୍ଣଙ୍କ ମୁଖରେ ସେହି ଚିତ୍ର ଦେଖାଇ ଦିଆଯାଇଛି । କବି ଏବଂ ଭକ୍ତ ତାହାହିଁ ଭଗବତ୍ ରୂପ ବୋଲି ଅନୁଭବ କରି ଅଭିଭୂତ ହୁଏ । ଜନନୀ ଯଶୋଦା ସେ ରୂପରେ ସୃଷ୍ଟିର ଲୀଳା ଦର୍ଶନ କରି ବିମୋହିତ ହୋଇଛନ୍ତି । ଜନନୀ ପକ୍ଷରେ ସୃଷ୍ଟି ବୈଚିତ୍ର୍ୟ ଦେଖିବାହିଁ ସ୍ୱାଭାବିକ, ଯେଉଁ ସୃଷ୍ଟିରେ ମୁହୁର୍ମୁହୁ ଅସଂଖ୍ୟ ଜୀବ ଜାତ ହୋଇ ବିଲୀନ ହେଉଛନ୍ତି । ମୁହୁର୍ମୁହୁ ବିଶ୍ୱବୈଚିତ୍ର୍ୟ ଉଦ୍‌ଭାସିତ ହେଉଛି ।

କୁରୁକ୍ଷେତ୍ରରେ ଅର୍ଜୁନଙ୍କ ବିଶ୍ୱରୂପ ଦର୍ଶନ ଏହାଠାରୁ ଅବଶ୍ୟ ପୃଥକ୍ । ତାହା ଜନନୀ ସମକ୍ଷରେ କ୍ରୀଡ଼ାରତ ଶିଶୁର ବିଶ୍ୱରୂପ ନୁହେଁ, ଯୋଦ୍ଧା ସମକ୍ଷରେ ଯୁଦ୍ଧ ପାଇଁ ପ୍ରେରଣା ଦେବାର, ଜଡ଼ତା ଓ ନିରୁଦ୍ୟମକୁ ବିନାଶ କରିବା ପ୍ରକାଶେ ବିଶ୍ୱରୂପ ପ୍ରଦର୍ଶନ । ନିଦ୍ରିତକୁ ଜାଗ୍ରତ କରିବା ଓ ନିଶ୍ଚେଷ୍ଟକୁ ସଚେଷ୍ଟ କରିବା ପାଇଁ ତାହା ଅଭିପ୍ରେତ । ଜୀବନାଦର୍ଶର ଏହି ଚରମ ବ୍ୟାଖ୍ୟା ଉପରେ ବହୁତ ଟୀକା ଟିପ୍‌ପଣୀ ହୋଇ ଯାଇଛି ଏବଂ ଏବେ ମଧ୍ୟ ହେଉଛି ।

ଆଉ ଗୋଟିଏ ଉଦାହରଣ ଦେଖାଯାଏ, ଜଗନ୍ମାତା ଦୁର୍ଗାଙ୍କର ମହିଷାସୁର ଚରିତରେ ପାପଇଚ୍ଛା ବଳବତ୍ତର ହୋଇ ଶେଷରେ ତାହା ବିଶ୍ୱରୂପସୀ ପାର୍ବତୀଙ୍କ ରୂପ ଦର୍ଶନ ଲାଳସାରେ ପ୍ରକାଶିତ ହେଲା । ଦେବଗଣ ତାହାର ଅତ୍ୟାଚାରରେ ବିକଳ ବିବ୍ରତ ହୋଇ ଏହାହିଁ ଦୁର୍ବୃତ୍ତର ନାଶନଲାଗି ପ୍ରଧାନ ଉପାସ୍ୟ ବୋଲି ପାଇଥିଲେ ଏବଂ

ଜଗଜ୍ଜନନୀ ଉମାଙ୍କ ନିକଟରେ ତାହା ପ୍ରାର୍ଥନା କରିଥିଲେ । ମାତୃହୃଦୟସ୍ଥ ଅସୀମ କ୍ରୋଧ ଓ ଘୃଣାରେ ପ୍ରଜ୍ଜ୍ୱଳିତ ହୋଇ ଉଠିଲା । ଖଡ୍‌ଗ ଖର୍ପର ଧାରଣ କରି ଓ ବନ ଫୁଲମାଳ ବଦଳରେ ମୁଣ୍ଡମାଳ ଗଳାରେ ଝୁଲାଇ ବିଶ୍ୱବିମୋହିନୀ ପାର୍ବତୀ ଗୌରୀ ରକ୍ତ-ଲହ-ଲହ ଜିହ୍ୱାରେ ବିଶ୍ୱସଂହାରିଣୀ ଭୈରବୀ ଦୁର୍ଗା ରୂପ ଗ୍ରହଣ କଲେ ।

ହିନ୍ଦୁ କଳ୍ପନାରେ ବିଶ୍ୱ ପ୍ରକୃତିକୁ ଯେ ଜନ୍ମଦିଏ, ସେହି ତାହାକୁ ଗ୍ରାସ କରିବାକୁ ଉଦ୍ୟତ ହେଲା । ଆଦି ପୁରୁଷ ଶିବ ଅଙ୍କର ଆଦି ପ୍ରକୃତି ସୃଷ୍ଟି ବିଳାସ ତ୍ୟାଗ କରି ଯୋଦ୍ଧୃ ବେଶରେ ନିର୍ଗତ ହେଲେ ଦୁଷ୍ଟ ସଂହାର ପାଇଁ । ମହିଷାସୁର ବର ଲାଭ କରିଥିଲା, ଅଜେୟ ଓ ଅମର ହେବ । ସେହି ବର ଖଣ୍ଡିତ ହେଲା, କୃତ୍ରିମ ପାପଲାଳସା ହେତୁରୁ, କୃତ୍ରିମ ଅପ୍ରାକୃତିକତା ବା ଅସ୍ୱାଭାବିକତା ଦୋଷରୁ । ସୀମାତିରିକ୍ତ ଅନ୍ୟାୟ ଓ ଅତ୍ୟାଚାର ସଙ୍ଗଠନର ରାଜନୀ ନିଜ ବିଲୋପକୁ ନିଜେ ଡାକି ଆଣିଲା ।

ମହିଷାସୁରର ସୈନ୍ୟବଳକୁ ହତ୍ୟାକରି ରଣୋନ୍ମାଦିନୀ ଦୁର୍ଗା ସେମାନଙ୍କର ରକ୍ତ ପାନ କଲେ । ମହିଷାସୁର ସମକ୍ଷରେ ଉପସ୍ଥିତ ହୋଇ ଦେବୀ ଗୋଟିଏ ପାଦ ଊର୍ଦ୍ଧ୍ୱକୁ ଉତ୍ତୋଳନ କଲେ । ରାକ୍ଷସ ଚକ୍ଷୁରେ ଉଦ୍‌ଭାସିତ ହେଲା, ବିଶ୍ୱରୂପ । ସେ ରୂପ ଦର୍ଶନ କରି ତାହାର ସମସ୍ତ ଶକ୍ତି ନଷ୍ଟ ହୋଇଗଲା । ଶକ୍ତି ରୂପିଣୀ ଦେବୀ ରାକ୍ଷସର ଶକ୍ତି ହରଣ କରି ତାହାକୁ ନିର୍ବୀର୍ଯ୍ୟ ନିସ୍ତେଜ କରିଦେଲେ । ଶେଷରେ ତାହାଙ୍କ ବର୍ଚ୍ଛାଘାତରେ ମହିଷାସୁରର ପ୍ରାଣ ଗଲା ଏବଂ ପଦାଘାତରେ ସେ ପାତାଳଗାମୀ ହେଲା ।

ତେବେ ଏହି ବିଶ୍ୱରୂପର ଅସଲ ମର୍ମ କଣ ? ଯେଉଁ ରୂପକୁ ଦେଖି ମାତା ନିଜ ସନ୍ତାନକୁ ମହାପ୍ରବୃତ୍ତି ଜ୍ଞାନ କରେ, ଯୋଦ୍ଧା ଧନୁଶର ଉତ୍ତୋଳନ କରି ଯୁଦ୍ଧରେ ପ୍ରବୃତ୍ତ ହୁଏ ପୁଣି ଦୁଷ୍ଟ ଜନର ନିଧନ ଘଟେ ? ସହଜରେ କହି ହେବ ଯେ ମନୁଷ୍ୟର ଆତ୍ମକେନ୍ଦ୍ରିକତା ବା ବ୍ୟକ୍ତି ସଙ୍କୀର୍ଣ୍ଣତାକୁ ଭୁଲାଇ ଦେଇ ସେ ଯେ ସମଗ୍ର ଜଗତର ଏକ ଅଂଶ ବିଶେଷ, ସ୍ୱାଧୀନ ହେଲେହେଁ ସ୍ୱେଚ୍ଛାଧୀନ ନୁହେଁ—ସାମାଜିକ ନିୟମର ବଶବର୍ତ୍ତୀ—ଏହି କଥାକୁ ପ୍ରତିପନ୍ନ କରିବା ବିଶ୍ୱରୂପ ଦର୍ଶନର ମୌଳିକ ତାତ୍ପର୍ଯ୍ୟ, ନାରୀ ଅଥବା ଶିଶୁ ଦୁର୍ବଳ ନୁହେଁ, ତାହା ଭିତରେ ମହାଶକ୍ତି ନିହିତ ।

ସାଧାରଣ ଦୃଷ୍ଟିରେ ଜଗତଟା ଯେ ଖଣ୍ଡିତ ହୋଇ ଦେଖାଦିଏ—କିଏ ନିଜ ଲୋକ, କିଏ ପରଲୋକ, କିଏ ନିଜ ବାପ, ବଡ଼ ବାପ, ଗୁରୁ, ମାମୁ, ଭାଇ, ପୁଅ, ନାତି, ବନ୍ଧୁ, ଶ୍ୱଶୁର, ଜ୍ୱାଇଁ, ଆଉ କିଏ ଅବା ଅଚିହ୍ନା, ଅଜଣା ଶତ୍ରୁ, କିଏ ସ୍ୱଦେଶ, କିଏ ବିଦେଶ, ସ୍ୱଜାତି ବା ବିଜାତି ସବୁ ଧାରଣା ବଳରେ ମଣିଷର ଯେଉଁ

ଭେଦଜ୍ଞାନ ଉତ୍ପନେ, ତାହାକୁ ଦୂର କରି ବିଶ୍ୱ ବ୍ରହ୍ମାଣ୍ଡକୁ ଏକ ଓ ଅବିଭକ୍ତ ରୂପେ ଦେଖିବାକୁ ହେବ । ଏହିପରି ଏକ ସର୍ବବ୍ୟାପୀ ସାମୂହିକ ପୃଷ୍ଠଭୂମି ଉପରେ ପ୍ରତି ମନୁଷ୍ୟକୁ ନିଜର କର୍ତ୍ତବ୍ୟ ସ୍ଥିର କରିବାକୁ ହେବ ।

ମହାକାଳର ଚିରନ୍ତନ ନିୟମର ଦାସ ସେ । ତହିଁରୁ ବହିର୍ଭୂତ ହେବାର ଉପାୟ ତାହାର ନାହିଁ । ଜନ୍ମ, ଶୈଶବ, ଯୌବନ, ବାର୍ଦ୍ଧକ୍ୟ କିମ୍ବା ମୃତ୍ୟୁ ଆଦି ଅବସ୍ଥାନ୍ତରରୁ ମୁକ୍ତି ଲାଭ କରିବା ମନୁଷ୍ୟ ପକ୍ଷରେ ସମ୍ଭବପର ନୁହେଁ । ଅନ୍ୟାୟ ବିରୁଦ୍ଧରେ ଲଢ଼ିବାକୁ ହେବ, ନିଜକୁ ତଥା ଜଗତକୁ ତାହାର ଆକ୍ରମଣରୁ ବଞ୍ଚାଇବା ପାଇଁ ।

ଅନ୍ୟ ପ୍ରତି ଅତ୍ୟାଚାର କଲେ ତାହା ନିଜ ଉପରକୁ ହିଁ ଲେଉଟି ଆସେ । ଅପରକୁ ହତ୍ୟାକଲେ ନିଜର ନିଧନହିଁ ଅବଶ୍ୟମ୍ଭାବୀ । ବିଶ୍ୱରୂପ ଦର୍ଶନର ଏହି ସନାତନ ସୂତ୍ରକୁ ଆଜିସୁଦ୍ଧା କେହି ଛିନ୍ନ କରି ପାରିନାହିଁ । ଏହା ଯେତିକି ପ୍ରାଚୀନ ସେତିକି ନବୀନ ମଧ୍ୟ । ମନୁଷ୍ୟର ସକଳ କର୍ମ ଏହି ସୂତ୍ରରେ ଗ୍ରଥିତ । ତାହା ବୋଲି କର୍ମକୁ ଛାଡ଼ିବାକୁ ହେବନାହିଁ, କରିବାକୁ ହେବ । ଦୋଷଯୁକ୍ତ ହେଲେହେଁ ଯେଉଁ କର୍ମ ସ୍ୱାଭାବିକ ବା ନିଜ ସ୍ୱଭାବର ଅନୁକୂଳ, ତାହା କଦାପି ତ୍ୟାଜ୍ୟ ନୁହେଁ । କାରଣ ନିଆଁକୁ ଧୂଆଁ ବେଢ଼ିଲା ଭଳି ସବୁ କାର୍ଯ୍ୟରେ ଦୋଷ ନିହିତ ଥାଏ ।

"ସହଜ କର୍ମକୌନ୍ତେୟ ସଦୋଷମପି ନ ତ୍ୟଜେତ୍ ।
ସର୍ବାରମ୍ଭାହି ଦୋଷେଣ ଧୂମେନାଗ୍ନିରିବାବୃତାଃ ।"

[ଆସନ୍ତା କାଲି—୧୯୬୪]

# ଜ୍ୟୋତିର୍ବିଦ୍ ଚନ୍ଦ୍ରଶେଖର ସିଂହ ସାମନ୍ତ

ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି

ଆଜକୁ ଶହେ ବର୍ଷ ହେଲା ଶକ ୧୭୫୭ ପୌଷ କୃଷ୍ଣାଷ୍ଟମୀ ତିଥି, ଖ୍ରୀଷ୍ଟୀୟ ୧୮୩୬ ଅବ୍ଦ ଜାନୁଆରି ମାସ ୧୧ ତାରିଖରେ ଶ୍ରୀମଦ୍ ଚନ୍ଦ୍ରଶେଖର ସିଂହ ସାମନ୍ତ ଓଡ଼ିଶାର ଖଣ୍ଡପଡ଼ା ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ । ସେ ତତ୍‌କାଳୀନ ରାଜାଙ୍କର ମିତ୍ରବ୍ୟ ପୁତ୍ର ଥିଲେ । ସେତେବେଳେ କିଏ ଜାଣିଥିଲା ଯେ, ସେ ଜ୍ୟୋତିଷ ଚର୍ଚ୍ଚା କରିବେ ଏବଂ ପରିଶ୍ରମ, ଅଧ୍ୟବସାୟ, ତୀକ୍ଷ୍ଣବୁଦ୍ଧି, ବ୍ରହ୍ମଚର୍ଯ୍ୟ ଓ ଗଣିତ ନୈପୁଣ୍ୟ ଦ୍ୱାରା ଯଶସ୍ୱୀ ହେବେ ! ସେତେବେଳେ ଦେଶରେ ଶତାଧିକ ରାଜଭ୍ରାତା ଥିଲେ । ସେମାନଙ୍କ ପରି ଆଚରଣ ଦେଖାଉ ଥିଲେ ଚନ୍ଦ୍ରଶେଖର ଆଦୃତ ହୋଇ ନ ଥାନ୍ତେ, ଅଧିକନ୍ତୁ ଜ୍ୟୋତିଷ ବିଦ୍ୟାର ଆଲୋଚନା କରୁଥିବା ହେତୁ ସେ ଖଣ୍ଡପଡ଼ା ରାଜ୍ୟରେ ଅବଜ୍ଞାର ପାତ୍ର ହୋଇଥିଲେ । ଲୋକମାନେ ତାଙ୍କର କର୍ମର ମହତ୍ତ୍ୱ ବୁଝୁ ନ ଥିଲେ; ସେମାନେ ମନେ କରୁଥିଲେ ଯେ, ସେ ପାଗଳ ପରି ଦିନ ରାତି ଗ୍ରହ-ନକ୍ଷତ୍ର ପ୍ରତି ଦୃଷ୍ଟି ରଖି ବୃଥାରେ କାଳ କଟାଉଛନ୍ତି । ତାଙ୍କର ସେହି ଅଧ୍ୟବସାୟ ପାଇଁ ଆଜି ଆମ୍ଭେମାନେ ତାଙ୍କୁ ସ୍ମରଣ କରୁଅଛୁ । ସେ ଜଣେ ଦାତା । ସେ ଆମ୍ଭମାନଙ୍କୁ ବହୁଦିନର କଷ୍ଟାର୍ଜିତ 'ସିଦ୍ଧାନ୍ତ ଦର୍ପଣ' ଦାନ କରି ଯାଇଅଛନ୍ତି । ଆମ୍ଭେମାନେ ସେହି ଦାତାଙ୍କୁ ନମସ୍କାର କରୁଅଛୁ ।

'ସିଦ୍ଧାନ୍ତ ଦର୍ପଣ' ଗ୍ରନ୍ଥ ପ୍ରକାଶ ହବାପରେ ତାଙ୍କର ସ୍ୱଳ୍ପ ଗୁଣରାଶି ପ୍ରଚାରିତ ହୋଇଥିଲା । କୌଣସି କୌଣସି ବ୍ୟକ୍ତି ବିଶ୍ୱାସ କରି ପାରିଲେ ନାହିଁ ଯେ ସେ ସ୍ୱୟଂ ଏହି ଗ୍ରହ-ନକ୍ଷତ୍ରାଦି ନିର୍ଣ୍ଣୟ କରି ଅଛନ୍ତି ଏବଂ ପାଶ୍ଚାତ୍ୟ ଜ୍ୟୋତିଷର ସାହାଯ୍ୟ ନ ନେଇ ଗ୍ରହ-ନକ୍ଷତ୍ରର ଗତି ନିର୍ଣ୍ଣୟ କରିଅଛନ୍ତି । ତାଙ୍କର କୃତିତ୍ୱ ସେହିପରି ଅସାଧାରଣ ଥିଲା । କିନ୍ତୁ ସେମାନଙ୍କର ସଂଶୟ ଅମୂଳକ । ସେ ସଂସ୍କୃତ ଏବଂ ଓଡ଼ିଆ ଭାଷା ବ୍ୟତୀତ ଅନ୍ୟ ଭାଷା ଜାଣି ନ ଥିଲେ । ପାଶ୍ଚାତ୍ୟ ଜ୍ୟୋତିଷ ବିଦ୍ୟା, ଗଣିତ ବିଦ୍ୟା ପ୍ରଭୃତି ଜାଣିବାକୁ ହେଲେ ସେ ପଣ୍ଡିତମାନଙ୍କ ପାଖକୁ ଯାଉଥିଲେ । ସିଦ୍ଧାନ୍ତ ଦର୍ପଣ ପ୍ରକାଶ ହେବାର ଦୁଇବର୍ଷ ପରେ ଖ୍ରୀଷ୍ଟୀୟ ୧୯୦୦ ଅବ୍ଦରେ ସେ କଟକ ଆସିଥିଲେ । ସେତେବେଳେ ସେ ମୋ ନିକଟରୁ ପାଶ୍ଚାତ୍ୟ ଜ୍ୟୋତିଷ, ଗଣିତର

ଗ୍ରହମାନଙ୍କର ଗତି ଓ ପ୍ରବୃତ୍ତି ଆଦି ଯତ୍ନପୂର୍ବକ ଲେଖି ରଖୁଥିଲେ । ଏ ବିଷୟ ତାଙ୍କର ଜଣାଥିଲେ ସେ ବୃଦ୍ଧ ବୟସରେ ଏବଂ ସିଦ୍ଧାନ୍ତ ଦର୍ପଣ ପ୍ରକାଶ ପରେ ଆଗ୍ରହରେ ସେ ସବୁ ଲେଖି ନେଇ ନ ଥାନ୍ତେ । ସେହି ବର୍ଷ ମୁଁ 'ବ୍ରିଟିଶ ନାବିକ ପଞ୍ଜିକା' ଦେଖି ତାଙ୍କୁ ଗ୍ରହବେଧ ଆଦି ବିଷୟରେ କହୁଥିବାରୁ ସେ ତାଙ୍କ ଗଣନା ସହିତ ତୁଳନା କରିବା ପାଇଁ ଲେଖି ନେଇଥିଲେ । ଏହାର ବହୁ ବର୍ଷ ପୂର୍ବେ ମାଧବଚନ୍ଦ୍ର ଚଟ୍ଟୋପାଧ୍ୟାୟ କଟକରେ ଇଂଜିନିଅର ଥିଲେ । ସେ ସଂସ୍କୃତ ଜ୍ୟୋତିଷ ଶିକ୍ଷା କରି ପରେ କଲିକତାରୁ 'ବିଶୁଦ୍ଧ ସିଦ୍ଧାନ୍ତ ପଞ୍ଜିକା' ନାମକ ଖଣ୍ଡିଏ ପଞ୍ଜିକା ପ୍ରକାଶ କରୁଥିଲେ । ସେ ଚନ୍ଦ୍ରଶେଖରଙ୍କ ନାମ ଶୁଣିଥିଲେ ଏବଂ ତାଙ୍କ ସହିତ ଜ୍ୟୋତିଷ ସମ୍ବନ୍ଧରେ ପତ୍ର ବିନିମୟ କରିଥିଲେ । ପୁରାତନ 'ବିଶୁଦ୍ଧ ସିଦ୍ଧାନ୍ତ ପଞ୍ଜିକାର ଭୂମିକାରେ ସପକ୍ଷ ସମର୍ଥନାର୍ଥ ସିଦ୍ଧାନ୍ତ ଦର୍ପଣରେ ଶ୍ଳୋକ ଉଦ୍ଧୃତ କରିଥିଲେ । ସେ ସେହି ଶ୍ଳୋକ ନିଶ୍ଚୟ ଚନ୍ଦ୍ରଶେଖରଙ୍କ ପତ୍ରରୁ ପାଇଥିଲେ । ଦିନେ ଚନ୍ଦ୍ରଶେଖର ମୋତେ କହିଥିଲେ ଯେ, ମାଧବଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଅୟନାଂଶ ଗଣନା ସହିତ ତାଙ୍କର ଗଣନାର ପନ୍ଦର କଳା ପ୍ରଭେଦ ପଡ଼ୁଅଛି । କାହିଁକି ପଡ଼େ, ସେ ବୁଝି ପାରନ୍ତି ନାହିଁ । ସେ ମାଧବଚନ୍ଦ୍ରଙ୍କୁ ତାଙ୍କର ଗଣନାର ମୂଳ ଉପାୟ ପଚାରିଥିଲେ; କିନ୍ତୁ କୌଣସି ଉତ୍ତର ପାଇ ନ ଥିଲେ । ନ ପାଇବାର କଥା । କାରଣ 'ବିଶୁଦ୍ଧ ସିଦ୍ଧାନ୍ତ ପଞ୍ଜିକା' ବ୍ରିଟିଶ ନାବିକ ପଞ୍ଜିକାର ଗ୍ରନ୍ଥରେ ଲେଖା ହୋଇଥିଲା, ଏଥିରେ ଦେଖିବାର କୌଣସି ପ୍ରୟୋଜନ ନ ଥିଲା । ଏହି ହେତୁରୁ ଏହି ସାମାନ୍ୟ ବିଷୟରେ ଚନ୍ଦ୍ରଶେଖରଙ୍କ କୌତୂହଳ କମ୍ ନ ଥିଲା ।

ବାସ୍ତବିକ ଚନ୍ଦ୍ରଶେଖରଙ୍କ କୃତିତ୍ୱରେ ବିସ୍ମିତ ହେବାର ବହୁତ କାରଣ ଥିଲା । ଆଠଶତ ବର୍ଷ ପୂର୍ବେ ମହାରାଷ୍ଟ୍ର ଦେଶରେ ଭାସ୍କରାଚାର୍ଯ୍ୟ ଜ୍ୟୋତିର୍ଗଣନାରେ ଭାସ୍କର ସଦୃଶ ଉଦିତ ହୋଇଥିଲେ । ତାଙ୍କ ପରେ ବହୁ ଟୀକା ଗ୍ରନ୍ଥ ଓ ପଞ୍ଜିକା ଗଣନାର ଗ୍ରନ୍ଥ ରଚିତ ହୋଇଥିଲା; କିନ୍ତୁ କୌଣସି ଗ୍ରହବେଧ-ନିପୁଣ-ଗାଣିତିକ ଜନ୍ମ ଗ୍ରହଣ କରି ନ ଥିଲେ କି ଗ୍ରହ ଗଣିତର ପୁରାତନ ଧାରାଙ୍କର ପତନ ହୋଇ ନ ଥିଲା । ଦୁଇଶତ ବର୍ଷ ପୂର୍ବେ ଅମ୍ବରାଧିପତି ରାଜା ଜୟସିଂହ ପଞ୍ଜିକା ସଂସ୍କାରରେ ମନଯୋଗୀ ହୋଇ ଯଥେଷ୍ଟ ଚେଷ୍ଟା କରିଥିଲେ । ସେ ଇଉରୋପରୁ ଗ୍ରହ ଗଣନାର ଏକ ପ୍ରକାର ଯନ୍ତ୍ର ଆଣିଥିଲେ; କିନ୍ତୁ ସେ ଚେଷ୍ଟା ନିଷ୍ଫଳ ହୋଇଥିଲା । ସେତେବେଳର ରାଷ୍ଟ୍ରୀୟ ଅଶାନ୍ତି ଯୋଗୁଁ ତାଙ୍କର ଇଚ୍ଛା ପୂର୍ଣ୍ଣ ହୋଇପାରି ନ ଥିଲା ।

କିନ୍ତୁ ଚନ୍ଦ୍ରଶେଖର ସେ ଆୟୋଜନରେ କେବେହେଁ ଯୋଗଦେଇ ନ ଥିଲେ । ସେ ରାଜବଂଶ ସମ୍ଭୂତ ହେଲେହେଁ ଜଣେ ସାଧାରଣ ଗ୍ରାମବାସୀ ଥିଲେ । ପାଶ୍ଚାତ୍ୟ ଆଲୋକ ବର୍ଜିତ ପାର୍ବତ୍ୟ ଜଙ୍ଗଲ ପ୍ରଦେଶରେ ତାଙ୍କର ଜୀବନ ଅତିବାହିତ ହେଉଥିଲା । ସେ

ବର୍ଷ ବୟସବେଳେ ସେ ପ୍ରଥମେ କଣ୍ଟକ ସହର ଦେଖିଥିଲେ । ତାଙ୍କର ସନ୍ନ କୌଣସି ସୁଦକ୍ଷ କାରିଗର ଦ୍ୱାରା ତିଆରି ନୁହେଁ । ସେ ଗୁରୁଙ୍କ ଉପଦେଶ ପାଇ ନଥିଲେ । ଟୀକା ପାଠକରି ସ୍ୱୀୟ ବୁଦ୍ଧିବଳରେ କଠିନ ଗଣିତ ଓ ଗ୍ରହ ନକ୍ଷତ୍ରାଦିର ଉତ୍ପତ୍ତି ଆଦି ଶିଖି ପାରିଥିଲେ । ସେ ତାଙ୍କର ଗନ୍ତବ୍ୟ ପଥରେ ଶତଶତ ବାଧାବିଘ୍ନ ଅତିକ୍ରମ କରି ମହାପଣ୍ଡିତ ହୋଇଥିଲେ ଓ ଚିରକାଳ ଆମ୍ଭମାନଙ୍କର ଆଦର୍ଶ ହୋଇ ରହିବେ ।

ଚର୍ମଚକ୍ଷୁରେ କେବେହେଁ କାଚଚକ୍ଷୁ ପରି ଦେଖାଯାଇ ନ ପାରେ । ଏହି ହେତୁ ତାଙ୍କ ଆବିଷ୍କାର ପାଶ୍ଚାତ୍ୟ ଜ୍ୟୋତିଷ ଗଣିତ ତୁଳନାରେ ସୂକ୍ଷ୍ମ ହୋଇପାରି ନଥିଲା । କାରଣ ଏହା ଯନ୍ତ୍ରର ପ୍ରଭେଦ; କିନ୍ତୁ ଯନ୍ତ୍ରୀର ପ୍ରଭେଦ ନୁହେଁ । ଚର୍ମଚକ୍ଷୁ ଦ୍ୱାରା ସେ ତାଙ୍କର ଦେଶରେ ଓ ସେ ସମୟରେ ଅସାଧ୍ୟ ସାଧନ କରି ପାରିଥିଲେ ।

ସେ ପଞ୍ଜିକା ସଂସ୍କାରରେ ବ୍ରତୀ ହୋଇଥିଲେ ଏବଂ ସେ ବ୍ରତ ସଙ୍ଗତ ଭାବରେ ଉଦ୍‌ଯାପନ କରି ଯାଇଛନ୍ତି । ଆମ୍ଭମାନଙ୍କର ଧର୍ମ କାର୍ଯ୍ୟାଦି ଯେତେ ଅଛି, ଅନ୍ୟ କୌଣସି ଜାତିରେ ସେତେ ନାହିଁ । ପ୍ରତ୍ୟେକ ଧର୍ମକାର୍ଯ୍ୟ ପାଇଁ ନିର୍ଦ୍ଦିଷ୍ଟ ସମୟ ରହିଛି ଏବଂ ସେହି ନିର୍ଦ୍ଦିଷ୍ଟ ସମୟପାଇଁ ଆମର ପାଞ୍ଜି ଆବଶ୍ୟକ । ସେହି ପାଞ୍ଜିରେ ତିଥି, ନକ୍ଷତ୍ର ଭୁଲ ଥିଲେ ଆମ୍ଭମାନଙ୍କର ଧର୍ମକର୍ମାଦି ସମସ୍ତ ପଣ୍ଡ ହୁଏ । କିନ୍ତୁ କାଳାନ୍ତର ହେତୁ ପୂର୍ବ ପଣ୍ଡିତମାନଙ୍କର ନିଜ ଗଣିତ ଶିଥିଳ ହୋଇଅଛି । ଭାରତର ସର୍ବତ୍ର ଏହାର ସଂସ୍କାର ଚାଲିଛି । କିନ୍ତୁ କେଉଁ ସଂସ୍କାର ଧର୍ମର ଅବିରୋଧୀ ତାହା ସର୍ବବାଦୀ ସମ୍ମତ ହୋଇ ନାହିଁ । ପ୍ରତ୍ୟେକ ପ୍ରଦେଶରେ ଦୁଇ ପ୍ରକାର ପାଞ୍ଜି ପ୍ରକାଶିତ ହେଉଅଛି । ଏଥିପାଇଁ ବୁଦ୍ଧିମାନେ ସଂଶୟାକୁଳ ହୋଇପଡ଼ିଛନ୍ତି ।

କିନ୍ତୁ ଚନ୍ଦ୍ରଶେଖର ଓଡ଼ିଶାକୁ ନିଃସଂଶୟ କରି ଯାଇଅଛନ୍ତି । ସେ ତିରିଶ ବର୍ଷ ବୟସବେଳେ 'ସିଦ୍ଧାନ୍ତ ଦର୍ପଣ' ରଚନା କରିଥିଲେ । ତାହାର କିଛିଦିନ ପରଠାରୁ ତାଙ୍କର ସିଦ୍ଧାନ୍ତ ଗ୍ରନ୍ଥ ଅନୁଯାୟୀ ଗଣିତ ପଞ୍ଜିକା ଦ୍ୱାରା ପୁରୀ ମନ୍ଦିରରେ ନିତ୍ୟନୈମିତ୍ତିକ କାର୍ଯ୍ୟ ସମ୍ପନ୍ନ ହେଉଅଛି । ଏହି ପାଞ୍ଜିରେ ଯେଉଁ ଯତ୍‌ସାମାନ୍ୟ ତ୍ରୁଟୀ ଅଛି, ତାହା ଅକ୍ଳେଶରେ ସଂଶୋଧିତ ହୋଇପାରେ । ତାଙ୍କର ଏହି କାର୍ଯ୍ୟର ଗୁରୁତ୍ୱ ଅନୁଭବ କରି ଆମ୍ଭମାନଙ୍କ ହୃଦୟ ଶ୍ରଦ୍ଧାରେ ପରିପୂର୍ଣ୍ଣ ହୋଇଯାଏ ।

ଦିନେ ଭାରତୀୟମାନେ ଜ୍ଞାନ ବିଜ୍ଞାନରେ ଉନ୍ନତି ଲାଭ କରିଥିଲେ । ଆମ୍ଭେ-ମାନେ ସେମାନଙ୍କର ଉତ୍ତରାଧିକାରୀ । ଆମ୍ଭମାନଙ୍କର ଗର୍ବ କରିବା ସ୍ୱାଭାବିକ । କିନ୍ତୁ ପାଶ୍ଚାତ୍ୟ ଦେଶର କୌଣସି କୌଣସି ପଣ୍ଡିତ ଆମର ପୂର୍ବପୁରୁଷମାନଙ୍କର କୃତିତ୍ୱ ସ୍ୱୀକାର କରନ୍ତି ନାହିଁ । କେହି କେହି ସେମାନଙ୍କୁ ଜ୍ୟୋତିର୍ବିଦ୍ୟା ପାଇଁ ଯବନର ଦ୍ୱାରସ୍ଥ କରାଇଛନ୍ତି । କେହି ବା ସେମାନଙ୍କର କୃତିତ୍ୱ ଓ ସାଧନାକୁ ଉପହାସ କରନ୍ତି ।

ସେମାନଙ୍କର ମତରେ ଆମ୍ଭମାନଙ୍କ ପୂର୍ବପୁରୁଷମାନଙ୍କର ଉଦ୍ଭାବନୀଶକ୍ତି ନ ଥିଲା । କେଉଁ କାରଣରୁ ସେମାନଙ୍କର ପ୍ରତିକୂଳ ମତ ଜନ୍ମିଅଛି, ତାହା ସ୍ପଷ୍ଟ ! ଏହା ତର୍କଦ୍ୱାରା ଦୂରୀଭୂତ ହୁଏ ନାହିଁ । ଏହିପରି ଅବସ୍ଥାବେଳେ ଚନ୍ଦ୍ରଶେଖରଙ୍କର ଆବିର୍ଭାବରେ ଆମ୍ଭମାନଙ୍କ ଗୌରବ ଉଜ୍ଜ୍ୱଳତର ହୋଇଥିଲା । ଅମ୍ଭେମାନେ କୃତଜ୍ଞ ଚିତ୍ତରେ ତାଙ୍କର କୀର୍ତ୍ତି ବାରମ୍ବାର ସ୍ମରଣ କରୁଅଛୁଁ ।

ଶକ ୧୮୦୭ ଜ୍ୟେଷ୍ଠ କୃଷ୍ଣ ଦ୍ୱାଦଶୀ, ଖ୍ରୀଷ୍ଟୀୟ ୧୯୦୪ ଜୁନମାସ ୧୦ ତାରିଖରେ ଚନ୍ଦ୍ରଶେଖର ନୀଳାଚଳରେ ଇହଲୀଳା ସାଙ୍ଗକରି ଯାଇଅଛନ୍ତି । ଅନେକେ ତାଙ୍କର ଦୁର୍ବଳ ଜୀର୍ଣ୍ଣ କଙ୍କାଳସାର ଶରୀର ଦେଖିଥିବେ ଏବଂ ସେ ଶରୀରରେ ବୈଷ୍ଣବୋଚିତ କଠିନ ଧର୍ମ ପାଳନର ଅବିଚଳିତ ଶ୍ରଦ୍ଧାର ପରିଚୟ ପାଇଥିବେ । ତାଙ୍କର କାଲୋଚିତ ସାରଲ୍ୟ, ନିରହଙ୍କାର ଧୀରତା ଓ ନମ୍ରତା ସମସ୍ତଙ୍କୁ ମୁଗ୍ଧ କରିଥିଲା । ସେ ନାନା ଶାସ୍ତ୍ରରେ ପଣ୍ଡିତ ଥିଲେ; କିନ୍ତୁ କଥୋପକଥନରେ କିଛି ପ୍ରକାଶ ପାଉ ନ ଥିଲା । ସେ ସରକାରଙ୍କ ନିକଟରୁ 'ମହାମହୋପାଧ୍ୟାୟ' ଉପାଧି ପାଇବେ, ଏହା ତାଙ୍କର କଳ୍ପନାତୀତ ଥିଲା । ଷାଠିଏ ବର୍ଷ ବୟସରେ ମଧ୍ୟ ସେ ଜାଣି ନ ଥିଲେ ଯେ, ତାଙ୍କର ଗ୍ରନ୍ଥ ମୁଦ୍ରିତ ହୋଇ ପଣ୍ଡିତ ସମାଜରେ ଆଦୃତ ହେବ । ତାଙ୍କର ଆଜୀବନ ପରିଶ୍ରମର ଫଳ ସେ ଶ୍ରୀକୃଷ୍ଣଙ୍କୁ ଅର୍ପଣକରି ଯାଇଅଛନ୍ତି । ଏହି ନିଷ୍କାମ କର୍ମଯୋଗୀ ଚିରକାଳ ଆମ୍ଭମାନଙ୍କର ନମସ୍ୟ ହୋଇ ରହିଥିବେ । *

[ ସତ୍ୟବାଦୀ ୧୩୬୭ ]

---

* କଟକ ରେଭେନସା କଲେଜରେ ବହୁବର୍ଷ ଅଧ୍ୟାପନା କରିଥିବା ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କର ଏହି ରଚନାଟି ମାର୍ଗଶିର ୧୩୪୩ ସାଲ ବଙ୍ଗଳା ଭାରତବର୍ଷ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏଠାରେ ତାହାର ଅନୁବାଦ ଶ୍ରୀ ବିମଳକୃଷ୍ଣ ପାଳ ଏମ୍. ଏ. ବି. ଏଲ୍. କରିଛନ୍ତି ।

# ମନୁଷ୍ୟତା

ଶ୍ରୀ କାଳିଆ ପାଣିଗ୍ରାହୀ

ବିଶ୍ୱସୃଷ୍ଟିରେ ମାନବର ସ୍ଥାନ ସର୍ବୋଚ୍ଚ । ଏହା ସର୍ବ ଧର୍ମ, ସର୍ବ କାଳ ଓ ସର୍ବ ଦେଶ ସମ୍ମତ ଅଟେ । ସଂସାରରେ ନର ଜନ୍ମ ଦୁର୍ଲଭ ଅଟେ । ଜୀବନର ସାଧନା ବଳରେ ହେଉ ବା କରୁଣାମୟଙ୍କ ଅନୁଗ୍ରହରୁ ହେଉ ଜୀବ ନରଦେହ ଧାରଣ କରେ । ଭଗବତ୍ ଲାଭ ନିମନ୍ତେ ମନୁଷ୍ୟ ରୂପ ଧାରଣ ହିଁ ଏକମାତ୍ର ପଥ । ମାନବତ୍ୱ ପ୍ରାପ୍ତି ବିନା ଧର୍ମ ସାଧନ ଅସମ୍ଭବ । ମନୁଷ୍ୟର ଏହି ଅଦ୍ୱିତୀୟ ଓ ସର୍ବୋତ୍କୃଷ୍ଟ ସ୍ଥାନକୁ ଲକ୍ଷ୍ୟ କରି ଚଣ୍ଡୀ ଦାସ ଗାଇଥିଲେ—

ଶୁନହ ମାନୁଷ ଭାଇ
ସବାର ଉପରେ ମାନୁଷ ସତ୍ୟ
ତାହାର ଉପରେ ନାଇ ।

ଏହି ଭାବଟିକୁ ଅଧିକ ଦୃଢ଼କରି ରୁଷିଆର ପ୍ରସିଦ୍ଧ ଲେଖକ ମାକ୍ସିମ ଗର୍କୀ କହିଛନ୍ତି, "I am a man of earth, and outside of its men there is nothing I desire to know. Books bring me in friendly and magnanimous contact with men, inspire me with respect for them, and ever deepen my interest in man, master of the earth, creator of all that is fine and great on it."

ଖ୍ରୀଷ୍ଟିୟାନ ଧର୍ମ ଗ୍ରନ୍ଥରେ କୁହାଯାଇଛି Man was made in the image of God.

(୧) ସୃଷ୍ଟିର ଆରମ୍ଭରେ ମନୁଷ୍ୟ ନାମକ କୌଣସି ଜୀବ ନଥିଲା । ସୃଷ୍ଟି ଇତିହାସରେ ମାନବ ଜାତିର ଆବିର୍ଭାବ ଅତି ବିଳମ୍ବରେ ଘଟିଥିଲା । ବାଇବେଲ ମତ ଅନୁସାରେ ଭଗବାନ ଅନ୍ୟାନ୍ୟ ସୃଜନା କରିସାରିବା ପରେ, ଷଷ୍ଠ ଦିନ ମନୁଷ୍ୟକୁ ସୃଷ୍ଟି କରି ସଂସାରକୁ ପଠାଇଥିଲେ । ମାନବ ମନୁଙ୍କଠାରୁ ଜାତ ବୋଲି ହିନ୍ଦୁ ଧର୍ମ ଶାସ୍ତ୍ର କହେ । ମାନବ ଜାତିର ଏହି ବିଳମ୍ବ ଆବିର୍ଭାବ ସମ୍ବନ୍ଧରେ ଜୀବବିଜ୍ଞାନ ମଧ୍ୟ ସେହିପରି ମତ ପ୍ରଦାନ କରେ । ବିବର୍ତ୍ତନବାଦ ଅନୁସାରେ ମାନବ ସର୍ବଶେଷରେ ଜଗତକୁ ଆସିଥିଲା । ତେଣୁ ମାନବ ବାନର ବଂଶଧର ବୋଲି ଡାରଉଇନ୍ ପ୍ରଭୃତି ବୈଜ୍ଞାନିକମାନଙ୍କର ଅଭିମତ ।

(୩) ଜୀବଜନ୍ତୁମାନଙ୍କ ମଧ୍ୟରେ ମନୁଷ୍ୟ ଗୋଟିଏ ଜୀବ । ଜୀବନ ଧାରଣ ନିମନ୍ତେ ଅନ୍ୟ ଜନ୍ତୁମାନଙ୍କ ପରି ମନୁଷ୍ୟକୁ ମଧ୍ୟ କେତେ ପ୍ରକୃତିଗତ ନିୟମ ପାଳନ କରିବାକୁ ହୁଏ । ପ୍ରାଣ ଧାରଣ ସକାଶେ ତାହାକୁ ଅନ୍ୟ ପଶୁମାନଙ୍କ ପରି ପାନାହାର କରିବାକୁ ହୁଏ । ଅନ୍ୟ ଜୀବମାନଙ୍କ ପରି ମନୁଷ୍ୟ ମଧ୍ୟ ତାହାର ବଂଶ ଅଭିବୃଦ୍ଧି କରେ । ମନୁଷ୍ୟର ଯୋଡ଼ିଏ ପାଦ, ଏହାହିଁ ମନୁଷ୍ୟର ପଶୁଠାରୁ ଗୋଟିଏ ବିଶେଷ ପ୍ରଭେଦ । ମନୁଷ୍ୟର ଅନ୍ୟ ଏକ ନାମ "ଦୁଇ ଗୋଡ଼ିଆ ଜନ୍ତୁ ।" ଶାରୀରିକ ଗଠନରେ ମନୁଷ୍ୟ ପଶୁପକ୍ଷୀଠାରୁ କେତେଗୁଡ଼ିଏ ବିଷୟରେ ପୃଥକ୍ ହୋଇଥିଲେ ସୁଦ୍ଧା, ସେହି ଏକପ୍ରକାର ଜୈବିକ ନିୟମ ଦ୍ୱାରାହିଁ ଉଭୟଙ୍କ ଶରୀର ବଞ୍ଚିରହେ । ଗୋରୁ ଘାସ ଖାଇ ଯେପରି ନିଜକୁ ବଞ୍ଚାଇ ରଖେ, ମନୁଷ୍ୟ ଭାତ ଖାଇ ନିଜକୁ ସେହିପରି କେବଳ ବଞ୍ଚାଇ ରଖେ । ଗାଈର କ୍ଷୀର ଖାଇ ବାଛୁରି ବଞ୍ଚିଲା ପରି ମାତାର ସ୍ତନ୍ୟ ପାନ କରି ମାନବ ଶିଶୁ ବଞ୍ଚେ । ବୃକ୍ଷ ନୀଡ଼ରେ କପୋତ କପୋତୀଙ୍କ ଦାମ୍ପତ୍ୟ-ଲୀଳାର ପରିଣାମ ସ୍ୱରୂପ ଯେପରି ପକ୍ଷୀ ଶାବକ ଜାତ ହୁଏ, ସେହି ଏକ ପ୍ରାକୃତିକ ନିୟମର ଅଧୀନ ହୋଇ ମାନବ ଦମ୍ପତି ପୁତ୍ରକନ୍ୟା ଲାଭ କରନ୍ତି । ପାନାହାର ମୈଥୁନରେ ମାନବ ସମାଜରେ ପଶୁ ସମାଜ ଅପେକ୍ଷା ଆକାର ଗତ ପାର୍ଥକ୍ୟ ଥିଲେ ସୁଦ୍ଧା, ମୂଳରେ ଓ ପରିଣାମରେ ସେହି ସବୁ ଏକ ଓ ସମାନ । ସେ ହେତୁରୁ ମନୁଷ୍ୟ ପାନାହାରକୁ ଯେତେ ରୁଚିକର କରୁ, ଜନନ ପ୍ରକ୍ରିୟାକୁ ଯେତେ ରୋମାଞ୍ଚକର ପ୍ରଚ୍ଛନ୍ନ ବେଶ ପ୍ରଦାନ କରୁ, ପଶୁଠାରୁ ସେ କେବେ ପୃଥକ୍ ହୋଇ ପାରିବ ନାହିଁ । ଅଙ୍ଗୁଳି ପରିବର୍ତ୍ତେ ଚାମଚ ଓ କଣ୍ଟା ବ୍ୟବହାର କଲମାତ୍ରେ ମନୁଷ୍ୟ ପଶୁତ୍ୱରୁ ଉଦ୍ଧାର ପାଇନପାରେ । ଏକ-ପତ୍ନୀ-ବ୍ରତ ହୋଇ ସୁଦ୍ଧା ସେ ପାଶବିକ ଇନ୍ଦ୍ରିୟଲାଳସାରୁ ମୁକ୍ତ ହୁଏ ନାହିଁ । ଭୌତିକ ଜୀବନ ଧାରଣ ନିମନ୍ତେ, ରକ୍ତ ମାଂସର ଶରୀରକୁ ବଞ୍ଚାଇବା ସକାଶେ ମନୁଷ୍ୟକୁ ପଶୁ ଆଚରଣ କରିବାକୁ ହୁଏ । ଏହା ପ୍ରକୃତିର ଆଦେଶ । ମନୁଷ୍ୟ ପ୍ରକୃତିର ଶତ୍ରୁ ହୋଇ ଇହ ସଂସାରରେ କାଳ କଟାଇବା ଅସମ୍ଭବ । ପ୍ରକୃତିର ନିୟମକୁ ନ ମାନିଲେ ପ୍ରାକୃତିକ ଶରୀରକୁ ତ୍ୟାଗ କରିବାକୁ ମନୁଷ୍ୟ ବାଧ୍ୟ । ମାତ୍ର ଏପରି ଆତ୍ମଘାତୀ ପଦ୍ଧତି ଅନୁସରଣ କରିବାକୁ ସେ ପ୍ରସ୍ତୁତ ନୁହେଁ ।

(୪) ମନୁଷ୍ୟ ପଶୁ ସତ୍ୟ ମାତ୍ର ତା ସଙ୍ଗେ ସଙ୍ଗେ ସେ ପଶୁଠାରୁ ଆଉ କିଛି ଅଧିକ । ଦେହହିଁ ମନୁଷ୍ୟର ସର୍ବସ୍ୱ ନୁହେଁ । ଦେହ ବ୍ୟତୀତ ଆଉ କିଛି ଅଛି ଯାହା ହେତୁରୁ ତାହାର ପଶୁତ୍ୱ ମନୁଷ୍ୟତ୍ୱରେ ପରିଣତ ହୋଇପାରିଛି । ତାହା ହେଉଛି ତାହାର ମନ । ମନର ଅବସ୍ଥାନ ନିମନ୍ତେ ଗୋଟିଏ ଭୌତିକ ଇନ୍ଦ୍ରିୟ ଅଛି ସତ୍ୟ, ମାତ୍ର ମସ୍ତକ ଭିତରର ମସ୍ତିଷ୍କଟି ମାନବୀୟ ମାନସିକ ଶକ୍ତିର ଗୋଟିଏ କ୍ଷୀଣ ଆଧାର ରୂପେ ଏହି ମାନସିକ ଶକ୍ତି ସୃଷ୍ଟିର ମୂଳରେ ରହିଅଛି । ଏହି ପ୍ରଚ୍ଛନ୍ନ ଶକ୍ତିହିଁ ସମସ୍ତ ସୃଷ୍ଟିର ପିତା । ବୈଜ୍ଞାନିକ ବିଶ୍ଳେଷଣର ଫଳରେ ଆଧୁନିକ ଯୁଗର ବୈଜ୍ଞାନିକମାନେ

ଆଜି ଜଡ଼ବାଦରେ ବିଶ୍ୱାସୀ ନୁହନ୍ତି । ସେମାନେ ମଧ୍ୟ ବିଶ୍ୱ-ରହସ୍ୟ ଉଦ୍‌ଘାଟନ କରିବାକୁ ଯାଇ ସେହି ଏକ ମହାଶକ୍ତିର ମୂଳରେ ପହଞ୍ଚି ଅଛନ୍ତି । ସାର ଜେମ୍‌ସ ଜାନ୍‌ସ ତାଙ୍କର The Mysterious Universe ନାମକ ପୁସ୍ତକରେ ଜଡ଼ ବାଦର ଅଳୀକତା ଓ ମାନସିକ ଶକ୍ତିର ମୌଳିକତା ବିଷୟରେ କହିଛନ୍ତି । "To day the thought is, the universe beigns to look more like a great thought than like a great machine. Mind no longer appears as an accidental intruder into the realm of matter. We are beginning to suspect that we ought rather to hail it as the creater and governor of the realm of matter—not of course our individual minds, but the minds, in which the atoms out of which our individual minds have grown, exist as thoughts.

"Substantial matter has resolved itself into a creation and manifestation of mind. We discover that universe shows evidence of a designing or controlling power that has something in common with our own individual minds." ଏହି ମାନସିକ ଶକ୍ତି ଅନ୍ତର୍ଯ୍ୟାମୀ ବ୍ୟତୀତ ଅନ୍ୟ କିଛି ନୁହେଁ । ସମସ୍ତ ପ୍ରକାର ଜୀବରେ ଏହାର ଆବିର୍ଭାବ ରହିଅଛି । ମାତ୍ର ଏହି ଆବିର୍ଭାବ ସ୍ଥାନବିଶେଷରେ ତୁଳନାତ୍ମକ । କେଉଁଠାରେ ଅଧିକ, କେଉଁଠାରେ ଊଣା । ସୃଷ୍ଟ ଜୀବମାନଙ୍କ ମଧ୍ୟରେ ମନୋଶକ୍ତିର ପ୍ରାବଲ୍ୟ ମାନବ ପ୍ରାଣରେ ସର୍ବାଧିକ । ଏହି ଶକ୍ତି ଯେତେ ମାର୍ଜିତ ହୁଏ ସେତେ ଶୁଭ୍ର ହୁଏ । ଏହି ଶକ୍ତିହିଁ ମନୁଷ୍ୟକୁ ପଶୁଠାରୁ ପୃଥକ୍ କରି ରଖିଅଛି । "In the lower strata of the biological world one may trace the existence of a rudimentary mind, which at the state of evolution is no more than a mere hand maid of the great gile force, but in man, mind certainly is no less prominent a factor than life. It is this developed mind that alone has created the gulf between man and the rest of animals and established his suzerainty over them all."—Prabuddha Bharat, August 41.

ମନୁଷ୍ୟକୁ ତାହାର ମାନସିକ ଶକ୍ତି ମିଳିଥିଲା । ଆଦିମ ଅବସ୍ଥାରେ ଅଙ୍ଗୁଳି ବିଶିଷ୍ଟ ଦୁଇଟି ହସ୍ତ ଓ ଊର୍ଦ୍ଧ୍ୱ ଦୃଷ୍ଟିକ୍ଷମ ମସ୍ତିଷ୍କ ସମେତ ଗୋଟିଏ ମସ୍ତକ ବ୍ୟତୀତ ସୃଷ୍ଟିକର୍ତ୍ତା ତାହାକୁ ଆଉ କିଛି ଦାନ କଲେ ନାହିଁ । ପୌରାଣିକ ଅଦାମ ଇଭଙ୍କ ସହିତ ଐତିହାସିକ ଗୁହାମାନବର ସାମଞ୍ଜସ୍ୟ ଢେର୍ ବେଶି । ଯୁଗ ପରିବର୍ତ୍ତନ ସଙ୍ଗେ ସଙ୍ଗେ କାଳର ଗତି ପରେ ପରେ ମନୁଷ୍ୟ ତାହାର ଜୀବନରେ କେତେ ଅସଂଖ୍ୟ ପରିବର୍ତ୍ତନ

ଘଟାଇଅଛି । ତାହା ଇତିହାସର ଗୋଟିଏ କୌତୂହଳପ୍ରଦ ସୁଦୀର୍ଘ ବୃତ୍ତାନ୍ତ । ସ୍ତରକୁ ସ୍ତର ଭେଦ କରି ମାନବ ସଭ୍ୟତା କିପରି ଗଢି କରିଅଛି ତାହା ଚିନ୍ତାକଲେ ମନ ସ୍ତମ୍ଭିତ ହୁଏ । ନିଷାଦ ଅବସ୍ଥାରୁ ଉନ୍ନୀତ ହୋଇ ପାରିଧିକୁ କେବଳ ଜୀବନ ବଞ୍ଚାଇବାର ଏକମାତ୍ର ଉପାୟ ନ କରି ମନୁଷ୍ୟ କିପରି ପଶୁଚାରଣ ବୃତ୍ତି ଅବଲମ୍ବନ କରି ସ୍ଥାନରୁ ସ୍ଥାନକୁ ଭ୍ରମଣ କଲା, ତାପରେ ସେ କିପରି ଏହି ଭ୍ରାମ୍ୟମାଣ ଜୀବନରେ ବିରକ୍ତ ହୋଇ ପର୍ଯ୍ୟଟକ ବ୍ୟବସାୟ ତ୍ୟାଗ କରି, ଭୂମି କର୍ଷଣରେ ବ୍ରତୀ ହେଲା, କୃଷି-ସଭ୍ୟତା ରୂପ ସୂର୍ଯ୍ୟର ଚତୁର୍ଦ୍ଦିଗରେ କିପରି ପଲ୍ଲୀ-ଜୀବନ ଓ ଗ୍ରାମ୍ୟ-ବାଣିଜ୍ୟ ଘୂରିବାକୁ ଲାଗିଲା, ବାଣିଜ୍ୟର କ୍ରମ ବିବର୍ଦ୍ଧନ ଫଳରେ କିପରି ନାଗରିକ ସଭ୍ୟତାର ଅଭ୍ୟୁଦୟ ହେଲା, ପୁଣି ପରିଶେଷରେ ଯାନ୍ତ୍ରିକ ନିପୁଣତାଜନିତ ଶିଳ୍ପୋନ୍ନତି ପ୍ରଭାବରୁ କିପରି ମନୁଷ୍ୟର ସକଳ ପ୍ରକାର ଜୈବିକ ଆବଶ୍ୟକତା ପୂର୍ତ୍ତିହେଲା, ଏହି ସବୁ ଅନୁଧ୍ୟାନ କରିବା ଉଚିତ ।

(୬) ମନୁଷ୍ୟ ଜାତିର ଏହି ଆବାହମାନ ଐତିହାସିକ ଗତିରେ ଆଉ ଗୋଟିଏ ବିଷୟ ପ୍ରତି ଦୃଷ୍ଟି ନିକ୍ଷେପ କରିବା ଆବଶ୍ୟକ । ମନ ସାହାଯ୍ୟରେ ଭୌତିକ ଆବଶ୍ୟକତାକୁ ମେଣ୍ଟାଇଲେ ସୁଦ୍ଧା ତାହାର ପ୍ରାଣରେ ତୃପ୍ତି ଆସିନାହିଁ, କାରଣ ସେ ପଶୁତ୍ୱରୁ ଉଦ୍ଧାର ପାଇବାକୁ ଚାହେଁ । ଗୁହାମାନବ ଗୁହା ତ୍ୟାଗକରି ସୌଧ ଶିଖରରେ ରହିଲେ ସୁଦ୍ଧା ସେ ତୃପ୍ତ ନୁହେଁ ; କାରଣ ତାହାର ଆକାଙ୍‌କ୍ଷାର ଗତି ଅନ୍ୟ ପ୍ରକାର । ମାନସିକ ଶକ୍ତିର ଚରମ ଅଭିପ୍ରାୟ କେବଳ କେତେ ଶାରୀରିକ ଉପକାର ସାଧନ ଦ୍ୱାରା ହୋଇ ନ ପାରେ । ସେପରି ଶକ୍ତି ନ ଥାଇ ସୁଦ୍ଧା ପଶୁପକ୍ଷୀ ସମସ୍ତେ ବଞ୍ଚିବାକୁ ସକ୍ଷମ । ମାନସିକ ଶକ୍ତିର ଅଭିପ୍ରାୟ ଏତେ ଗୌଣ, ଏତେ ହୀନ, ଏତେ ନୀଚ ହୋଇ ନ ପାରେ । ମାନବ ମନରେ ଗୋଟିଏ ଅଚିନ୍ତନୀୟ ଅତୃପ୍ତି ତାକୁ ଅସ୍ତ ବ୍ୟସ୍ତ କରିଦିଏ । ଗୋଟିଏ ଅଜ୍ଞାତ-କାରଣ ଅଶାନ୍ତି ତାକୁ ସର୍ବଦା ଅଧୀର କରି ରଖେ । ଏହି ଅଧୀରତାହିଁ ତାହାକୁ ପଶୁତ୍ୱ ଗହ୍ୱରରୁ ବାହାର କରି ମନୁଷ୍ୟତା ଆଡକୁ ଟାଣିନିଏ । ସେ ପଶୁ ପ୍ରକୃତି ବର୍ଜନ କରି ପରିଶେଷରେ ଦେବତ୍ୱ ପ୍ରାପ୍ତ ହୁଏ । ଏହି ଦେବତ୍ୱ-ସୋପାନ ଆରୋହଣ ଜୀବନର ଏକମାତ୍ର ଲକ୍ଷ୍ୟ । ସେହି ଲକ୍ଷ୍ୟ ସିଦ୍ଧ ହେଲେ ସତ୍ୟ, ଶିବ ଓ ସୁନ୍ଦରର ଉପଲବ୍ଧି ହୁଏ । ଅବଶ୍ୟ ଏହା ସମୟସାପେକ୍ଷ, ମାତ୍ର ତାହାବୋଲି ମନୁଷ୍ୟକୁ ନିରାଶ ହୋଇ ଲକ୍ଷ୍ୟଭ୍ରଷ୍ଟ ହେବାକୁ ହେବନାହିଁ । ଲକ୍ଷ୍ୟଭ୍ରଷ୍ଟ ହେଲେ ପତନ ଅବଶ୍ୟମ୍ଭାବୀ । ମନୁଷ୍ୟ ଜୀବନରୂପ ମହା ସୁଯୋଗ ତ୍ୟାଗକରି ପୁନର୍ବାର ପଶୁତ୍ୱକୁ ଅବତରଣ କରିବା ଅପେକ୍ଷା ଅଧିକ ମୂର୍ଖତାର କାର୍ଯ୍ୟ ମନୁଷ୍ୟ କରି ନ ପାରେ । ଏହାହିଁ ମାହେନ୍ଦ୍ର ବେଳା । ଏହାହିଁ ସନ୍ଧିସ୍ଥଳ ।

ଏହି ସନ୍ଧିସ୍ଥଳରେ ଦଣ୍ଡାୟମାନ ହୋଇ ମନୁଷ୍ୟକୁ ବାଛି ନେବାକୁ ହେବ ହୁଏତ ଦେବତ୍ୱ ନଚେତ୍ ପଶୁତ୍ୱ । ଏକେ ହେଲେ ଚିରାନନ୍ଦ, ନୋହିଲେ ଚିରବିଷାଦ ।

(୬) ମନ ମନୁଷ୍ୟ ଜାତିକୁ ଗୋଟିଏ ଅମୂଲ୍ୟ ଦାନ । ଯେ କୌଣସି ଦାନର ବ୍ୟବହାର ତିନିପ୍ରକାର । **ଅବ୍ୟବହାର, ସଦ୍‌ବ୍ୟବହାର ଓ ଅପବ୍ୟବହାର ।** ମାନସିକ ଶକ୍ତିକୁ ବ୍ୟବହାର କରି ଯେଉଁ ବ୍ୟକ୍ତି ଶାରୀରିକ ଜୀବନ ନିର୍ବାହ ବ୍ୟତୀତ ଆଉ କିଛି କରେ ନାହିଁ, ସେ ପଶୁତ୍ୱ ସୋପାନରୁ ତଳେହେଲେ ଉପରକୁ ଉଠେ ନାହିଁ, ତାହାର ଜୀବନ ବ୍ୟର୍ଥ । ଯେଉଁ ବ୍ୟକ୍ତି ଇହ ଜୀବନରେ ଭଗବଦ୍-ଦତ୍ତ ଶକ୍ତିର ସଦ୍‌ବ୍ୟବହାର କରେ ସେ ସତ୍ୟ, ଶିବ, ସୁନ୍ଦରର ସନ୍ଧାନୀ ହୁଏ । ସେହିପରି ଶେଷରେ ଦେବତ୍ୱ ପ୍ରାପ୍ତ ହୁଏ । ତାହା ହେଉଛି ମନ ଓ ଦେହର ସଂଘର୍ଷ । ସେହି ସଂଘର୍ଷ ହିଁ ମନୁଷ୍ୟ ଜୀବନର କଷଟି ପଥର । ଏହି ଜୀବନରେ ମାଂସର ଟାଣ, ଇନ୍ଦ୍ରିୟର ଆକର୍ଷଣ ଅତିଶୟ ପ୍ରବଳ । ମନକୁ ଏହି ଆକର୍ଷଣ ସଙ୍ଗେ ଯୁଦ୍ଧ କରିବାକୁ ହୁଏ, ପାଶବିକ ଇନ୍ଦ୍ରିୟ ଲାଳସାରୁ ମୁକ୍ତ ରଖିବାକୁ ହୁଏ, ପୁଣି ପାର୍ଥିବତାରୁ ମୁଖ ଫେରାଇ ଦେଇ ଈଶ୍ୱରମୁଖୀ ହେବାକୁ ହୁଏ । ଏହା ମୁଖନିଃସୃତ ବାକ୍ୟ ପରି ସହଜସାଧ୍ୟ ନୁହେଁ । ଏହା ଅଧ୍ୟବସାୟ ଓ ଅଭ୍ୟାସ ସାପେକ୍ଷ । ଏହା ଦିନେ ଦୁଇଦିନରେ ହୋଇଯାଏ ନାହିଁ । ଯୁଗଯୁଗ ଧରି ଏହି ପ୍ରଚେଷ୍ଟା ଚାଲିଥାଏ । କୌଣସି ଜଣେ କବି କହିଥିଲେ "Thy centuries roll on perfecting a little flower". ଏହି ଚେଷ୍ଟାର ଆଦି ନାହିଁ କି ଅନ୍ତ ନାହିଁ, ଏହା ସୃଷ୍ଟିର ଲୀଳା । ଏହା ବିଶ୍ୱ ସ୍ରଷ୍ଟାଙ୍କ ବିଳାସ । ଏହା ସୃଷ୍ଟିକର୍ତ୍ତାଙ୍କ ଇଚ୍ଛା । ମାନସିକ ଶକ୍ତିର ସମ୍ପୂର୍ଣ୍ଣ ଅଭିବ୍ୟକ୍ତ ହେଲେ, ମନୁଷ୍ୟତା ବୁଦ୍ଧତ୍ୱରେ ପରିଣତ ହେଲେ, ଆତ୍ମା ଓ ପରମାତ୍ମାର ମିଳନ ହେଲେ ଏହି ସୃଷ୍ଟି ରହସ୍ୟର କ୍ରମ-ବିକାଶ ସହଜେ ଉପଲବ୍ଧ ହୁଏ । ଏଣୁ ମନର ସମ୍ୟକ୍ ବ୍ୟବହାର କଲେ ଦେବତ୍ୱ ମିଳେ । ଦେବଗୁଣ-ସୁଲଭ ମାନବର କେତୋଟି ଗୁଣ ଶ୍ରୀମଦ୍ ଭଗବଦ୍ ଗୀତାରେ ବର୍ଣ୍ଣିତ ହୋଇଅଛି । ଯେଉଁବ୍ୟକ୍ତି ସେହି ସବୁ ଗୁଣରେ ସମ୍ପନ୍ନ ସେ ଦେବତାର ସ୍ଥାନ ଅଧିକାର କରେ । ମାତ୍ର ସେହି ସବୁ ଗୁଣରେ ଗୁଣୀହେବା ପଥର ପ୍ରଧାନ ପ୍ରତିବନ୍ଧକ କାମ, କ୍ରୋଧ ଓ ଲୋଭ । ଏ ତିନିକୁ ପରିତ୍ୟାଗ ନ କଲେ ଦୈବୀ ସମ୍ପଦ ଲାଭ କରିବା ସମ୍ଭବ ନୁହେଁ । ଦେବଦତ୍ତ ମାନସିକ ଶକ୍ତିର ଅପବ୍ୟବହାର ଦ୍ୱାରା ମନୁଷ୍ୟ ଆସୁରୀ ସମ୍ପଦ ଲାଭ କରେ । ପୁରାଣାଦି ଗ୍ରନ୍ଥରେ ସେପରି ବ୍ୟକ୍ତିମାନେ ଅସୁର ନାମରେ ଅଭିହିତ । ବାବା ପ୍ରେମାନନ୍ଦ ଭାରତୀ ତାଙ୍କ ପ୍ରଣୀତ 'ଶ୍ରୀକୃଷ୍ଣ'ରେ ଲେଖିଛନ୍ତି ଯେ ଯେଉଁମାନେ ମାନସିକ ଶକ୍ତିକୁ ଭୌତିକ ଭୋଗ ନିମନ୍ତେ ଅତିଶୟ ବ୍ୟବହାର କରି ସଂସାରର ଅକଲ୍ୟାଣ କରନ୍ତି ସେମାନେହିଁ ଅସୁର । ଗୀତାନୁସାରେ ସେମାନଙ୍କଠାରେ ଦମ୍ଭ, ଦର୍ପ, ଅଭିମାନ, କ୍ରୋଧ, ନିଷ୍ଠୁରତା

ଓ ଅବିବେକତା ଆଦି ପ୍ରବୃତ୍ତି ପୂର୍ଣ୍ଣ ହୋଇଥାଏ । ସେମାନଙ୍କର ଯଥେଷ୍ଟ ମାନସିକ ଶକ୍ତି ରହିଥାଏ ସତ୍ୟ, ମାତ୍ର ତାହା ଉଚିତ ମାର୍ଗରେ ବ୍ୟବହୃତ ନ ହୋଇ ଅସତ୍ ମାର୍ଗରେ ବ୍ୟବହୃତ ହୁଏ । ସେମାନେ ବିବେକର ବାଣୀକୁ ବଧିର ହୁଅନ୍ତି । ଶାସ୍ତ୍ରର ଉପଦେଶକୁ ଉଲ୍ଲଙ୍ଘନ କରନ୍ତି; ପ୍ରକୃତି-ଜୟୀ ହୋଇ ସେମାନେ ପ୍ରାକୃତିକ ଶକ୍ତିକୁ ନିଜର ଇନ୍ଦ୍ରିୟ ଲାଳସାର ଚରିତାର୍ଥ ନିମନ୍ତେ ବ୍ୟବହାର କରନ୍ତି; ସେମାନେ ପ୍ରବୃତ୍ତି ବା ନିବୃତ୍ତି କିଛି ଜାଣନ୍ତି ନାହିଁ; ଏଣୁ ସେମାନଙ୍କଠାରେ ଶୌଚ, ଆଚାର ବା ସତ୍ୟ କିଛି ନ ଥାଏ । ସେମାନଙ୍କର ମନ ବିପରୀତ ମାର୍ଗରେ ଗତି କରେ । ସେମାନେ ସଂସାରକୁ ଅସତ୍ୟ, ବ୍ୟବସ୍ଥାହୀନ, ଈଶ୍ୱରଶୂନ୍ୟ, ନାରୀ-ପୁରୁଷ-ସଂଯୋଗ-ଜାତ ଓ କାମମୂଳକ ବୋଲି କହନ୍ତି । ସେମାନଙ୍କ ମତରେ ଏହାର ଅନ୍ୟ କୌଣସି କାରଣ ନାହିଁ । ଏପରି ନାସ୍ତିକତା ବା ଜଡ଼ବାଦରେ ଯେଉଁମାନଙ୍କର ବିଶ୍ୱାସ, ସେମାନେ ଦୁଷ୍ପୂରଣୀୟ କାମନାର ଅଧୀନ ହୋଇ, ଦମ୍ଭ, ଅଭିମାନ ଓ ଗର୍ବାନ୍ୱିତ ହୃଦୟରେ ମୋହବଶରୁ ଅସତ୍ ଆଗ୍ରହର ବିଷୟ ଗ୍ରହଣ ପୂର୍ବକ ଅଶୁଚି ବ୍ରତରେ ପ୍ରବୃତ୍ତ ହେବା କିଛି ବିଚିତ୍ର ନୁହେଁ । ସେମାନଙ୍କର ଜୀବନୀ ଆଲୋଚନା କଲେ ଜଣାଯାଏ, ସେମାନେ କିପରି ସାରା ଜୀବନଟାକୁ କଳଙ୍କିତ କରି ଚତୁର୍ଦ୍ଦିଗରେ ଗୋଟିଏ ଅପବିତ୍ର ନିରାନନ୍ଦମୟ ପାପପୂର୍ଣ୍ଣ ବାତାବରଣ ସୃଷ୍ଟି କରନ୍ତି । ସେମାନେ ମୃତ୍ୟୁକାଳ ପର୍ଯ୍ୟନ୍ତ ଅପରିମିତ ଚିନ୍ତାଶୀଳ ହୋଇ କାମୋପଭୋଗହିଁ ପରମ ପୁରୁଷାର୍ଥ ଏହି ଜ୍ଞାନରେ ସ୍ଥିର ନିଶ୍ଚୟ ହୁଅନ୍ତି ଏବଂ ଅସଂଖ୍ୟ ଆଶାରୂପ ପାଶରେ ଆବଦ୍ଧ ଓ କାମକ୍ରୋଧର ବଶୀଭୂତ ହୋଇ କାମସମ୍ଭୋଗ ନିମିତ୍ତ ଅନ୍ୟାୟପୂର୍ବକ ଅର୍ଥୋପାର୍ଜନ କରିବାକୁ ଚେଷ୍ଟାକରନ୍ତି । ଚାର୍ବାକ ନୀତି ହିଁ ଏମାନଙ୍କର ଧର୍ମ ହୁଏ । ଋଣ କରି ଘୃତ ଆହାର କରିବାକୁ ଏମାନେ କୁଣ୍ଠିତ ହୁଅନ୍ତି ନାହିଁ । "ସଂସାରେ ଥିବ ଯେତେଦିନ, ଆନନ୍ଦ କରୁଥିବ ମନ" ଏହି ଭାଗବତ ବାଣୀକୁ କଦର୍ଥରୂପେ ବ୍ୟବହାର କରି ଇନ୍ଦ୍ରିୟ ସୁଖକୁ ହିଁ ଆନନ୍ଦରୂପେ ଗ୍ରହଣ କରନ୍ତି । ମାନସିକ ବିକୃତି, ଅହଂଭାବ, ଆତ୍ମପ୍ରବଞ୍ଚନା ଓ ଅଜ୍ଞାନତା ବଶତଃ ସେମାନେ କହନ୍ତି, "ମୁଁ ଆଜି ଏହି ଦ୍ରବ୍ୟ ପାଇଲି, ଏହି ଈପ୍ସିତ ଦ୍ରବ୍ୟ ମଧ୍ୟ ନିକଟରେ ପାଇବି, ଏହି ଧନ ମୋର ଅଛି, ଏହି ଧନ ପୁଣି ପାଇବି, ମୁଁ ଏହି ଶତ୍ରୁକୁ ବଧ କରିଛି, ପୁଣି ଅନ୍ୟାନ୍ୟ ଶତ୍ରୁଙ୍କୁ ମଧ୍ୟ ବଧ କରିବି, ମୁଁ ଈଶ୍ୱର, ମୁଁ ଭୋଗୀ, ମୁଁ ସିଦ୍ଧ, ବଳବାନ ଓ ସୁଖୀ, ମୁଁ ଧନାଢ଼୍ୟ ଓ କୁଳୀନ, ମୋ ଭଳି ଆଉ କିଏ ଅଛି ? ମୁଁ ଯଜ୍ଞ କରିବି, ଦାନ କରିବି ଓ ପରମ ଆମୋଦ ଲାଭ କରିବି ।" ପ୍ରତ୍ୟେକ ନିଜକୁ ପଚାରିବା କଥା, "ଏହି ସବୁ ଦୋଷରେ ମୁଁ କେତେ ଦୂର ଦୁଷ୍ଟ ? ଏହି ଦୋଷ ନିରାକରଣ ନିମନ୍ତେ ମୁଁ କି ଚେଷ୍ଟା କରୁଅଛି ଓ ଅସୁରମାନଙ୍କ ଅପେକ୍ଷା ମୁଁ କେତେ-ଦୂର ଉନ୍ନତ ଓ ସେମାନଙ୍କ ସଙ୍ଗେ ମୁଁ କେତେ ଦୂର ସମାନ ? "ଆସୁରିକ ପ୍ରବୃତ୍ତି-ପୂର୍ଣ୍ଣ ମନୁଷ୍ୟର ଯାଗ ଯଜ୍ଞରେ କିମ୍ବା ଦାନ ପୁଣ୍ୟରେ କିଛି ଲାଭ ନାହିଁ । ଅହଙ୍କାର

ପୂର୍ଣ୍ଣ ଚିତ୍ତରେ ଦର୍ପାଭିମାନ ଜଡ଼ିତ ମନରେ, ଅନ୍ୟାସ୍ତ ଅର୍ଥୋପାର୍ଜନପୂର୍ଣ୍ଣ କର୍ମରେ ଭଗବାନଙ୍କର ଶତ ସହସ୍ର ନାମ ଉଚ୍ଚାରଣ କଲେ ସୁଦ୍ଧା ସେ ଶୁଣିବେ ନାହିଁ । ତେଣୁ ଶ୍ରୀକୃଷ୍ଣ କହୁଛନ୍ତି, "ଅହଙ୍କାର, ବଳ, ଦର୍ପ, କାମ ଓ କ୍ରୋଧର ବଶବର୍ତ୍ତୀ ହୋଇ ସେମାନେ ସ୍ୱଦେହ ଓ ପରଦେହରେ ଅବସ୍ଥିତ ମୋତେ ଦ୍ୱେଷକରି ସାଧୁମାନଙ୍କର ନିନ୍ଦାକରନ୍ତି । ସେହି ବିଦ୍ୱେଷୀ କ୍ରୂର ସ୍ୱଭାବ ନରାଧମମାନଙ୍କୁ ମୁଁ ସଂସାରରେ ଆସୁରୀ ଯୋନିରେ ବାରମ୍ବାର ନିକ୍ଷେପ କରିଥାଏଁ ।" ମନୁଷ୍ୟର ଜୀବନ ସନ୍ଧି ସ୍ଥଳରେ ରହିଲାବେଳେ ବଡ଼ ଅସ୍ଥିର । ତାହା ସର୍ବଦା ଗତିଶୀଳ । ତାହା ଏକେ ହେଲେ ଊର୍ଦ୍ଧ୍ୱକୁ ଉନ୍ନୀତ ହୁଏ, ନତୁବା ତଳକୁ ଅବତରଣ କରେ । କ୍ରମାରୋହଣ ଦ୍ୱାରା ସେ ଦେବତ୍ୱ ପ୍ରାପ୍ତ ହୁଏ, ନତୁବା କ୍ଷିପ୍ର ଅବରୋହଣ ଦ୍ୱାରା ଆସୁରୀ ଗତି ଲାଭ କରେ । ଯେଉଁଠାରେ ସେଠାରେ ଠିଆ ରହି mark time କରିବା ମନୁଷ୍ୟର ସାଧ୍ୟାତୀତ । ସେ ଯେତେଦିନ ଯାଏ ଉପରକୁ ଗତି ନ କରୁଛି ସେତେ ଦିନ ପର୍ଯ୍ୟନ୍ତ ନିମ୍ନଗାମୀ, ଏହା ତାକୁ ବୁଝି ରଖିବାକୁ ହେବ । ନିର୍ବେଦ ଚିତ୍ତରେ, ପଥର ପରି ମୌନବ୍ରତ ଅବଲମ୍ବନ ନିମନ୍ତେ ମାନବ ଜୀବନ ଗଠିତ ହୋଇନାହିଁ । ଅହରହ ତାହାର ଚେଷ୍ଟା ଲାଗିଛି । ଅହରହ ସେ ଘାତ ପ୍ରତିଘାତ ସହ୍ୟ କରୁଛି । ନିଜର ଉନ୍ନତି କରିବ ବୋଲି ଯେପରି କୌଣସି ଏକ ଶ୍ରେଣୀରୁ ଉପର ଶ୍ରେଣୀକୁ ଏକାପରି ତିନି ଚାରି ବର୍ଷରେ ସୁଦ୍ଧା ଉନ୍ନତ ନ ହୋଇ ପାରିଲେ ନିମ୍ନ ଶ୍ରେଣୀକୁ ମଧ୍ୟ ତ୍ୟାଗ କରିବାକୁ ହୋଇଥାଏ, ସେହିପରି ମନୁଷ୍ୟ ଜୀବନ ରୂପ ମହା ପରୀକ୍ଷାରେ ଉତ୍ତୀର୍ଣ୍ଣ ନ ହେଲେ, ଥରକୁ ଥର ଏହି ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ, ସେହି ସୁଯୋଗଟିକୁ ମଧ୍ୟ ହରାଇବାକୁ ହୋଇଥାଏ । ତେଣୁ ଶ୍ରୀକୃଷ୍ଣ କହୁଛନ୍ତି, "ସେହି ମୂଢ଼ଗଣ ଆସୁରୀ ଯୋନି ପ୍ରାପ୍ତ ହେଲେ, ମତେ ଲାଭ କରି ନପାରି ତଦପେକ୍ଷା ଅଧିକ ଅଧମଗତି ଅର୍ଥାତ୍ ନୀଚତର ଯୋନିରେ ପତିତ ହୁଅନ୍ତି ।"

(୭) କେତେ ଜଣ ଅସୁରଭାବାପନ୍ନ ବ୍ୟକ୍ତିଙ୍କ ପ୍ରଭାବରେ ଧର୍ମର ସମ୍ପୂର୍ଣ୍ଣ ଧ୍ୱଂସ ସମ୍ଭବପର ନୁହେଁ—ଏହାର ସାକ୍ଷୀ ଇତିହାସ । ହିରଣ୍ୟକଶିପୁଙ୍କ ପରି ଶକ୍ତିମାନ ସଦୃଶ କେତେ ଅସୁର ଏହି ଧରା ବକ୍ଷକୁ ଆସି ନାହାନ୍ତି ? ମାତ୍ର ରୋଗର ପ୍ରତିକାର ସ୍ୱରୂପ ପ୍ରତ୍ୟେକ ଅସୁରର କାର୍ଯ୍ୟ ପରିଶେଷରେ ପ୍ରତିହତ ହୋଇଅଛି । କେତେ ରୋଗ ଅଛି ଯହିଁରେ ଆପେ ଆପେ ତାହାର ବିରୋଧୀ ବୀଜାଣୁ ଜାତ ହୋଇ ରୋଗର ବିନାଶ କରନ୍ତି । ଅଧର୍ମର ରୋଗରୁ ମଧ୍ୟ ସେହିପରି ବୀଜାଣୁ ଜାତ ହୁଅନ୍ତି । ତାହା ପ୍ରକୃତିର ଆତ୍ମରକ୍ଷଣ ନୀତି, ଭଗବାନଙ୍କର ଶାସନ କୌଶଳ; ନଚେତ୍ ରାକ୍ଷସ ପୁରୀ ଲଙ୍କାରେ ବିଭୀଷଣଙ୍କର ଜନ୍ମ ଓ ହିରଣ୍ୟକଶିପୁଙ୍କ ଗୃହରେ ପ୍ରହ୍ଲାଦଙ୍କ ଆବିର୍ଭାବର କାରଣ ଆଉ କଣ ହୋଇପାରେ ? କଂସ କାରାଗୃହରେ ଭାଗିନେୟ ଶ୍ରୀକୃଷ୍ଣଙ୍କ ଜନ୍ମ ମଧ୍ୟ ସେହି ଏକ ନୀତିର ଅନ୍ୟତମ ଦୃଷ୍ଟାନ୍ତ ।

(୮) କେତେ ଧର୍ମ ଗ୍ରନ୍ଥରେ ମନୁଷ୍ୟର ଶରୀର ସୃଷ୍ଟିର ଗୋଟିଏ କ୍ଷୁଦ୍ର ସଂସ୍କରଣ ରୂପେ ଚତ୍ରିତ ହୋଇଅଛି । ତାହା ଅନ୍ୟ କୌଣସି ଦଗରୁ ଯେତେ ଦୂର ସଙ୍ଗତ ହେଉ ବା ନହେଉ, ଦେବାସୁର ସଂଗ୍ରାମ ଦଗରୁ ସମ୍ପୂର୍ଣ୍ଣ ସତ୍ୟ । କୌଣସି କାଳରେ କମ୍ବା କୌଣସି ଦେଶରେ ଦେବ ଓ ଅସୁରଙ୍କର ଅଭାବ ଘଟିନାହିଁ । ରାବଣ, କୁମ୍ଭକର୍ଣ୍ଣ, ଜରାସନ୍ଧ ଓ ଶିଶୁପାଳ ବରାବର ସେମାନଙ୍କର ଆସୁରୀ ପ୍ରଭାବ ଦେଖାଇବାକୁ ଛାଡ଼ି ନାହାନ୍ତି । ତାହା ସଙ୍ଗେ ସଙ୍ଗେ ରାମ ଓ କୃଷ୍ଣଙ୍କର ଆବର୍ଭାବ ଓ କାର୍ଯ୍ୟ କଳାପ ବରାବର ଲଗି ରହିଛି । ଧର୍ମାଧର୍ମର ଯୁଦ୍ଧ ସବୁ ଯୁଗରେ ବର୍ତ୍ତମାନ; ସବୁ ଯୁଗରେ ଅବତାରର ଆବଶ୍ୟକତା ରହିଛି । ଦ୍ୱାପର ଶେଷରେ ଶ୍ରୀକୃଷ୍ଣଙ୍କ ତରୋଧାନ ହୋଇଥିଲ ସତ୍ୟ, ମାତ୍ର ସଞ୍ଜୟଙ୍କର ସେହି ଅମରବାଣୀ ଆଜି ପର୍ଯ୍ୟନ୍ତ ଘୋଷଣା କରୁଛି—

ଯତ୍ର ଯୋଗେଶ୍ୱରଃ କୃଷ୍ଣ ଯତ୍ର ପାର୍ଥୋ ଧନୁର୍ଦ୍ଧରଃ
ତତ୍ର ଶ୍ରୀ ର୍ବିଜେୟୋଭୂତ ଧ୍ରୁବାନୀତର୍ମତ ର୍ମମ ।

(୯) ମନୁଷ୍ୟ ହୃଦୟ ମଧ୍ୟ ଧର୍ମ ଯୁଦ୍ଧ ବା ଦେବାସୁର ସଂଗ୍ରାମର ଅନ୍ୟ ଏକ କୁରୁକ୍ଷେତ୍ର । ସେହିଠାରେ ମନୁଷ୍ୟ ଓ ପଶୁ, ଦେବ ଓ ଅସୁର କଳହ କରନ୍ତି । ସେହି କଳହର ବରାମ ନାହିଁ । ଅତ ପ୍ରଚ୍ଛନ୍ନ ଭାବରେ ଶୟତାନ ଜଗିଥାଏ, ମାନବକୁ ଆୟତ୍ତ କରିବା ନମନ୍ତେ । ଇଡେନ ଉପବନରେ ଏହି ଶୟତାନର କରାଳ କବଳରେ ପତତ ହୋଇ ଆଦମ ମନୁଷ୍ୟ ଭବିଷ୍ୟତ୍ ବଂଶଧରକୁ ପାପର ବୋଝ ଦେଇଥିଲ । ମାତ୍ର ସେହି ଶୟତାନର କରାମତ ଯୀଶୁଙ୍କ ସମ୍ମୁଖରେ କାର୍ଯ୍ୟକାରୀ ହେଲନାହିଁ । କେତେ ପ୍ରଲୋଭନ ଆଣି ସେ ତାଙ୍କ ସମ୍ମୁଖରେ ସ୍ଥାପନ କଲ । ତଥାପି କ୍ଷୁଧାତୁର ସମ୍ମୁଖରେ ସୁସ୍ୱାଦୁ ଆହାର ସୁଦ୍ଧା ଯୀଶୁଙ୍କ ଦେବତ୍ୱ ଲୋପ କରି ପାରିଲ ନାହିଁ । ସେ ଶୟତାନକୁ ଘୃଣାବ୍ୟଞ୍ଜକ ସ୍ୱରରେ କହିଲେ "Man lives not by bread alone" । ପ୍ରକୃତରେ ଅନ୍ନରେ କେବଳ ବଞ୍ଚିଲେ ମନୁଷ୍ୟ ବଞ୍ଚିଲ ବୋଲି କହିବାକୁ ହେବ ନାହିଁ । ତାହାର ଅନ୍ୟ ଏକ ମହତ୍ତର ପ୍ରାଣ ଅଛି ଯାହାକୁ ଭୌତକ ଅନ୍ନ ବଞ୍ଚାଇ ରଖି ନ ପାରେ । ସେହି ପ୍ରାଣର ଖାଦ୍ୟ ଐଶ୍ୱରିକ ଉପାଦାନରେ ପ୍ରସ୍ତୁତ ହୁଏ । ତାହାହିଁ ଦେବଲୋକର ଅମୃତ । ମଥିତ ନ ହେଲେ ଯେପରି ଦୁଗ୍ଧରୁ ନବନୀତ ବାହାରେ ନାହିଁ, ସେହିପରି ଦେବାସୁର ବିଗ୍ରହ ନ ଘଟିଲେ ମାନବ ପ୍ରାଣରେ ଦେବତ୍ୱର ପ୍ରତଷ୍ଠା ହୋଇପାରେ ନାହିଁ । ମନ୍ଥନରୁ ଏକ ସମୟରେ ଯେ ବିଷ ବାହାରେ ଏହା ନଶ୍ଚିତ । ମାତ୍ର ବିଷ ହରଣ କରିବାକୁ ମଙ୍ଗଳମୟ ଶିବଙ୍କର ଅଭାବ କେବେ ଘଟି ନାହିଁ । ନୀଳକଣ୍ଠ ହୋଇ ବିଷପାନର ଦାୟିତ୍ୱ ଭଗବାନଙ୍କର, ମୋହିନୀ ରୂପେ ଅମୃତ ବଣ୍ଟନ କରିବା ଭାର ମଧ୍ୟ ସେହି ବିଶ୍ୱେଶ୍ୱରଙ୍କର । ମନୁଷ୍ୟର ଏକମାତ୍ର କର୍ତ୍ତବ୍ୟ ବାସୁକୀ ସାହାଯ୍ୟରେ ସମୁଦ୍ର ମନ୍ଥନ । ବୁଦ୍ଧଦେବଙ୍କ ବୋଧିଲଭର ପୂର୍ବ ଅବସ୍ଥା' ଏହି

ଦେବାସୁର ଯୁଦ୍ଧର ଅନ୍ୟ ଏକ ପ୍ରମାଣ । ମର ଆସି ବୁଦ୍ଧଦେବଙ୍କ ତପସ୍ୟା ଭଙ୍ଗ କରିବା ନିମନ୍ତେ କେତେ ଚେଷ୍ଟା କଲା । ମାତ୍ର ଦେବତ୍ୱର ଜୟ ଓ ଆସୁରିକତାର ପରାଜୟ ଘଟିଲା । ସେହିପରି ମଧ୍ୟ ଧ୍ରୁବଙ୍କ ଜୀବନୀ । ଅହରହ ମନୁଷ୍ୟର ଗୃହଆଡ଼େ ଶତ୍ରୁ ରହିଛନ୍ତି । ସବୁବେଳେ ତାକୁ ତାହାର ଶତ୍ରୁମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ହୁଏ । ଏହି ଯୁଦ୍ଧର ଫଳରେ ସେ ହେଲେ ହୁଏ ଦେବତା; ନତୁବା ରାକ୍ଷସ ।

(୧୦) ମନୁଷ୍ୟର ଯଦି ଦେବତା ହେବା ସମ୍ଭବ, ତେବେ ଏହି ଜଗତ ଦେବଭୂମି ହେବା ଅସମ୍ଭବ ନୁହେଁ । ଏହି ମାନବୀୟ ଜଗତ ହିଁ ଭଗବାନ୍‌ଙ୍କ ଲୀଳାର କ୍ଷେତ୍ର । ଏହି ମନୁଷ୍ୟର ହୃଦୟ ହିଁ ଅନ୍ତର୍ଯାମୀଙ୍କର ଆସନ । Kingdom of heaven ବୋଲି କୌଣସି ଏକ ଦୂରବର୍ତ୍ତୀ ଦେଶ ନାହିଁ । ଭଗବାନଙ୍କ ରାଜ୍ୟର ସୃଷ୍ଟି ଏହି ଆକାଶ ତଳେ ହିଁ ହୋଇଥାଏ । ଇହସଂସାରରେ ଧର୍ମ ପ୍ରତିଷ୍ଠା ହିଁ ଭଗବଦବତାରର ମୁଖ୍ୟ ଉଦ୍ଦେଶ୍ୟ । ପ୍ରତି ମୁହୂର୍ତ୍ତ ଏହି ଧର୍ମ ପ୍ରତିଷ୍ଠା କାର୍ଯ୍ୟ ସମାଜରେ ଓ ମାନବ ହୃଦୟରେ ଆବହମାନ କାଳରୁ ଚାଲିଆସୁଅଛି । ତାହାର କେବେ ବିରାମ ନାହିଁ । ଧର୍ମ ନାମରେ ଐହିକ ସଂସାର ପ୍ରତି ବୀତଶ୍ରଦ୍ଧ ହୋଇ ଧର୍ମ ପ୍ରତିଷ୍ଠା କାର୍ଯ୍ୟରେ ଅମନୋଯୋଗୀ ହେଲେ କର୍ତ୍ତବ୍ୟରେ ଅବହେଳା ଘଟେ । ଭଗବାନଙ୍କ ବାହିନୀରେ ନିଜକୁ ସୈନିକ ରୂପେ ଭୁକ୍ତ କରି ତାଙ୍କର ଯୁଦ୍ଧ ଆମ୍ଭମାନଙ୍କୁ କରିବାକୁ ହେବ । ସର୍ବ ଧର୍ମ ପରିତ୍ୟାଗ କରି ତାଙ୍କର ଶରଣ ଗ୍ରହଣ କରିବାକୁ ହେବ; ମାତ୍ର ଦେବାସୁର ସଂଗ୍ରାମରୁ ବିରତ ହେଲେ ଚଳିବ ନାହିଁ, ଏହାହିଁ ଗୀତା ଧର୍ମର ସାର ମର୍ମ । ଗୋଟିଏ କୁରୁ ପାଣ୍ଡବ ଯୁଦ୍ଧ ଚଳାଇବାକୁ କେବଳ ଉପନିଷଦ୍-ସାର ଗୀତାର ପ୍ରକଟନ ହୋଇ ନ ପାରେ । ଚିରନ୍ତନ ଦେବାସୁର ଯୁଦ୍ଧ ଲାଗି ଗୀତାର ଉପଦେଶ ଉଦ୍ଦିଷ୍ଟ । ଆତ୍ମା-ଅନାତ୍ମା ଯୁଦ୍ଧର ପ୍ରତୀକ ଅଟେ ସେହି କୁରୁକ୍ଷେତ୍ର । ତେଣୁ କୁରୁ କ୍ଷେତ୍ରକୁ ପ୍ରଥମ ଶ୍ଳୋକରେ ଧର୍ମକ୍ଷେତ୍ର ବୋଲି ପରିଚୟ ଦିଆ ଯାଇଅଛି । ଜଣେ ଗୀତା ସମ୍ବନ୍ଧରେ ଲେଖିଛନ୍ତି "In fact Arjuna's query did not relate to the war but to Brahman." ସେହି ଲେଖକଙ୍କ ମତରେ ଗୀତା ଉପାଖ୍ୟାନ ଐତିହାସିକ ନୁହେଁ କି ରୂପକ ନୁହେଁ । ତାହା ଚିରନ୍ତନ ସତ୍ୟର ଚିରନ୍ତନ ଅଭିବ୍ୟକ୍ତି । ସେହି ସତ୍ୟର ଆକାର ପ୍ରକାର ଅବସ୍ଥା ବିଶେଷରେ ପରିବର୍ତ୍ତିତ ହୋଇପାରେ । ସବୁ ଯୁଗରେ ଅର୍ଜୁନଙ୍କ ମନରେ ସନ୍ଦେହ ଉଦିତ ହେବା ଯେପରି ସତ୍ୟ, ଶ୍ରୀକୃଷ୍ଣଙ୍କ ଆଶ୍ରୟରେ ସେହି ସନ୍ଦେହ ଭଞ୍ଜନ ମଧ୍ୟ ସେହିପରି ସତ୍ୟ । ସତ୍ୟ ଏକ, ମାତ୍ର ତାହାର ରୂପ ଅନେକ ପ୍ରକାର । ତାହା କେଉଁଠାରେ Sermon on the mount ହୁଏ, କେଉଁଠାରେ ରାମାନନ୍ଦ-ଚୈତନ୍ୟ ମିଳନ ହୁଏ, ଅନ୍ୟ କେଉଁଠାରେ ଗାନ୍ଧୀ-ସୂତ୍ରରେ ବା ରବୀନ୍ଦ୍ର-ରଚନାବଳୀରେ ପ୍ରକାଶ ପାଏ । ଏହି ଆକାରଗତ ପାର୍ଥକ୍ୟ ହେତୁ ମୂଳ ପଦାର୍ଥରେ ଯେଉଁ ବ୍ୟକ୍ତି ପ୍ରଭେଦ ଦେଖେ, ସେ ଦେଖି ଦେଖେ ନାହିଁ । ଏପରି ପ୍ରଭେଦ ଦର୍ଶନ

ଧର୍ମ ବିଦ୍ୱେଷ ଓ ସାମ୍ପ୍ରଦାୟିକ ବିବାଦର ମୂଳକାରଣ । ମାନବିକତାର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ସତ୍ୟୋପଲବ୍ଧି ସଙ୍କୀର୍ଣ୍ଣ ମାନସିକତାରୁ ଉଦ୍ଧାର ପାଏ ! ଯେଉଁ ସତ୍ୟ ସମସ୍ତ ସତ୍ୟ ସହିତ ମିଳିତ ହୁଏ ସେହି, ସତ୍ୟ ହିଁ ପ୍ରକୃତ ସତ୍ୟ,—ଅନ୍ୟ ସବୁ ମିଥ୍ୟା ଓ ପରିତ୍ୟାଜ୍ୟ । ବିଶ୍ୱମାନବିକତା ସଙ୍ଗେ ଯେଉଁ ତଥ୍ୟ ସମତୁଲ୍ୟ ନୁହେଁ ତାହା ଅସତ୍ୟ ।

(୧୧) ଜଗତ ଭଗବାନଙ୍କର କର୍ମାଗାର । ତାଙ୍କର ସମସ୍ତ କାର୍ଯ୍ୟ କଳାପ କେବଳ ଏହି ଜଗତରେ ହୁଏ । ସେହି କର୍ମାଗାରର ପ୍ରଧାନ ସଚିବ ମନୁଷ୍ୟ । ତାଙ୍କ ଇଙ୍ଗିତରେ ସେ ତାଙ୍କର କାର୍ଯ୍ୟ କରିଯାଏ । ଭଗବାନ ଏହି ବିଚିତ୍ର ବିଶ୍ୱର ବିଧାଣୀ । ଭଗବାନଙ୍କ ଶକ୍ତିର କୌଣସି ଅଭାବ ନାହିଁ, ତଥାପି ସେ ମନୁଷ୍ୟକୁ ତ୍ୟାଗ କରି ତାଙ୍କ ସୃଷ୍ଟି କ୍ରିୟା ଚଳାଇବାକୁ ପ୍ରସ୍ତୁତ ନୁହନ୍ତି । ଏହା ତାଙ୍କର ଅସୀମ ଦୟା । ପରମ କାରୁଣିକ ଭଗବାନଙ୍କର ଏହି ଅନନ୍ତ କରୁଣାର ଯୋଗ୍ୟ ହେବା ନିମନ୍ତେ ମନୁଷ୍ୟର ସତତ ଚେଷ୍ଟା ଆବଶ୍ୟକ । ମନୁଷ୍ୟ ନିଜେ ଜାଣେ ତାହାର ଦୁର୍ବଳତା । ଏହି ଅଜ୍ଞାନତାର ଜ୍ଞାନ ତାହାର ଗୋଟିଏ ବଡ଼ ଗୁଣ । ନିଜର ଅଜ୍ଞାନତା ଜାଣିବା ନିମନ୍ତେ ଯଥେଷ୍ଟ ଜ୍ଞାନ ଆବଶ୍ୟକ । କଥିତ ଅଛି ପୃଥିବୀର ବୈଜ୍ଞାନିକ ସାର ଆଇଜାକ୍ ନିଉଟନ କହିଥିଲେ ଯେ ସେ ଜ୍ଞାନ-ସମୁଦ୍ର ତୀରରେ କେବଳ ଉପଲଖଣ୍ଡ ମାତ୍ର ସଂଗ୍ରହ କରୁଛନ୍ତି । ମନୁଷ୍ୟ ପ୍ରକୃତି ଓ ଦେବ ପ୍ରକୃତି ଉଭୟେ ଏକା ସମୟରେ ତାହାର ମନ ଅଧିକାର କରିବାକୁ ଚେଷ୍ଟା କରନ୍ତି । କାରଣ ତାହାର ଜୀବନ ଦୁଇଟି ଉପାଦାନରେ ଗଠିତ । ଏ ସମ୍ବନ୍ଧରେ Madam Saphia Wadhia ଲେଖିଛନ୍ତି, "But man has a lower animal nature. Imperfection therefore is stamped on the clay of which man's body is formed". ଏହି ସତ୍ୟଟିକୁ ମନୁଷ୍ୟ ଭୁଲି ପାରେ ନାହିଁ । ମାତ୍ର ତା ସଙ୍ଗେ ସଙ୍ଗେ ଦେବତ୍ୱ ପ୍ରତିଷ୍ଠାରେ ସେ କୌଣସି ଅବହେଳା କରେ ନାହିଁ ।

ଗାନ୍ଧିଜୀଙ୍କ ଚରିତ୍ରଗତ ପବିତ୍ରତା ସର୍ବଜନ ସମ୍ମତ; ତଥାପି ତାଙ୍କୁ ଏହି ପାଶବିକ ଆବରଣ ତ୍ୟାଗ କରି ନାହିଁ । ସେ ତାହା ସ୍ୱୀକାର କରନ୍ତି ଓ ସେପରି ସ୍ୱୀକାରରେହିଁ ତାଙ୍କର ନୈତିକ ବଳ ଅଛି । ସେ ଥରେ କହିଥିଲେ, "I am painfully conscious of my imperfection and therein lies all the strength. I possess, because it is a rare thing for man to know his own limitations." ଆମ୍ଭେମାନେ ଅବଶ୍ୟ ଦୁର୍ବଳ, ତଥାପି ଭଗବାନଙ୍କ ବଳରେ ଆମ୍ଭେମାନେ ବଳୀୟାନ ।

(୧୨) ଏହି ଜଗତରେ ଏହି ଜୀବନରେ ଭଗବତ୍ କାର୍ଯ୍ୟ ସାଧନ ନ କରି ପରବର୍ତ୍ତୀ ଜୀବନରେ ସେହି କାର୍ଯ୍ୟ କରିବାକୁ ଯେ ଭାବେ ସେ ପରିଶେଷରେ ହତାଶ ହୁଏ । ଧର୍ମ ସମ୍ପଦ ଏହି ଜୀବନରେ ହିଁ ନିତାନ୍ତ ଆବଶ୍ୟକ । କବୀର କହିଛନ୍ତି, "ଜୀବିତ ଅବସ୍ଥାରେ ତୁମର ବନ୍ଧନ ମୁକ୍ତ ନ ହେଲେ, ମୃତ୍ୟୁ ପରେ ତୁମ୍ଭେ ମୁକ୍ତ ପାଇବାକୁ କିପରି ଆଶା କରିବ ? ଶରୀରରୁ ଆତ୍ମା ଚାଲିଗଲା ମାତ୍ରେ ଭଗବାନଙ୍କ ସଙ୍ଗେ ମିଳିତ ହୁଏ ନାହିଁ । ଏପରି ଭାବନା ସ୍ୱପ୍ନସମ ଅଳୀକ । ଏତେବେଳେ ଯଦି ତୁମ୍ଭେ ଭଗବାନଙ୍କୁ ପାଇଛ, ସେତେବେଳେ ମଧ୍ୟ ତୁମ୍ଭେ ତାଙ୍କୁ ପାଇବ । ନ ହେଲେ ମୃତ୍ୟୁ ନଗର ହିଁ ତୁମ୍ଭର ଏକମାତ୍ର ଗନ୍ତବ୍ୟ ସ୍ଥଳ ।" ଏହି ଜୀବନରେ ହିଁ ଧର୍ମଯୁଦ୍ଧ କରିବାକୁ ହେବ । ସେହି ଯୁଦ୍ଧରେ ସେନାପତି ହେବେ ସ୍ୱୟଂ ଭଗବାନ ଏବଂ ଆମ୍ଭେମାନେ ହେବା ତାଙ୍କର ସୈନିକ ।

(୧୩) ଯେତେଦିନ ଯାଏ ମାନବ ହୃଦୟରେ ଭଗବଦ୍ ଆଲୋକ ପ୍ରବିଷ୍ଟ ହୋଇନାହିଁ ସେତେଦିନ ଯାଏ ତାହା ଅନ୍ଧକାରମୟ । ସଂସାରର ଅଜ୍ଞାନାନ୍ଧକାର ଦୂରୀକରଣ ମନୁଷ୍ୟ ଜୀବନରେ ଗୋଟିଏ ପ୍ରଧାନ କାର୍ଯ୍ୟ । ଭଗବାନଙ୍କ ଆଲୋକ ନିଜେ ପାଇ ପରକୁ ଦେବା ମନୁଷ୍ୟର ଧର୍ମ ।

ସତ୍ୟ-ପ୍ରେମରେ ବିଭୋର ହୋଇ ମାନବ ନିଜକୁ ଉପଲବ୍ଧି କଲେ ମନୁଷ୍ୟତା ଦେବତ୍ୱରେ ପରିଣତ ହୁଏ । ସେତେବେଳେ ସେ ବଜ୍ରଗମ୍ଭୀର ସ୍ୱରରେ କହିବାକୁ ସମର୍ଥ ହୁଏ, "ଅୟମହମ୍ଭୋ" ସେ ଉପଲବ୍ଧି କରେ "ସୋଽହମ୍," ଯୀଶୁଙ୍କ ଭାଷାରେ ସେ କହେ, "I and my father are one."

[ଭକ୍ତ ପ୍ରଦୀପ ୧୧ଶ ଭାଗ, ୨ୟ ସଂଖ୍ୟା]

---

# ବିବର୍ତ୍ତନ ବାଦର କଥା

ଡକ୍ଟର ବସନ୍ତକୁମାର ବେହେରା

ବିଶ୍ୱବିଦିତ ଇଂରେଜ ମନୀଷୀ ଚାର୍ଲସ ରବାର୍ଟ ଡାରଉଇନ୍ (୧୮୦୯-୧୮୮୨) ବିବର୍ତ୍ତନ ବାଦର ଜନ୍ମଦାତା । ଡାରଉଇନ୍‌ଙ୍କ ମତ ଆଜି ନିଖିଳ ଜନସମାଦୃତ । ଏହି ତତ୍ତ୍ୱର କେତୋଟି ସୂକ୍ଷ୍ମାଂଶ ପରିମାର୍ଜିତ ହୋଇ ନୂତନ ମତଦ୍ୱାରା ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ମୌଳିକ ତତ୍ତ୍ୱ ଅକ୍ଷୁଣ୍ଣ ରହିଅଛି । ଅଥଚ, ଏହି ମହାମନୀଷୀ ଯେତେବେଳେ ତାଙ୍କର ମତ ପୃଥିବୀରେ ପ୍ରଥମେ ପ୍ରଚାର କଲେ ସେତେବେଳେ ସମଗ୍ର ସଭ୍ୟ ଜଗତରେ ଯେଉଁ ପ୍ରବଳ ଝଟିକାର ଆବର୍ତ୍ତନ ହୋଇଥିଲା, ଆଜି ତାହା ଭାବିଲେ ସ୍ତମ୍ଭୀଭୂତ ହେବାକୁ ହୁଏ ।

ଜଗତର ସମସ୍ତ ବଡ଼ ବଡ଼ ବୈଜ୍ଞାନିକ ତଥ୍ୟର ଇତିହାସ ସମ୍ବନ୍ଧରେ ଆଲୋଚନା କଲେ ଦେଖାଯାଏ ଯେ ଏକାଧିକ ବିଖ୍ୟାତ ମନୀଷୀଙ୍କର ଅପୂର୍ବ ଚିନ୍ତାଧାରା ଓ ସାଧନା ଫଳରେ ସେଗୁଡ଼ିକ ପ୍ରତିଷ୍ଠିତ । ଅବଶ୍ୟ ଶେଷରେ ଜଣେ ଅସାଧାରଣ ପ୍ରତିଭା ସମ୍ପନ୍ନ ମହାମନୀଷୀ ସମସ୍ତ ଖଣ୍ଡ ଖଣ୍ଡ ଚିନ୍ତାକୁ ଏକତ୍ର କରି, ଆପଣାର ଅଲୌକିକ ପ୍ରତିଭାଦ୍ୱାରା ତାକୁ ଏକ ସମ୍ପୂର୍ଣ୍ଣ ନୂତନ ରୂପଦେଇ ମାନବ ସମାଜରେ ସୁପ୍ରତିଷ୍ଠିତ କରିଥାନ୍ତି । ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କ 'ରିଲେଟିଭିଟି' ତଥ୍ୟ ସମ୍ବନ୍ଧରେ ଏହା ଯେପରି ପ୍ରଯୁଜ୍ୟ ଡାରଉଇନଙ୍କ ବିବର୍ତ୍ତନବାଦ ସମ୍ବନ୍ଧରେ ମଧ୍ୟ ସେହିପରି ପ୍ରଯୁଜ୍ୟ ।

ବହୁ ପ୍ରାଚୀନକାଳର ଦାର୍ଶନିକଗଣ ଜଗତରେ ଏକ ବିବର୍ତ୍ତନଶୀଳ ଜୀବନର ଧାରା ସମ୍ବନ୍ଧରେ ମତବ୍ୟକ୍ତ କରିଅଛନ୍ତି । ପ୍ରାଚୀନ ଗ୍ରୀକ୍, ହିନ୍ଦୁ ଓ ରୋମାନ୍ ଦାର୍ଶନିକମାନଙ୍କର ରଚନାରେ ଏହାର ସୂଚନା ଦେଖିବାକୁ ମିଳେ । ଡାରଉଇନ୍‌ଙ୍କ 'ଇଭଲିଉଶନ୍' ଲାଟିନ୍ ଶବ୍ଦ 'ଇଭାଲଭିୟୁର' (Euoluvre)ରୁ ରୂପଲବ୍ଧ କରିଅଛି । ଏହି ଶବ୍ଦର ଅର୍ଥ 'ଖୋଲିଯିବା' । ଜୀବନର ଗଣ୍ଠିଗୁଡ଼ିକ ଖୋଲି ହୋଇ ଏକରୁ ଆରେକକୁ ପରିବର୍ତ୍ତିତ ହୋଇଅଛି—ସମ୍ଭବତଃ ଏହି ଅର୍ଥରେ ଉକ୍ତ କଥାର ବ୍ୟାଖ୍ୟା କରାଯାଇଅଛି । 'ପ୍ରକୃତିରେ ମାନବର ସ୍ଥାନ' (Man's place in Nature)ର ଅମର ଲେଖକ ହାକ୍‌ସଲେ ବିବର୍ତ୍ତନବାଦର ବ୍ୟାଖ୍ୟା ଏହିପରି କରି ଅଛନ୍ତି—"A general name for the steps by which any living being has acquired the morphological and physiological characters which distinguish it."

ସେ ଯାହା ହେଉ, ଡାର୍‌ଉଇନଙ୍କ ତଥ୍ୟ ସମ୍ବନ୍ଧରେ କିଛି କହିବା ଆଗରୁ ଏହାର ପୂର୍ବ ଇତିହାସ ସମ୍ବନ୍ଧରେ କିଞ୍ଚିତ୍ ଆଭାସ ଦେବା ଆବଶ୍ୟକ ।

ପ୍ରାଗୈତିହାସିକ ଯୁଗରେ ଯେଉଁ ସମସ୍ତ ଅତିକାୟ ଜୀବଜନ୍ତୁ ପୃଥିବୀ ପୃଷ୍ଠରେ ବିଚରଣ କରୁଥିଲେ, ଯେଉଁମାନେ ଆଜି ଲୁପ୍ତ ଓ ପ୍ରକୃତିର ମହାଲୀଳାରେ ଯେଉଁମାନଙ୍କର ଅବଶିଷ୍ଟାଂଶ ପ୍ରସ୍ତର ଗାତ୍ରରେ ଖୋଦିତ ହୋଇ ରହି ଯାଇଅଛି, ଏବଂ ଯେଉଁମାନଙ୍କୁ ଆମ୍ଭେମାନେ 'ଫସିଲ୍' (fossil) ଆଖ୍ୟା ଦେଇଥାଉଁ, ତନ୍ନିର ତଥ୍ୟ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ପୂର୍ବେ ଲୋକଙ୍କୁ ଜଣା ନ ଥିଲା । ଏହି ସମୟରେ ପୃଥିବୀ ବିଖ୍ୟାତ ଇଟାଲୀୟ ଚିତ୍ରକର ଓ ବୈଜ୍ଞାନିକ ଲିଓନାର୍ଡ଼ୋ-ଡା-ଭିନ୍‌ସି (୧୪୫୨-୧୫୧୯) 'ଫସିଲ୍' ସମ୍ବନ୍ଧରେ ପ୍ରକୃତ ତଥ୍ୟ ଉଦ୍ଭାବନ କରିଥିଲେ । ପ୍ରାଗୈତିହାସିକ ଯୁଗର ଜୀବଜନ୍ତୁ ଧ୍ୱଂସପ୍ରାପ୍ତ ହେବାପରେ, କଠିନ ମୃତ୍ତିକାସ୍ତର ମଧ୍ୟରେ, ଶତାବ୍ଦୀ ପରେ ଶତାବ୍ଦୀ ପର୍ଯ୍ୟନ୍ତ କଙ୍କାଳର ଯେଉଁ ଛାପ ରହିଯାନ୍ତି ତାହା 'ଫସିଲ୍' ନାମରେ ଆଖ୍ୟାତ । ଲିଓନାର୍ଡ଼ୋଙ୍କର ତଥ୍ୟ ଉଦ୍ଭାବନ ପରେ ମଧ୍ୟ ସେତେବେଳେ କେହି ବେଶି ସେ ବିଷୟରେ ମସ୍ତିଷ୍କ ଚାଳନା କରି ନ ଥିଲେ; କିନ୍ତୁ ଏହା ପରେ ଯେତେବେଳେ ପ୍ରାଣୀତତ୍ତ୍ୱ ଓ ଉଦ୍ଭିଦତତ୍ତ୍ୱ ସମ୍ବନ୍ଧରେ ଲୋକେ ଧୀରେ ଧୀରେ ଆଗ୍ରହାନ୍ୱିତ ହେବାକୁ ଲାଗିଲେ ସେତେବେଳେ ପ୍ରାଗୈତିହାସିକ ଯୁଗର ଜୀବଜନ୍ତୁମାନଙ୍କ ସମ୍ବନ୍ଧରେ ନୂତନ ବୈଜ୍ଞାନିକ ଧାରଣାର ସୃଷ୍ଟି ହେଲା ଏବଂ ଏହାର ମୂଳରେ ଲିଓନାର୍ଡ଼ୋଙ୍କର 'ଫସିଲ୍' ତତ୍ତ୍ୱ ପ୍ରତିଷ୍ଠା ଲାଭ କରିଥିଲା ।

ଏହାର ପ୍ରାୟ ତିନଶତ ବର୍ଷ ପରେ, ସୁପ୍ରସିଦ୍ଧ ପ୍ରକୃତିତତ୍ତ୍ୱବିତ୍ ଫରାସୀ ମନୀଷୀ ଲାମାର୍କ (Jean Bapliste Pierre Antoine de Monnet, cheval er de. Lamarck. (୧୭୪୪-୧୮୨୯) ଙ୍କର, ୧୮୦୯ ଖ୍ରୀଷ୍ଟାବ୍ଦରେ "Philosophie Zoologique" ଏବଂ ୧୮୧୫ ଖ୍ରୀଷ୍ଟାବ୍ଦରେ "Histoire Naturalle des Animaur sans Vertebres" ପ୍ରକାଶ କରି ସେଥିରେ ଉଦ୍ଭିଦ ଜଗତରେ ବେଷ୍ଟନୀର ପ୍ରଭାବ ଏବଂ ଜୀବ-ଜଗତରେ ବଂଶ ପରମ୍ପରାରେ ଆକୃତି ଓ ପ୍ରକୃତିଗତ ସାଦୃଶ୍ୟ ବିଷୟ ଆଲୋଚନା କରିଥିଲେ । ପୂର୍ବେ ଅତିକାୟ ତିମି ମତ୍ସ୍ୟର ପଶ୍ଚାଦ୍ ଭାଗରେ ପାଦ ଥିଲା; କିନ୍ତୁ ଏହା କ୍ରମେ ଅପ୍ରୟୋଜନୀୟ ହୋଇ ଆସିଲା । ଏହାର ଫଳ ସ୍ୱରୂପ ବଂଶାନୁକ୍ରମେ ଏହି ବିରାଟ ମତ୍ସ୍ୟର ପାଦ ପ୍ରୟୋଜନ ଓ ବ୍ୟବହାର ଅଭାବରୁ କ୍ଷୁଦ୍ରତର ହୋଇ ଶେଷରେ ଅଦୃଶ୍ୟ ହେଲା ।

ଲାମାର୍କଙ୍କ ପରେ ଅସାଧାରଣ ପ୍ରତିଭା ସମ୍ପନ୍ନ ଅଷ୍ଟ୍ରିୟାର ଉଦ୍ଭିଦ-ତତ୍ତ୍ୱବିତ୍ ଗ୍ରେଗରୀ ଜୋହାନ ମେଣ୍ଡେଲ (୧୮୨୨-୧୮୮୪) ଲାମାର୍କଙ୍କ ତଥ୍ୟଟିକୁ ଆହୁରି ସ୍ପଷ୍ଟରୂପେ ପ୍ରତିପାଦିତ କରିଥିଲେ ଏବଂ ନିଜେ ଗୋଟିଏ ସମ୍ପୂର୍ଣ୍ଣ ନୂତନ ତଥ୍ୟ ପ୍ରକାଶ କରି

ଜଗତକୁ ସ୍ତମ୍ଭିତ କରି ଦେଇଥିଲେ । ସେ ବଂଶ ପରମ୍ପରାନୁକ୍ରମିକ ପ୍ରକୃତି ସମ୍ବନ୍ଧରେ ବିସ୍ତୃତ ଗବେଷଣା କରି କହିଲେ, ଯଦି ବଂଶ ପରମ୍ପରା ପ୍ରକୃତି ଓ ଆକୃତିଗତ ହୁଏ, ତେବେ ଅବଶେଷରେ ଏକ ସମ୍ପୂର୍ଣ୍ଣ ନୂତନ ସ୍ତରର ଜୀବର ସୃଷ୍ଟି ହେବ । ଏହି ତଥ୍ୟ ଦ୍ୱାରା ପ୍ରାଚୀନ ବିଶ୍ୱାସ ମୂଳରେ ସେ କୁଠାରାଘାତ କରିଥିଲେ । କାରଣ ପ୍ରାଚୀନ ପଣ୍ଡିତ-ମାନଙ୍କର ମତ ଥିଲା ଯେ, ସୃଷ୍ଟିର ଆଦ୍ୟରେ ଯେଉଁ ଜୀବ ତିଆରି ହୋଇଥିଲେ, ସେମାନେ ବର୍ତ୍ତମାନ ଯେପରି ଅଛନ୍ତି ଠିକ୍ ସେହିପରି ଗଢ଼ା ହୋଇଥିଲେ । ଅନ୍ୟ କଥାରେ ଏହି ସୃଷ୍ଟି ଏକାବେଳକେ ସଦା-ପ୍ରସ୍ତୁତ ।

ଏହି ସମୟରେ ଟମାସ ରବର୍ଟ ମେଲଥାସ୍ (୧୭୬୬-୧୮୩୪) ନାମକ ଜଣେ ଇଂରେଜ "The Principle of Population" ନାମକ ଅର୍ଥନୀତି ସମ୍ବନ୍ଧରେ ଗୋଟିଏ ମୌଳିକ ପ୍ରବନ୍ଧ ପ୍ରକାଶ କରିଥିଲେ, ଯହିଁରେ ଅର୍ଥନୀତିର ଏକ ଚିରନ୍ତନ ସମସ୍ୟା ଆଲୋଚିତ ହୋଇଥିଲା । ଜନସଂଖ୍ୟା କି ଭୟାବହ ରୂପେ ବଢ଼ି ଚାଲିଛି, ଅଥଚ ଅନ୍ୟ ଦିଗରେ ଖାଦ୍ୟ ସରବରାହ ତଦନୁପାତରେ ବୃଦ୍ଧି ପାଇବା କିପରି ସମ୍ଭବପର ହେଉନାହିଁ—ଏହି କଥା ସେ ଦର୍ଶାଇଥିଲେ । ଏହି ଚିରନ୍ତନ ସମସ୍ୟାର ସମାଧାନ ଆଜି ପର୍ଯ୍ୟନ୍ତ ହୋଇନାହିଁ । କିନ୍ତୁ ସେ ଯୁଗରେ ଏଭଳି ଆଲୋଚନା ବିରଳ ଥିଲା । ମେଲଥାସଙ୍କ ମତରେ ବିବାହ ଓ ଅନ୍ୟାନ୍ୟ ବିଷୟରେ ଜନସଂଖ୍ୟା ନିୟନ୍ତ୍ରଣ କରିବା ଏକାନ୍ତ କର୍ତ୍ତବ୍ୟ । ବଞ୍ଚି ରହିବାକୁ ହେଲେ ଖାଦ୍ୟ ଦରକାର । କାର୍ଯ୍ୟତଃ, ଜୀବନ ସଂଗ୍ରାମରେ ସତ୍ତା ବଜାୟ ରଖିବା ପାଇଁ ପ୍ରାଣୀକୁ ଯୁଦ୍ଧ କରିବାକୁ ପଡ଼େ ଏବଂ ଜିଣିବାକୁ ହେଲେ ଖାଦ୍ୟ ସମସ୍ୟାର ସମାଧାନ ସର୍ବାଦୌ ପ୍ରୟୋଜନ ।

ତାଙ୍କର ରଚନା ସର୍ବତ୍ର ସମାଦୃତ ହେଲା । ଏ ସମୟରେ ଅନ୍ୟାନ୍ୟ ଅନେକଙ୍କ ମଧ୍ୟରେ ଦୁଇ ଜଣ ବିଖ୍ୟାତ ଚିନ୍ତାଶୀଳ ବ୍ୟକ୍ତିଙ୍କର ଏହି ପ୍ରବନ୍ଧ ପ୍ରତି ନଜର ପଡ଼ିଲା । ସେମାନେ ହେଉଛନ୍ତି ଆଲେଫ୍ରେଡ୍ ରାସେଲ ଓ ଚାର୍ଲସ ଡାରଉଇନ । ଉଭୟେ ଥିଲେ ପ୍ରକୃତିତତ୍ତ୍ୱବିତ୍ । ଲାମାର୍କଙ୍କ ତଥ୍ୟରୁ ସେମାନେ ଗୋଟିଏ ବିଷୟ ବୁଝିଥିଲେ; କିନ୍ତୁ ତାହା ଅସମ୍ପୂର୍ଣ୍ଣ ଭାବରେ । ଲାମାର୍କ କହନ୍ତି ବଂଶ ପରମ୍ପରାରେ କ୍ରମବିକାଶ ଫଳରେ ନୂତନତର ଜୀବର ସୃଷ୍ଟି ହୁଏ । କିନ୍ତୁ ତାହେଲେ ଜୀବ ଜଗତ ଏତେ ରକମ ଭାବରେ କ୍ରମପରିବର୍ତ୍ତନଶୀଳ ହୁଏ କିପରି ? ଯୁଗ ଯୁଗ କ୍ରମାଗତ ନୂତନରୁ ନୂତନତର ଜୀବ ଆବିର୍ଭୂତ ହେଉଛନ୍ତି କିପରି ? ଏ ସବୁର ଉତ୍ତର ସେମାନେ ପାଇଲେ ମେଲ୍‌ଥାସ୍‌ଙ୍କ ରଚନାରେ – ତାଙ୍କର ସେହି ସତ୍ତା ପାଇଁ ଯୁଦ୍ଧ ଭିତରେ ।

ସେମାନଙ୍କର ମତ ଥିଲା, ଜୀବ ହେଉ ବା ଉଦ୍‌ଭିଦ୍ ହେଉ କେହି ହେଲେ ସେମାନଙ୍କର ପୂର୍ବପୁରୁଷଗଣଙ୍କ ବଂଶ ପରମ୍ପରାରେ ଅଳ୍ପ ଅଳ୍ପ ପରିବର୍ତ୍ତିତ ନ କରି ସୃଷ୍ଟି ହୋଇଯାନ୍ତି ନାହିଁ—ଯାହା ଫଳରେ ବହୁ ପୁରୁଷ ପରେ ଏକ ଜୀବରୁ ଅନ୍ୟ ଏକ

ଜୀବର ଉତ୍ପତ୍ତି ହୁଏ । ତାହେଲେ ତ ତାହା ଜୀବନ୍ତ କଲ ହୋଇଗଲା । ସେମାନଙ୍କ ମତରେ ସେମାନେ ନିଜେ ପାରିପାର୍ଶ୍ୱିକ ଅବସ୍ଥା ସହିତ ଖାପ ଖାଇ ନ ଚଳିଲେ ହେବ ନାହିଁ । କାର୍ଯ୍ୟତଃ ଜୀବନ ସଂଗ୍ରାମରେ ଜୟୀ ହେବା ପାଇଁ ସେମାନେ ଚତୁର୍ଦ୍ଦିଗର ପୃଷ୍ଠଭୂମି ସହିତ ନିଜକୁ ଉପଯୋଗୀ କରିନେବାକୁ ବାଧ୍ୟ । ଏହା ଫଳରେ ସେମାନଙ୍କ ମଧ୍ୟରେ ବିରାଟ ପରିବର୍ତ୍ତନ ଆସେ ।

ବର୍ତ୍ତମାନ ସେମାନଙ୍କର ଯେଉଁ ଉତ୍ପାଦନେଚ୍ଛା ତାହା ପୂରଣ କରିବା ନିମିତ୍ତ ସେମାନେ ସ୍ୱଭାବତଃ ସେମାନଙ୍କର ସମସ୍ୟୋପଯୋଗୀ ସଙ୍ଗୀ ଖୋଜି ନେବେ । ତାହା ଫଳରେ ସେମାନଙ୍କର ସନ୍ତାନଗଣ ସେହି ପାରିପାର୍ଶ୍ୱିକ ଅବସ୍ଥାର ଉପଯୋଗୀ ହୋଇ ଜନ୍ମ ଗ୍ରହଣ କରନ୍ତି । ଏହିପରି ଭାବରେ ସେମାନେ ଆପଣା ଅଜ୍ଞାତରେ ନିଜର ଗୁଣଗୁଡ଼ିକ ଆପଣା ସନ୍ତାନମାନଙ୍କ ମଧ୍ୟରେ ପ୍ରଚଳନ କରି ଦିଅନ୍ତି—ଯାହା ଫଳରେ କି ଧୀରେ ଧୀରେ ନୂତନତର ଜୀବର ଆବିର୍ଭାବ ହୁଏ । ମୋଟାମୋଟି ଏହାହିଁ କ୍ରମବିକାଶତତ୍ତ୍ୱର ଭିତରି କଥା ।

ଡାରଉଇନ ଥିଲେ ବହୁତତ୍ତ୍ୱଦର୍ଶୀ ବିଜ୍ଞ । ତେଣୁ ସେ ହଠାତ୍ ତାଙ୍କର ମତ ଜନସମାଜରେ ପ୍ରଚାର କରିବାକୁ ଇତସ୍ତତଃ ହୋଇଥିଲେ । ସେ ବୁଝିଥିଲେ, ତାଙ୍କର ଏହି ତଥ୍ୟ ସମାଜରେ ଏକ ଭୀଷଣ ଆନ୍ଦୋଳନ ସୃଷ୍ଟି କରିବ । ଅବଶେଷରେ ୧୮୪୨ ମସିହାରେ ସେ ଏ ସମ୍ବନ୍ଧରେ ପଇଁତିରିଶ ପୃଷ୍ଠାର ଏକ କ୍ଷୁଦ୍ର ପ୍ରବନ୍ଧ ପ୍ରକାଶ କଲେ । ଏହାର ପ୍ରାୟ ଦୁଇ ବର୍ଷ ପରେ ଡାରଉଇନ୍ ଏହାକୁ ପରିବର୍ଦ୍ଧିତ କରି ତାଙ୍କର ବିବର୍ତ୍ତନବାଦ ସମ୍ବନ୍ଧରେ ଯେଉଁ ରଚନା ପ୍ରକାଶ କରିଥିଲେ ତାହା ଦୁଇ ଶତ ତିରିଶ ପୃଷ୍ଠା ହୋଇଥିଲା ।

ଡାରଉଇନଙ୍କ ତଥ୍ୟ ପ୍ରକାଶିତ ହେବାର ପ୍ରାୟ ଚଉଦ ବର୍ଷ ପରେ ବିଖ୍ୟାତ ଇଂରେଜ ପ୍ରକୃତିତତ୍ତ୍ୱବିତ୍ ଆଲଫ୍ରେଡ୍ ରସେଲ ଓ୍ୱାଲେସ୍ (୧୮୨୩—୧୯୧୩) ମାଲୟ ଷ୍ଟ୍ରେଟସ୍‌ରୁ ଗୋଟିଏ ପ୍ରବନ୍ଧ ରଚନା କରି ତାଙ୍କ ନିକଟକୁ ପଠାଇ ଦେଇଥିଲେ । କି ଭାବରେ ଏକଶ୍ରେଣୀର ଜୀବରୁ ଅପର ଏକଶ୍ରେଣୀର ଜୀବ ଉଦ୍ଭୂତ ହୋଇପାରେ, ଏ ବିଷୟ ନେଇ ଓ୍ୱାଲେସ୍ ଅନେକ ଦିନ ଧରି ମଥା ଘଞ୍ଚାଇଥିଲେ । ଏହି ସମୟରେ ମେଲ୍‌ଥାସଙ୍କ ରଚନା ପଢ଼ି "Survival of the fittest"—କଥାଟି ତାଙ୍କ ମନରେ ଜାଗି ଉଠିଥିଲା । ଡାରଉଇନ ଦେଖିଲେ, ଓ୍ୱାଲେସଙ୍କ ରଚନାରେ ତାଙ୍କର ମତ ଟିକିଏ ଅନ୍ୟଭାବରେ ବ୍ୟକ୍ତ କରାଯାଇଅଛି । ସେ ଯାହାହେଉ, ଓ୍ୱାଲେସଙ୍କ ମୌଳିକତ୍ୱ ଯାହା, ତାହା ସ୍ୱୀକାର କରିବାକୁ ଡାରଉଇନ୍ କୁଣ୍ଠିତ ହୋଇ ନ ଥିଲେ । ଏହାପରେ ୧୮୫୯ ଖ୍ରୀଷ୍ଟାବ୍ଦରେ (ନଭେମ୍ବର ୨୪) ସହୃଦୟ ବନ୍ଧୁମାନଙ୍କର ବିଶେଷ ଅନୁରୋଧରେ ଡାରଉଇନ୍ ତାଙ୍କର ଅମର କୀର୍ତ୍ତି "Origin of the Species" ନାମକ ଗ୍ରନ୍ଥ ପ୍ରକାଶ କଲେ ।

ଏ ପୁସ୍ତକଟି ଶୃଙ୍ଖଳିତ ଶିକ୍ଷିତ ସମାଜଦ୍ୱାରା ଆଦୃତ ହୋଇଥିଲା ଓ ସେ ସମୟର ବୈଜ୍ଞାନିକ ଚନ୍ଦ୍ରାଧାର ତାଙ୍କର ତଥ୍ୟଟିକୁ ଗ୍ରହଣ କଲେ ମଧ୍ୟ ସେ କାଳର ଈଶ୍ୱର-ବାଦୀମାନେ ଏହି ତତ୍ତ୍ୱପ୍ରତି ନାସିକା କୁଞ୍ଚନ କରିଥିଲେ । ମାତ୍ର ଯେତେବେଳେ ୧୮୭୧ ମସିହାରେ ଡାରଉଇନ୍ ତାଙ୍କର "Descent of Man and selection in relation to Sex" ନାମକ ଗ୍ରନ୍ଥ ପ୍ରକାଶ କଲେ ସେତେବେଳେ ପ୍ରକୃତ ଗୋଳମାଳ ଆରମ୍ଭ ହେଲା । ଏ ପର୍ଯ୍ୟନ୍ତ ଅନ୍ୟାନ୍ୟ ଜୀବଜନ୍ତୁମାନଙ୍କର ଆବିର୍ଭାବ ସମ୍ବନ୍ଧରେ ଡାରଉଇନଙ୍କ ମତ ପ୍ରାୟ ସର୍ବତ୍ର ଗୃହୀତ ହୋଇଥିଲା—କିନ୍ତୁ ଗୋଳମାଳ ଆରମ୍ଭ ହେଲା ମଣିଷକୁ ନେଇ । ଅନ୍ୟାନ୍ୟ ଜୀବଜନ୍ତୁ ଡାରଉଇନଙ୍କ କ୍ରମବିକାଶ ତତ୍ତ୍ୱକ୍ରମରେ ଜନ୍ମହୋଇ ପାରନ୍ତି; ମାତ୍ର ମନୁଷ୍ୟ ସମ୍ବନ୍ଧରେ କୌଣସିମତେ ତାହା ପ୍ରଯୁଜ୍ୟ ନୁହେଁ । ମନୁଷ୍ୟର ଜନ୍ମ ସମ୍ପୂର୍ଣ୍ଣ ଆକସ୍ମିକ—ଯାହାକୁ ଇଂରାଜୀରେ କହନ୍ତି accidental.

ଏକ ବିଶେଷ ଶ୍ରେଣୀର ଜୀବ ହଠାତ୍ ସବଂଶ ଲୋପପାଇ ଯିବା ଅନେକତ୍ର ଦେଖାଯାଏ । ୧୮୭୯ ଖ୍ରୀଷ୍ଟାବ୍ଦରେ ମେକ୍‌ସିକୋ ଉପସାଗରରେ ଏକ ଜାତୀୟ ନୂତନ ମତ୍ସ୍ୟ ଦେଖାଯାଇଥିଲେ । ତିନବର୍ଷ ପରେ ସେ ସମସ୍ତ ମତ୍ସ୍ୟ ହଠାତ୍ ସମୂଳେ ବିନଷ୍ଟ ହୋଇଯାଇଥିଲେ । ଏହାର କାରଣସ୍ୱରୂପ କୁହାଯାଇଥିଲା ଯେ, ଉତ୍ତରମେରୁ ପ୍ରଦେଶରୁ ଯେଉଁ ଶୀତଳ ଜଳ-ପ୍ରବାହ ବାହାରେ, ତାହା ଫଳରେ ଏହି ମତ୍ସ୍ୟଗୋଷ୍ଠୀ କୌଣସି ଏକ ସ୍ଥାନରୁ ପଳାଇ ଆସିଥିଲେ ଓ ପରେ ହଠାତ୍ ଆହୁରି ଅଧିକ ଥଣ୍ଡା ଜଳ ପ୍ରବାହ ଆସିବାରୁ ସେମାନେ ତାହା ସହ୍ୟକରି ନ ପାରି ବିନଷ୍ଟ ହୋଇଥିଲେ । ସେମାନଙ୍କର ସଂଖ୍ୟା ଲକ୍ଷେକୋଟି ହେବ ବୋଲି ହିସାବ କରି ଦେଖାଯାଇଥିଲା । ପ୍ରାୟ କୋଡ଼ିଏ ବର୍ଷ ପୂର୍ବେ ଥରେ ନ୍ୟୁୟର୍କ ସହରରେ ଶୀତକାଳରେ ସମସ୍ତ ବ୍ଲୁବର୍ଡ଼ ପକ୍ଷୀ ଧ୍ୱଂସପ୍ରାପ୍ତ ହୋଇ ଯାଇଥିଲେ ।

କୌଣସି ବିଶେଷ ଜୀବ ଶ୍ରେଣୀର ଏହିରୂପେ ସମ୍ପୂର୍ଣ୍ଣ ବିନାଶର ହେତୁସ୍ୱରୂପ କେତୋଟି କାରଣ ପରିଲକ୍ଷିତ ହୋଇଥାଏ । ପ୍ରଥମତଃ ଆବହାଓ୍ୱାର ଦ୍ରୁତପରିବର୍ତ୍ତନ —ଯାହା ଫଳରେ ସେହି ଆବହାଓ୍ୱାର ଅନୁପଯୋଗୀ ସେହି ପ୍ରଦେଶର ସମସ୍ତ ଜୀବ ବିନାଶ ପ୍ରାପ୍ତ ହୁଅନ୍ତି । ଏହା ଉପରେ ପୁଣି ଅଛି ଖାଦ୍ୟ ସମସ୍ୟା । ହଠାତ୍ ଆବହାଓ୍ୱାର ପରିବର୍ତ୍ତନ ଘଟିଲେ ଜୀବଜନ୍ତୁମାନଙ୍କର ଖାଦ୍ୟର ଅଭାବ ହୁଏ । ଫଳତଃ ଅନାହାରରେ କେତେକ ଶ୍ରେଣୀର ଜୀବ ବିନଷ୍ଟ ହୁଅନ୍ତି । ତାଛଡ଼ା ଜଳ କଷ୍ଟ ଓ ନାନାପ୍ରକାର ଆକସ୍ମିକ ଘଟଣା ତ ପୁଣି ରହିଛି ।

କାଲିଫର୍ନିଆର 'ଲବ୍ରେୟା' (Labrea) ନାମକ ସ୍ଥାନ ବର୍ତ୍ତମାନ ଆମେରିକାର ଗୋଟିଏ ତୈଳୋତ୍ପାଦକ କ୍ଷେତ୍ର । ପ୍ରାଗୈତିହାସିକ ଯୁଗରେ ଏଠାରେ ଗୋଟିଏ ଭୟାବହ ଆକସ୍ମିକ ଦୁର୍ଘଟଣା ଘଟିଥିଲା । ଏହା 'ଟାରଟ୍ରେପ' (Tartrap) ନାମରେ ଅଭିହିତ । ଆଗ୍ନେୟଗିରିର ଅଗ୍ନ୍ୟୁତ୍ପାତ ଫଳରେ ଗଳିତ ଧାତୁସ୍ରୋତ ହିନେ ଏହି ପ୍ରଦେଶ ଉପରେ

ପ୍ରବାହିତ ହୋଇଥିଲା । କାଳକ୍ରମେ ଏହି ସ୍ରୋତର ଉପରଭାଗରେ ଏକ କଠିନ ଆବରଣ ପଡ଼ିଗଲା । ଏହା ମଧ୍ୟରେ ଛୋଟ ଛୋଟ ଜଳାଶୟର ମଧ୍ୟ ସୃଷ୍ଟି ହୋଇଥିଲା । କୌଣସି ସମୟରେ ଜଳ କଷ୍ଟ ହେତୁ ଆକୁଳ ହୋଇ ଦଳ ଦଳ ଜୀବଜନ୍ତୁ ସେଠାକୁ ଦୌଡ଼ି ଆସିଥିଲେ । ଏହାର ଫଳ କଣ ହେଲା ତାହା ସହଜରେ ଅନୁମେୟ । ଅସହ୍ୟ ପିପାସାରେ ସେଠାକୁ ଆସୁଥିବା ଅସଂଖ୍ୟ ଜୀବଜନ୍ତୁ ସେହି ତରଳ ଧାତୁ ସ୍ରୋତ ମଧ୍ୟରେ ନିମଜ୍ଜିତ ହୋଇ ସବଂଶ ନିର୍ବାଣପ୍ରାପ୍ତ ହୋଇଥିଲେ । ଦୀର୍ଘକାଳ ପରେ ଏ ଯୁଗର ବୈଜ୍ଞାନିକମାନେ ସେଠାରୁ ସେମାନଙ୍କର କଙ୍କାଳ ଉଦ୍ଧାର କରିଅଛନ୍ତି । ବର୍ତ୍ତମାନ ସେ ସ୍ଥାନ କଠିନ ମୃତ୍ତିକା ସ୍ତରରେ ପରିଣତ ହୋଇଅଛି । କେତେ ଜୀବଜନ୍ତୁ ଯେ ସେହି ବିସ୍ତୃତ ସ୍ଥାନରେ ଧ୍ୱଂସପ୍ରାପ୍ତ ହୋଇଥିଲେ, ସେ ସମ୍ବନ୍ଧରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ପନ୍ଦର ଫୁଟ ପ୍ରଶସ୍ତ, ପଚିଶ ଫୁଟ ଦୀର୍ଘ ଓ ପଇଁତିରିଶ ଫୁଟ ଗଭୀର ସ୍ଥାନରେ ସତରଗୋଟି ଅତିକାୟ ହସ୍ତୀର ଅବଶିଷ୍ଟାଂଶ ମିଳିଅଛି । ଆହୁରି ମଧ୍ୟ ସେହି ସ୍ଥାନର ଚତୁର୍ଦ୍ଦିଗସ୍ଥ ସମସ୍ତ ପ୍ରଦେଶରେ ସବୁ ଶ୍ରେଣୀର ଜୀବର ଅବଶିଷ୍ଟାଂଶ ଏହି ଶୀତପ୍ରଦ କବର ମଧ୍ୟରୁ ପ୍ରାପ୍ତ ହୋଇଅଛି । ସେହିସବୁ ଜୀବଜନ୍ତୁ ମଧ୍ୟରୁ ବେଶିଭାଗର ଅସ୍ତିତ୍ୱ ଆଜି ଅବଲୁପ୍ତ ।

ଏଭଳି ଦୁର୍ଘଟଣା ଫଳରେ ବହୁ ଜୀବ ସବଂଶ ଧ୍ୱଂସପ୍ରାପ୍ତ ହୁଅନ୍ତି ସତ୍ୟ, ମାତ୍ର ସମସ୍ତ ଜୀବ ତ ଆଉ ବିନଷ୍ଟ ହୋଇଯାନ୍ତି ନାହିଁ । ଯେଉଁମାନେ ବଞ୍ଚି ରହନ୍ତି ସେମାନେ ଅନ୍ୟସବୁ ଜୀବଙ୍କ ଭାଗ୍ୟରେ ଯାହା ଘଟିଅଛି ତାକୁ ଏଡ଼ି ଦିଅନ୍ତି କିପରି ? ଏହାର ଉତ୍ତର ସେହି 'Survival of the fittest'—ତତ୍ତ୍ୱରୁହିଁ ମିଳେ । ଯେଉଁ ସମସ୍ତ ଜୀବଜନ୍ତୁ ଅପେକ୍ଷାକୃତ କଠିନ ପ୍ରାଣ ସେମାନେ ଚତୁର୍ଦ୍ଦିଗର ପରିବର୍ତ୍ତିତ ପୃଷ୍ଠଭୂମି ମଧ୍ୟରେ ଅତି କଷ୍ଟରେ ବଞ୍ଚି ରହନ୍ତି । କିନ୍ତୁ ସେମାନେ ପରିବର୍ତ୍ତିତ ହୋଇ ପରିପାର୍ଶ୍ୱର ଉପଯୋଗୀ ହୋଇ ପୁଣି ଗଠିତ ହୁଅନ୍ତି ଯାହା ଫଳରେ ଏକ ନୂତନ ଶ୍ରେଣୀର ଜୀବର ସୃଷ୍ଟି ହୁଏ ।

କି ମଣିଷ, କି ପଶୁ, କି ଉଦ୍ଭିଦ ସମସ୍ତଙ୍କ ମଧ୍ୟରେ ଅସ୍ତିତ୍ୱ ପାଇଁ ସଂଗ୍ରାମ ସର୍ବତ୍ର ସର୍ବଦା ଏ ଜଗତରେ ଚାଲିଅଛି । ସେମାନଙ୍କ ମଧ୍ୟରେ ଯେଉଁମାନେ ଯୋଗ୍ୟତମ ସେହିମାନେ କେବଳ ବଞ୍ଚି ରହିବେ ଓ ଆପଣାର ସ୍ଥାନ ରକ୍ଷା କରିବେ । ଆଉ ଅନ୍ୟ ସମସ୍ତେ ଯେ କୌଣସି ଉପାୟରେ ହେଉ ଧ୍ୱଂସ ପ୍ରାପ୍ତ ହେବେ ଏହାହିଁ ଜଗତର ନିୟମ । ସୁତରାଂ ଏହି କଠିନ ସଂଗ୍ରାମ ମଧ୍ୟରେ, ଏହି ଦ୍ରୁତ ପରିବର୍ତ୍ତନଶୀଳ ଜଗତର ବାସ୍ତବ ପୃଷ୍ଠଭୂମିକା ସହିତ ସାମଞ୍ଜସ୍ୟ ରକ୍ଷା କରି ଚାଲିବୁ ଚାଲିବୁ ଜୀବଜଗତ୍ ମଧ୍ୟରେ କ୍ରମାଗତ ପରିବର୍ତ୍ତନ ଅବଶ୍ୟମ୍ଭାବୀ ।

[ଭକ୍ତ ପ୍ରଦୀପ, ୧୧ଶ ଭାଗ, ୨ୟ ସଂଖ୍ୟା]

# ପରିବାର

ମନୁଷ୍ୟର ଆଦି ଜୀବନ ଗୋଟିଏ ଗୋଟିଏ ମନୁଷ୍ୟରୁ ଆରବ୍ଧ ହୁଏ, କି ମନୁଷ୍ୟ ଗୋଷ୍ଠୀରୁ ଆରବ୍ଧ ହୁଏ, ଏହାର ସୁନିଶ୍ଚିତ ଉତ୍ତର ଦେବା ଆମ୍ଭମାନଙ୍କ ପକ୍ଷରେ ଅସମ୍ଭବ । ପ୍ରାଥମିକ 'ମନୁଷ୍ୟର ଜୀବନନିଷ୍ଠା' ସୁଦୂର ଅତୀତରେ ନିହିତ । ଅତୀତର ସାକ୍ଷାତ୍ ପାଇବାକୁ ହେଲେ ଆମ୍ଭେମାନେ ଇତିହାସର ଆଶ୍ରୟ ନେଉଁ । ଆଦିମ ମନୁଷ୍ୟ ଜଙ୍ଗଲରେ ବାସ କରୁଥିଲେ । ଜଙ୍ଗଲି ମନୁଷ୍ୟର ଇତିହାସ ବୋଲି କୌଣସି ପଦାର୍ଥ ନ ଥିଲା । ଯେଉଁଠାରେ ଇତିହାସ ମୂକ, ସେଠାରେ ସୂକ୍ଷ୍ମ ବୁଦ୍ଧି ମାନବର ଏକମାତ୍ର ଅବଲମ୍ବନ । ବୁଦ୍ଧି ପ୍ରୟୋଗ କରି କେହି କେହି କହିଥାଆନ୍ତି, ମାନବ ଜୀବନ ପ୍ରଥମତଃ ଏକ ଏକ ମନୁଷ୍ୟରେ ନିବଦ୍ଧ ଥିଲା; ତତ୍ପରେ ଜୀବନ-ସଂଗ୍ରାମର ସମ୍ମୁଖୀନ ହୋଇ ସେହି ମନୁଷ୍ୟ ଅସୁବିଧାରେ ପଡ଼ି, ଏକତ୍ର ରହିବାର ପ୍ରୟୋଜନ ଅନୁଭବ କଲା ଏବଂ ଏହି ସମୟରୁ ମନୁଷ୍ୟ ପରିବାର ବନ୍ଧନରେ ଆବଦ୍ଧ ହେଲା; ଅର୍ଥାତ୍ ମନୁଷ୍ୟର ପାରିବାରିକ ସଂସାର ଏକକାଳରେ ନ ଥିଲା; ପରବର୍ତ୍ତୀ କାଳରେ ତାହାର ଆବିର୍ଭାବ ଘଟିଲା । ଯଦି ଏ ମତ ସତ୍ୟ ହୁଏ, ତେବେ ପାରିବାରିକ ଜୀବନର ନିତ୍ୟତା ସମ୍ବନ୍ଧରେ ଘୋର ସନ୍ଦେହ ଜନ୍ମେ । କାରଣ ଯାହା ଏକ ସମୟରେ ନ ଥିଲା, କିନ୍ତୁ ଅନ୍ୟ ସମୟରେ ଆସିଲା, ତାହା ତତ୍ପରବର୍ତ୍ତୀ ସମୟରେ ନ ଥାଇପାରେ । ଯାହାର କାଳରେ ଜନ୍ମ, ତାହା କାଳରେ ଲୋପ ପାଇ ପାରେ ।

ବାସ୍ତବରେ କିନ୍ତୁ ଗୋଷ୍ଠୀଗତ ଜୀବନ ଆଦ୍ୟ, ଐକିକ ଜୀବନ ପରବର୍ତ୍ତୀ ଅଟେ । ମାନବ ଯେତେକାଳ ରହିଅଛି ଗୋଷ୍ଠୀଗତ ଜୀବନ ତେତେ କାଳ ଅଛି ଏବଂ ଥିବ । ପ୍ରାଣିଗୋଷ୍ଠୀ ନ ଥାଇ, ଇତର ପ୍ରାଣୀ ଥାଇପାରେ । ପଶୁ ପକ୍ଷୀ ଗୋଟି ଗୋଟି ହୋଇ ଚରି ବୁଲି, ଗୋଟି ଗୋଟି ହୋଇ ପାହାଡ଼ ଜଙ୍ଗଲରେ ଆଶ୍ରୟ ନେଇ, ଜୀବନଯାତ୍ରା ନିର୍ବାହ କରିଥାଆନ୍ତି । କୁକୁଟ ଡିମ୍ବରୁ ଉତ୍ପନ୍ନ ହେଲା ଉତ୍ତାରେ ନିଜର ଖାଦ୍ୟ ନିଜେ ବାଛି ନିଏ; ଏଥିପାଇଁ ତାହାକୁ ପରମୁଖାପେକ୍ଷୀ ହେବାକୁ ପଡ଼େ ନାହିଁ । ପ୍ରାଣିଜଗତର ଆଉ ଗୋଟିଏ ସ୍ତରରେ ପ୍ରବିଷ୍ଟ ହୋଇ ଆମ୍ଭେମାନେ ଦେଖୁଁ ଯେ, ଗୁରୁଶିଶୁ କିଛିକାଳ ମାତ୍ର ମାତାର ଆଶ୍ରୟ ନେଇ ଜୀବିତ ଏବଂ ବୃଦ୍ଧି ପ୍ରାପ୍ତ ହୁଏ । କିନ୍ତୁ ମାନବରାଜ୍ୟରେ ଉପଗତ ହେଲେ ଶିଶୁ ଅଭିଭାବକ ସମ୍ବନ୍ଧର ଦୃଢ଼ତା ଓ ବ୍ୟାପକତା ସ୍ପଷ୍ଟ ହୋଇଉଠେ । ମାନବ-ଶିଶୁର ପ୍ରାଣ, ମାନବଶିଶୁର ଅଭିବୃଦ୍ଧି, ମାନବଗୋଷ୍ଠୀ ହାତରେ । ସେଥିପାଇଁ ପ୍ରକୃତି ଜଗତ୍ ଯଥେଷ୍ଟ ନୁହେଁ । ଗୋଷ୍ଠୀ ସାହାଯ୍ୟରୁ ବଞ୍ଚିତ ହେଲେ ମାନବର ଅକାଳ ମୃତ୍ୟୁ ଘଟିବା ସୁନିଶ୍ଚିତ ।

ସୃଷ୍ଟି ପରମ୍ପରା ଧାରାରୁ ବିଗ୍ରୁତ କରି ମଧ୍ୟ କୁହାଯାଇ ପାରେ ଯେ, ମନୁଷ୍ୟର ସଂସାର ପରିବାରରୁ ଆସିଅଛି । ଏକ ଏକ ମନୁଷ୍ୟ ଏକା ଏକା ଥିବାଯାଏ ମନୁଷ୍ୟ କୁହାଇପାରେ ନାହିଁ । ମନୁଷ୍ୟ ପରିବାରଭୁକ୍ତ ହେଲେ, ମନୁଷ୍ୟ ମନୁଷ୍ୟ ମଧ୍ୟରେ ସମ୍ବନ୍ଧ ଜନ୍ମିଲେ ତେବେ ଯାଇ ମନୁଷ୍ୟର ସୃଷ୍ଟି ହୁଏ । ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ, ପାରିବାରିକ ସମ୍ବନ୍ଧ ଏ କାଳରେ ଯେପରି ହୋଇଅଛି, ପୂର୍ବକାଳରେ ସେପରି ନ ଥିଲା । କାଳର ଗତି ଅନୁକ୍ରମେ ଅଭିଜ୍ଞତା-ପ୍ରସୂତ ସ୍ତ୍ରୀ ପୁରୁଷର, ସ୍ତ୍ରୀ-ସ୍ତ୍ରୀର, ପୁରୁଷ-ପୁରୁଷର ସମ୍ପର୍କ ପରିବର୍ତ୍ତିତ ହୋଇଅଛି ଏବଂ ହେଉଅଛି । କିନ୍ତୁ ସ୍ତ୍ରୀ-ପୁରୁଷ ଗୋଷ୍ଠୀ ନ ଥାଇ ମନୁଷ୍ୟ ଥିବା ସମ୍ଭବପର ନୁହେଁ ।

ମାନବ ଗୋଷ୍ଠିଗତ ପ୍ରାଣୀ । ଗୋଷ୍ଠୀ ଗୋଟିଏ ସମୂହ । ସମାଜ ବୃହତ୍ ସମୂହ, ପରିବାର କ୍ଷୁଦ୍ର ସମୂହ । ଯାହା ସମୂହ, ତାହା ସମୂହ ଉପାଦାନରେ ପ୍ରସ୍ତୁତ । ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର ଅଧିକାରୀ ହେଲେହେଁ ସମୂହ ଅଖଣ୍ଡ ପଦାର୍ଥ ଅଟେ । ତାହା ଗୋଟି ଗୋଟିକ ଦ୍ୱାରା ସୃଷ୍ଟ ହୁଏ ନାହିଁ, କି ଗୋଟିଗୋଟିକର ସମଷ୍ଟିରୁ ଜନ୍ମେ ନାହିଁ । ସମୂହର ସୃଷ୍ଟି ମୂଳରେ ସମୂହ ବିଦ୍ୟମାନ । ପୃଥକ୍ ପୃଥକ୍ ନୁହେଁ, ପରିବାର ହିଁ ମାନବର ମୂଳବସ୍ତୁ ।

ପରିବାର ଦ୍ୱାରା କ୍ଷୁଦ୍ରତମ ଗୋଷ୍ଠୀ ସୂଚିତ ହୁଏ । ମାନବ ଜୀବନ ମୂଳତଃ ଏକ ଏକ ମନୁଷ୍ୟରେ କି ମନୁଷ୍ୟ ଗୋଷ୍ଠୀରେ ପର୍ଯ୍ୟବସିତ ଥିଲା, ଏଥିରେ କାହାରି କାହାରି ସନ୍ଦେହ ଥିଲେହେଁ ପରିବାର ଗୋଷ୍ଠୀ ଯେ ମୂଳଗୋଷ୍ଠୀ, ସେଥିରେ ସନ୍ଦେହ କରିବାର କାରଣ ନାହିଁ । କାଳକ୍ରମେ ମନୁଷ୍ୟ ପରିବାର ଅପେକ୍ଷାକୃତ ବୃହତ୍ ଓ ବୃହତ୍ତର ଗୋଷ୍ଠୀର ଅଙ୍ଗୀଭୂତ ହେଲା । ବହିଃ ଆକ୍ରମଣରୁ ନିଜକୁ ରକ୍ଷା କରିବା ନିମିତ୍ତ ଜାତିଗତ, ଦେଶଗତ ଗୋଷ୍ଠୀର ଆଶ୍ରୟ ନେଲା । ସମ୍ଭବତଃ ପରିବାରରେ ରହି ସେ ପ୍ରଥମତଃ ଗୋତ୍ର-ଗୋଷ୍ଠୀର କଳ୍ପନା କଲା । ଏକ ଏକ ପରିବାର ଏକ ଏକ ପ୍ରାଣୀ ବା ଋଷି ଅଥବା ଦେବତାକୁ ନିଜର ମୂଳକାରଣରୂପେ ଗ୍ରହଣ କଲା । ଗୋତ୍ରରୁ ଜାତିର, ଜାତିରୁ ଦେଶର ଉଦ୍ଭାବନ । ଅବଶେଷରେ ଜ୍ଞାନ-ନୀତି-ଧର୍ମର ପ୍ରଭାବରେ ପ୍ରଭାବିତ ହୋଇ ବିଶାଳମାନବ ସମୂହ (humanity)ର ଅଙ୍ଗରୂପେ ନିଜକୁ ସ୍ୱୀକାର କରିବାକୁ ସେ ସମର୍ଥ ହେଲା ।

ପିତା-ମାତା, ପୁତ୍ର-କନ୍ୟା, ଭ୍ରାତା-ଭଗିନୀ ନେଇ ପରିବାର ସଂଗଠିତ । ପରିବାର ପରିସ୍ଥିତିରେ ଏ ସମସ୍ତଙ୍କର ସ୍ଥାନ ଓ କର୍ମ ରହିଅଛି । ଭ୍ରାତା-ଭଗିନୀଙ୍କର ପରସ୍ପର ପ୍ରତି ସ୍ନେହ-ମମତା, ପିତା-ମାତାଙ୍କର ପୁତ୍ର-କନ୍ୟା ପ୍ରତି ପ୍ରେମ-ବାତ୍ସଲ୍ୟ ଓ ପୁତ୍ର-କନ୍ୟାଙ୍କର ପିତାମାତାଙ୍କ ପ୍ରତି ଭକ୍ତି-ଅନୁରାଗ ପାରିବାରିକ ଜୀବନକୁ ଆନନ୍ଦମୟ କରି ରଖିଥାଏ । ପାରିବାରିକ ସଂସାରରେ ହିଁ ସ୍ୱର୍ଗସୁଖର ଆଭାସ ମିଳେ । ବିବାହ

ପରିବାରର ଭିତ୍ତି । ଯେଉଁଠାରେ ବୈବାହିକ ଜୀବନ ନାହିଁ । ସେଠାରେ ପରିବାର ନାହିଁ, ପ୍ରାଣିଗୋଷ୍ଠୀ ମାତ୍ର ଅଛି । ଯଦିଓ ପାରିବାରିକ-ସମ୍ବନ୍ଧ ବିବାହ ଉପରେ ପ୍ରତିଷ୍ଠିତ, ବୈବାହିକ ବନ୍ଧନ ନ ଥିଲେ ଯେ ପରିବାରରେ ସ୍ଥାନ ଥାଏ ନାହିଁ, ଏମନ୍ତ ନୁହେଁ । ବିବାହିତ, ଅବିବାହିତ, ବିବାହିତା, ଅବିବାହିତା—ଏ ସମସ୍ତଙ୍କର ପରିବାରରେ ପ୍ରୟୋଜନ ରହିଅଛି । ବିବାହିତ ପ୍ରତି ସହଯୋଗ ଦେବା ଅବିବାହିତର ପ୍ରଧାନ କାର୍ଯ୍ୟ । ଅବିବାହିତ ଜୀବନ ସ୍ୱାର୍ଥପର କି ବିଶୃଙ୍ଖଳ ଜୀବନ ନୁହେଁ । ଉଭୟ ଜୀବନଗୋଷ୍ଠୀ ନିୟମାନୁବର୍ତ୍ତି । ଦାମ୍ପତ୍ୟ ବନ୍ଧନ ଦାୟିତ୍ୱପୂର୍ଣ୍ଣ ଜୀବନ । ତାହା ପ୍ରାଣିସଙ୍ଗମଠାରୁ ସମ୍ପୂର୍ଣ୍ଣରୂପେ ଭିନ୍ନ ଏବଂ ସେହିମାନେ କେବଳ ଏହି ଜୀବନ ପାଇଁ ଉପଯୁକ୍ତ ଯେଉଁମାନେ ସେହି ଦାୟିତ୍ୱ ଗ୍ରହଣରେ ସମର୍ଥ । ବୈବାହିକ ବନ୍ଧନ ଭାବ-ପ୍ରବଣମାତ୍ରର ବନ୍ଧନ ନୁହେଁ, ତାହା କର୍ମର ବନ୍ଧନ ଅଟେ । ପୁତ୍ର-କନ୍ୟା ଜନ୍ମାଇ ସେମାନଙ୍କର ସଂରକ୍ଷଣ ସମ୍ବର୍ଦ୍ଧନ ଭାର ବହନ କରି ପିତା-ମାତା ଯେପରି ନିଜ ନିଜର କର୍ତ୍ତବ୍ୟ ସାଧନରେ ନିଯୁକ୍ତ ରହନ୍ତି, ପୁତ୍ର କନ୍ୟାମାନେ ସେହିପରି ସଂସାର କାର୍ଯ୍ୟ ସମାଧାନ କରି ସାଂସାରିକ ଧର୍ମ ସ୍ଥାୟୀ ରଖି ପାଆନ୍ତି । ପରିବାରରେ ସାବାଳକ ମନୁଷ୍ୟ ନାବାଳକର ଲାଳନ ପାଳନରେ, ନାବାଳକ ସାବାଳକର ସେବା ତର୍ପଣରେ ନିଯୁକ୍ତ । ନାବାଳକର ଭାବୀ କଲ୍ୟାଣ ସାବାଳକର ଯେପରି ଅହୋରାତ୍ର ଭାବନା, ସାବାଳକର ଆଦର୍ଶ ଉଦାହରଣ ନାବାଳକର ସେହିପରି ପ୍ରଧାନ ଆରାଧନା । ପାରସ୍ପରିକ ସ୍ନେହ, ମମତା, ସାହାଯ୍ୟ, ସହାନୁଭୂତି, ପାରିବାରିକ ଜୀବନର ମୂଳମନ୍ତ୍ର ; ପରିବାର ବିଶୁଦ୍ଧ କର୍ମାଧିକାରିକ, ବିଶୁଦ୍ଧ ପ୍ରେମଭକ୍ତିର କ୍ଷେତ୍ର ।

ଏବଂ ଏ ପ୍ରେମ ଭକ୍ତି, ଏ କର୍ତ୍ତବ୍ୟ କେବଳ ଜୀବିତ ଜୀବିତ ମଧ୍ୟରେ ନିବଦ୍ଧ ନୁହେ । ଜୀବିତର କର୍ତ୍ତବ୍ୟ ଜୀବିତ ପ୍ରତି ପୁଣି ମୃତ ପ୍ରତି ବର୍ତ୍ତମାନ । ପରିବାରର କାର୍ଯ୍ୟ ପୁରୁଷାନୁକ୍ରମେ ଲାଗି ରହିଅଛି । ମୃତ୍ୟୁପରେ ଏକର କର୍ତ୍ତବ୍ୟ ଅନ୍ୟ ଉପରେ ନ୍ୟସ୍ତ ହେଉଅଛି । ପିତାପରେ ପିତୃବ୍ୟ, ଭ୍ରାତାପରେ ଭ୍ରାତା, ସ୍ୱାମୀ ପରେ ସ୍ତ୍ରୀ ଏହିପରି ଏକର ସ୍ଥାନ ଅନ୍ୟ ଅଧିକାର କରୁଅଛି । ଏତଦ୍ଦ୍ୱାରା କେବଳ ଯେ ଶୂନ୍ୟସ୍ଥାନରେ ଲୋକସମାଗମ ଘଟୁଅଛି ତାହା ନୁହେଁ, କାର୍ଯ୍ୟକ୍ରମର ନିରବଚ୍ଛିନ୍ନତା, ଅପୂର୍ଣ୍ଣ କାର୍ଯ୍ୟର ପରିପୂର୍ଣ୍ଣତା ବାଧିତ ହେଉଅଛି । ପୁଣି ମୃତଙ୍କର ଦୋଷ ଗୁଣ ଆମ୍ଭମାନଙ୍କର କାର୍ଯ୍ୟ-ତତ୍ପରତା ତଥା କାର୍ଯ୍ୟପନ୍ଥା ନିର୍ଣ୍ଣୟ କଲେ ବହୁ ଅଧିକ ସାହାଯ୍ୟ କରୁଅଛି । ଯେ ମୃତ ସେ ଯଥାର୍ଥତଃ ମୃତ ନୁହେଁ । ସେ ଆମ୍ଭମାନଙ୍କ ଜୀବନ ଉପରେ ତାହାର ପ୍ରଭାବ ବିସ୍ତାର କରି ରହିଅଛି । ଏହି ହେତୁରୁ ଆମ୍ଭେମାନେ ପୂର୍ବପୁରୁଷଙ୍କର ଶ୍ରାଦ୍ଧତର୍ପଣ ଭକ୍ତି ସହକାରେ ସମ୍ପନ୍ନ କରିଥାଉଁ । ଏହିପରି ବିଦ୍ୟମାନ ବିଦ୍ୟମାନର, ବିଦ୍ୟମାନ—ଅବିଦ୍ୟମାନର ସମ୍ବନ୍ଧରେ, ସାହଚର୍ଯ୍ୟ ପାରମ୍ପର୍ଯ୍ୟ ଉଭୟ ସମ୍ପର୍କରେ ପାରିବାରିକ ଜୀବନ ଦୃଢ଼ୀଭୂତ ।

ପାରିବାରିକ ସ୍ନେହ, ଭକ୍ତି, ନିତ୍ୟ ପଦାର୍ଥ । ତାହା ପାରିବାରିକ ଜୀବନ ସନ୍ତୁତ ଜଡ଼ିତ ଏବଂ ତାହାର ନିତ୍ୟତା ପାରିବାରିକ ଧର୍ମ ଉପରେ ନିର୍ଭର କରେ । ଏହି ସତ୍ୟର ପ୍ରଣିଧାନ ଅଭାବରୁ ପାରିବାରିକ ଗଣ୍ଡଗୋଳ ଅନେକ ସମୟରେ ଘଟିଥାଏ । କନିଷ୍ଠ ବୟୋଜ୍ୟେଷ୍ଠ ଏମାନେ ପରସ୍ପରର ଆକର୍ଷଣ-ପ୍ରତିକର୍ଷଣରେ ଏକ ପରିବାର ଭୁକ୍ତ ହୋଇ ରହିଥାନ୍ତି । ଏଥିମଧ୍ୟରୁ ଏକପକ୍ଷର କ୍ରିୟା ନ ଘଟିଲେ ଅନ୍ୟପକ୍ଷ ଅନିଷ୍ଟ ହୋଇପଡ଼ନ୍ତି । ଏକ ଦିଗରେ ଭକ୍ତି ଥିଲେ ଅନ୍ୟ ଦିଗରେ ସ୍ନେହ, ଏକ ଦିଗରେ ସାହାଯ୍ୟ ଥିଲେ ଅନ୍ୟ ଦିଗରେ ସହଯୋଗ ଉଦିତ ହୁଏ । ଯେବେ ଭାତୃଷ୍ପୁତ୍ରର ପିତୃବ୍ୟ ପ୍ରତି ଭକ୍ତି ନ ଥାଏ, ଯେବେ ପିତୃବ୍ୟ ସେବାରେ ତାର ତ୍ରୁଟି ଘଟେ ତେବେ ସେ ପିତୃବ୍ୟଙ୍କ ମହାନୁଭୂତିରୁ ବଞ୍ଚିତ ହେବା କିଛି ବିଚିତ୍ର ନୁହେଁ । ଯେ ନିଜର କର୍ତ୍ତବ୍ୟ ସମ୍ପାଦନ ନ କରି ଅନ୍ୟର କର୍ତ୍ତବ୍ୟ ପ୍ରତି ଅପେକ୍ଷା ରଖେ ସେ ପ୍ରାକୃତିକ ନିୟମର ବିରୁଦ୍ଧରେ ଗତିକରେ । ପାରିବାରିକ ଦାବୀ ଜନ୍ମଗତ ନୁହେଁ, ତାହା କର୍ତ୍ତବ୍ୟମୂଳକ । କର୍ତ୍ତବ୍ୟ ପରାଙ୍ମୁଖ ଲୋକ ଦାବୀଦାର ହୋଇ ନ ପାରେ, ଭିକ୍ଷାର ପାତ୍ର ହୋଇପାରେ । ମୋର ପରିବାରରେ ଜନ୍ମ, ଅତଏବ ମୁଁ ପାରିବାରିକ ସାହାଯ୍ୟ ପାଇବାରେ ହକଦାର, ଏହିପରି ଯୁକ୍ତି ଯେଉଁଠାରେ ପ୍ରବଳ ହୋଇ ଉଠେ ସେଠାରେ ପାରିବାରିକ ସମ୍ବନ୍ଧ ବହୁକ୍ଷଣ ସ୍ଥାୟୀ ରହେ ନାହିଁ ।

ପାରିବାରିକ ଅଙ୍ଗର ଯାହାକି ଯୋଗ୍ୟତା ବା ସାମର୍ଥ୍ୟ ଅଛି, ତାହା କେତେକ ଅଂଶରେ ପ୍ରାପ୍ତ, କେତେକ ଅଂଶରେ ଉପାର୍ଜିତ । ପୁରୁଷାନୁଗତ ଅନେକ କ୍ଷମତା ସମ୍ମିଳିତ ହୋଇ ଆମ୍ଭମାନଙ୍କଠାରୁ ଜନ୍ମଗତ କ୍ଷମତାରୂପେ ପ୍ରକାଶ ପାଏ ଏବଂ ସେହି ସେହି କ୍ଷମତା ବ୍ୟକ୍ତିଗତ ପରିପକ୍ୱତା ଗଠନରେ ବିଶେଷ ପ୍ରକାରରେ ସାହାଯ୍ୟ କରେ । ଉତ୍ତରାଧିକାରୀ ସୂତ୍ରେ ଅଧିକାରୀ ହୋଇଥିବା ଶକ୍ତିଗୁଡ଼ିକ ନିମିତ୍ତ ଆମ୍ଭେମାନେ ପୂର୍ବପୁରୁଷ ମାନଙ୍କଠାରେ ଋଣୀ । ଜନ୍ମରୁ କିଛି କ୍ଷମତା ଆମ୍ଭେମାନେ ପାଇଥାଉଁ ନିଜ ଚେଷ୍ଟାରେ ଆଉ କିଛି ସଞ୍ଚୟ କରୁଁ । ପୁଣି ସେଥିମଧ୍ୟରୁ କେତେ ସଂସାରରେ ରହିଯାଉ । ସେହିପରି ପାରିବାରିକ ଧନସମ୍ପଦ ଜଣେ ଦୁଇ ଜଣଙ୍କଦ୍ୱାରା ସୃଷ୍ଟ ନୁହେଁ କି ଜଣେ ଦୁଇ ଜଣଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ତାହା ଏକ କାଳରେ ସୃଷ୍ଟ ନୁହେଁ କି ଏକ କାଳ ପ୍ରତି ନିର୍ଦ୍ଦିଷ୍ଟ ନୁହେଁ । ସ୍ଥାବର ଅସ୍ଥାବର ଯାବତୀୟ ସମ୍ପତ୍ତି ଏକ କାଳରେ, ଏକ ଲୋକଦ୍ୱାରା ଶେଷ ହୋଇପାରେ; ଅନେକ ସ୍ଥଳରେ ଶେଷ ହୋଇଥାଏ । ବିଶେଷ ବିଶେଷ ଲୋକର ଅକ୍ଷମତା ହେତୁରୁ ଏପରି ଘଟିଥାଏ ଏବଂ ସେଥିପାଇଁ ସେହି ସେହି ଲୋକ ଦାୟୀ; କିନ୍ତୁ ଯଦି ଆମ୍ଭମାନଙ୍କର ଦୃଷ୍ଟି ଏକ ସମୟରେ ମାତ୍ର ନିବଦ୍ଧ ରହେ, ତେବେ ପାରିବାରିକ କ୍ଷମତାର, ପାରିବାରିକ ସମ୍ପତ୍ତିର ଉଚିତ ପରିଚୟ ମିଳେନାହିଁ । ଉକ୍ତ ପରିଚୟ ସେହି ସମୟର ପୂର୍ବ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସମୟର ସାହାଯ୍ୟରେ ସମାହିତ ହୁଏ । ଏକ

ପୁରୁଷର କାର୍ଯ୍ୟ ନୁହେଁ, ପୁରୁଷ ପରମ୍ପରାର କାର୍ଯ୍ୟକ୍ରମ ଉତ୍ତମରୂପେ ପରୀକ୍ଷା କରି ଆମ୍ଭେମାନେ ବୁଝୁଁ—ଆମ୍ଭମାନଙ୍କର ଧନ କ୍ଷମତା କେଉଁ ସମୟରେ ଓ କିପରି ଭାବରେ ଆସିଲା, କିପରି ବା ତାହାର କ୍ଷୟବୃଦ୍ଧି ଘଟିଲା ।

ଏହା ସତ୍ୟ ଯେ, ସ୍ୱାମୀ, ସ୍ତ୍ରୀ, ଜ୍ଞାତି, କୁଟୁମ୍ବ କେହି ଚିରଦିନ ପାଇଁ ରହନ୍ତି ନାହିଁ କି ରହିପାରିବେ ନାହିଁ । ଆଜି ଯେ ବର୍ତ୍ତମାନ, କାଲି ସେ ଅବର୍ତ୍ତମାନ । କେହି ବା ଅଳ୍ପ ଦିନ ପାଇଁ, କେହି ବା ଅପେକ୍ଷାକୃତ ବେଶି ଦିନପାଇଁ ପାରିବାରିକ କାର୍ଯ୍ୟରେ ଯୋଗ ଦେଇଥାନ୍ତି । ପାରିବାରିକ ପ୍ରତ୍ୟେକ ଲୋକ ଯେ ଅସ୍ଥାୟୀ, ତାହାର ଯଥେଷ୍ଟ ପ୍ରମାଣ ବିଦ୍ୟମାନ । ଜନ୍ମ ମୃତ୍ୟୁର ପ୍ରଭାବରୁ ପାରିବାରିକ ଉପାଦାନର ପରିବର୍ତ୍ତନ ସର୍ବଦା ଘଟୁଅଛି । ପୁଣି ଏକ ପରିବାରରୁ କାଳକ୍ରମେ ଅନେକ ପରିବାରର ସୃଷ୍ଟି ହେଉଅଛି ଏବଂ ଏତଦ୍ଦ୍ୱାରା ପାରିବାରିକ ଜୀବନ ଲୁପ୍ତ ନ ହୋଇ ଏକ ପ୍ରାଣ ଅନେକ ପ୍ରାଣରେ ବିକାଶ ପାଉଅଛି । ପାରିବାରିକ ଅଙ୍ଗ ସବୁ ସମୟରେ ସମାନ ବସ୍ତୁ ନ ଥାଏ । ଏକ କାଳରେ ଯାହା ଅଙ୍ଗ ହୁଏ, ପରବର୍ତ୍ତୀ କାଳରେ ତାହା ଭିନ୍ନ ହୋଇଥାଏ । କିନ୍ତୁ ପରିବର୍ତ୍ତନସତ୍ତ୍ୱେ ସମୂହ ଅକ୍ଷୁର୍ଣ୍ଣ ରହିଥାଏ । କାଳ କି କେବେ ନୈସର୍ଗିକ ବସ୍ତୁକୁ ଭାଙ୍ଗି ଦେଇପାରେ ?

ଯଥାର୍ଥ ପରିବାର ଧର୍ମଶାଳା ମାତ୍ର ନୁହେଁ । କେବଳ ଯେ ଏଠାରେ କିଛିଦିନ ପାଇଁ ଏକତ୍ର ରହିଲୁ, ପରସ୍ପର ସହିତ ବନ୍ଧନ ବାନ୍ଧିଲୁ, ତତ୍ପରେ ବନ୍ଧନ ତୁଟାଇ ଦେଲୁଁ, ଏମନ୍ତ ନୁହେଁ । ଧର୍ମଶାଳାରେ ଭିନ୍ନ ଭିନ୍ନ ସ୍ଥାନର ଭିନ୍ନ ଭିନ୍ନ ଲୋକ ଘଟଣାଚକ୍ରରେ ପରିଚିତ ହୋଇ ଗୋଟାଏ ସମ୍ପର୍କ ଗଢ଼ି ନିଅନ୍ତି । କିନ୍ତୁ ପରିବାର ବାହ୍ୟ ସମ୍ପର୍କର ବିଷୟ ନୁହେଁ; ତାହା ଅନ୍ତରର ଗ୍ରନ୍ଥି । ପରିବାରର ସୃଷ୍ଟି ଅନ୍ତରତମ ପଦାର୍ଥରୁ; ରକ୍ତ ମାଂସ ମାତ୍ରରୁ ନୁହେଁ । ପରିବାରରେ ବସ୍ତୁ ଅନେକ; ପ୍ରାଣ ଏକ । ପରିବାରର ଏକତ୍ୱ ଏକ ଗୃହବାସୀ ହେବାରେ କି ଏକତ୍ର ସ୍ନାନ ଆହାର କରିବାରେ ନାହିଁ । ସମବେଦନାରେ ଅଛି । ପରିବାରର ସୁଖରେ ପ୍ରତ୍ୟେକ ସୁଖୀ; ଏକର ଦୁଃଖରେ ଅନ୍ୟମାନେ ଦୁଃଖୀ । ପାରିବାରିକ କ୍ଷମତା ଏକ ଏକର ଦାବୀ ସ୍ଥାପନରେ କି ଭାଗ ଆଧିକ୍ୟରେ ନାହିଁ; ସମୂହ ସୃଷ୍ଟିରେ ଅଛି । କଳହ ସୃଷ୍ଟିରେ ନାହିଁ, ପାରସ୍ପରିକ ସାହାଯ୍ୟରେ ଅଛି । ପରିବାରର ବସ୍ତୁ ବଣ୍ଟନ ଭୂମି ନୁହେଁ; ତାହା ପ୍ରାଣ ସମୃଦ୍ଧିର କ୍ଷେତ୍ର ଅଟେ । ପରିବାରରେ ପ୍ରତ୍ୟେକ ଅଙ୍ଗର ପ୍ରୟୋଜନ ଅଛି; କିନ୍ତୁ ତାହା ସେହି ଅଙ୍ଗ ପାଇଁ ନୁହେଁ, ପରିବାର ପାଇଁ ଅଟେ । ଯଦି ଏକ ବା ଏକାଧିକ ଅଙ୍ଗର ବଳିଦାନ ଆବଶ୍ୟକ ହୁଏ ଏବଂ ସମ୍ଭବତଃ କେତେକ ସ୍ଥାନରେ ହୋଇଥାଏ, ତେବେ ପାରିବାରିକ ଦୃଢ଼ତା ପାଇଁ ତାହା କରଣୀୟ । ପରିବାର ଯେପରି ପାରିବାରିକ ଉପାଦାନ ସହିତ ଏକ ଉପାଦାନ ସେହିପରି ଅନ୍ୟ ଉପାଦାନ ସହିତ, ସମ୍ବନ୍ଧରେ ଆବଦ୍ଧ ଏବଂ ପ୍ରତ୍ୟେକ ଉପାଦାନର ଚେଷ୍ଟା ପାରିବାରିକ ସୁଖ ଦିଗରେ, ଐକିକ ସୁଖ ଦିଗରେ ନୁହେଁ । ସମୂହଭୁକ୍ତ ଯାବତୀୟ ଉପାଦାନ ପାରିବାରିକ

କର୍ତ୍ତବ୍ୟରେ ପରସ୍ପର ଜଡ଼ିତ । ଏକର କର୍ତ୍ତବ୍ୟ ନିଜ ପ୍ରତି ଯେତେ, ଅନ୍ୟ ପ୍ରତି ମଧ୍ୟ ସେତିକେ । ଏକର ପ୍ରୟୋଜନ ନିମିତ୍ତ ଅନ୍ୟ କିଛି ନା କିଛି ଦୁଃଖ ଅଭାବ ଭୋଗିବାକୁ ହୁଏ । ସ୍ୱୀୟ ଦାବୀର ମାତ୍ରା ଯେତେ, କର୍ତ୍ତବ୍ୟ ତଦପେକ୍ଷା ଅଧିକ । ବାସ୍ତବରେ ଯେଉଁଠାରେ ପରିବାର ଭୁକ୍ତ ଲୋକ କର୍ତ୍ତବ୍ୟ ବିସ୍ମୃତ ହୋଇ ସ୍ୱତ୍ୱ ଅଧିକାରର ବଶୀଭୂତ ହୁଏ, ଯେଉଁଠାରେ ଏକ ଅଙ୍ଗ ଅନ୍ୟ ପ୍ରତି ଦୃଷ୍ଟିପାତ ନ କରି ସ୍ୱାର୍ଥ ସାଧିବାରେ ନିଯୁକ୍ତ ରହେ, ସେଠାରେ ପାରିବାରିକ ଜୀବନ ଛିନ୍ନ ବିଚ୍ଛିନ୍ନ ହୋଇପଡ଼େ ।

ପରିବାର ଏକାନ୍ନ ସଂସାର; କିନ୍ତୁ ଏକଛତ୍ର ସଂସାର ନୁହେଁ । ଆଦିମ ପରିବାରରେ ଏକାଧିପତ୍ୟ ରାଜତ୍ୱ ଥିବାର ପ୍ରମାଣ ମିଳେ । ଆଦିମ ପରିବାରରେ ଗୃହସ୍ୱାମୀ ଏକଛତ୍ର ପ୍ରଭୁ; ସମସ୍ତେ ତାହାଙ୍କ କରତଳଗତ, ତାହାଙ୍କର ଆଦେଶାନୁଗତ । ଏପରି ଥିବାର କାରଣ ଏହି କି, ଆଦିମ ମନୁଷ୍ୟ ନିକଟରେ ବୟସର ଆଧିକ୍ୟ ଯୋଗ୍ୟତାଧିକାର ଚିହ୍ନସ୍ୱରୂପ ସ୍ୱୀକୃତ ହେଉଥିଲା । ତାହାର ବିଶ୍ୱାସ ଥିଲା ଯେ,ପାରିବାରିକ ଦାୟିତ୍ୱ ଜଣକ ଉପରେ ନ୍ୟସ୍ତ ନ ରହିଲେ ପରିବାର ବିଶୃଙ୍ଖଳ ହୋଇପଡ଼ିବ । ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ସେ ବୟୋବୃଦ୍ଧ ବ୍ୟକ୍ତିଙ୍କ ଅଧିନାୟକତ୍ୱରେ କାର୍ଯ୍ୟ କରିବା ନିମିତ୍ତ କିଛିମାତ୍ର କୁଣ୍ଠାବୋଧ କରୁ ନ ଥିଲା; କିନ୍ତୁ ଉନ୍ନତ ପରିବାର ଆଦିମ ପରିବାରଠାରୁ ଭିନ୍ନ । ଏଠାରେ ପ୍ରତ୍ୟେକ ପାରିବାରିକ ଅଙ୍ଗର ବିଶେଷ ବିଶେଷ କାର୍ଯ୍ୟ, ଦାବୀ ଓ ଅଧିକାର ଅଛି; ବ୍ୟକ୍ତିତ୍ୱ ବିକାଶପାଇଁ ଯଥେଷ୍ଟ ପରିସର ରହିଅଛି; କିନ୍ତୁ ଯେଉଁ କାର୍ଯ୍ୟରେ ପାରିବାରିକ ସମୂହର ଅମଙ୍ଗଳ ଘଟେ, ଏପରି କାର୍ଯ୍ୟ କରିବାର ଅଧିକାର କାହାରି ନାହିଁ । ଅଙ୍ଗ ବିଶେଷର ତଥା ପରିବାରର ମଙ୍ଗଳ ସେହି ସେହି ନିର୍ଦ୍ଧାରିତ କାର୍ଯ୍ୟର ଯଥୋଚିତ ସମ୍ପାଦନ ଉପରେ ନିର୍ଭର କରେ । ପ୍ରତ୍ୟେକେ ନିଜ ନିଜ କର୍ମ ସାଧନରେ ନିଯୁକ୍ତ ରହିଲେ, ନିଯୁକ୍ତ ରହିଥିବା ଯାଏ ପାରିବାରିକ ପ୍ରାଣ ସଚେତ ରହିଥାଏ । ସମୂହର ଅସ୍ତିତ୍ୱ ଓ ସମୂହର ମହତ୍ତ୍ୱ, ସମୂହ କର୍ତ୍ତବ୍ୟ ସମ୍ପାଦନ ସାପେକ୍ଷ । ପରିବାର ଅକର୍ମା ଲୋକଙ୍କର ସଂସାର ନୁହେଁ; କି ପାରିବାରିକ ଉପାଦାନ ପରାସକ୍ତ ବସ୍ତୁ ନୁହେଁ । ଯଦି ପରିବାରର କାର୍ଯ୍ୟ ଏକ ଲୋକର ମାତ୍ର କାର୍ଯ୍ୟରୂପେ ଗୃହୀତ ହୁଏ, ଯଦି ସହବାସୀମାନେ ଅକର୍ମା, କୁକର୍ମା ହୁଅନ୍ତି, ତେବେ ପାରିବାରିକ ଧର୍ମରେ ବ୍ୟାଘାତ ଜନ୍ମେ ଏବଂ ଯେଉଁ ମୁହୂର୍ତ୍ତରେ ଗୋଟିଏ ଅନ୍ୟର ମୁଖାପେକ୍ଷୀ ହୁଏ, ଯେଉଁ ମୁହୂର୍ତ୍ତରେ ଗୋଟିଏ ଅନ୍ୟର ଗଳଗ୍ରହ ହୋଇ ବସେ, ସେହି ମୁହୂର୍ତ୍ତରୁ ପାରିବାରିକ ଜୀବନ ହୀନବଳ ହୋଇପଡ଼େ ।

ହେଲେହେଁ ସମସ୍ତ ଅଙ୍ଗ ସମାନ ଆସନର ଅଧିକାରୀ ନୁହନ୍ତି । ଯେ ଯେଉଁ ପରିମାଣରେ ଯୋଗ୍ୟ, ତାହାର କର୍ତ୍ତବ୍ୟ ଓ ଅଧିକାର ତଦନୁଯାୟୀ ଅଟେ । ଅନେକ ପରିବାରରେ ଦେଖୁଁ, ଯେତେ ଉପାଦାନ ସେତେ ଅଧିକାର, ସେତେ ଭାଗ ବିଭାଗ । ଏତଦ୍ଦ୍ୱାରା ପାରିବାରିକ ଅଙ୍ଗବସ୍ତୁ ସଂଖ୍ୟାରେ ପର୍ଯ୍ୟବସିତ ହୁଏ । ଆଦର୍ଶ ସମାଜରେ

ପରିବାରରେ କର୍ତ୍ତା ପ୍ରବୀଣ ପୁରୁଷର କର୍ତ୍ତବ୍ୟ ବେଶୀ, ଦାୟିତ୍ୱ ବେଶୀ, ଅଧିକାର ବେଶୀ। ତାଙ୍କର ସ୍ଥାନ ଅନ୍ୟମାନଙ୍କ ଉପରେ। ଯାବତୀୟ ଦୈହିକ ଶକ୍ତି ଯେପରି ମସ୍ତିଷ୍କଦ୍ୱାରା, ପାରିବାରିକ ଅଙ୍ଗଗୁଡ଼ିକ ସେହିପରି ଅଭିଜ୍ଞ ବ୍ୟକ୍ତିଦ୍ୱାରା ଚାଳିତ ଓ ନିୟନ୍ତ୍ରିତ। ବିଭିନ୍ନ ପାରିବାରିକ ଅଙ୍ଗର କାର୍ଯ୍ୟ ସମୀକ୍ଷା କରିବା, ପାରିବାରିକ ଦାବୀ ଅଧିକାରର ଚୂଡ଼ାନ୍ତ ନିଷ୍ପତ୍ତି ଦେବା, ନିଜର ସ୍ଥାନରେ ଉପଯୁକ୍ତ ବ୍ୟକ୍ତିଙ୍କୁ ମନୋନୀତ କରି ରଖିଯିବା ତାଙ୍କର କାର୍ଯ୍ୟ ଓ କର୍ତ୍ତବ୍ୟ ଅଟେ। ପରିବାର ଏହିପରି ଏକ ଏକର କର୍ମ ସାଧନରେ, ପୁଣି ଶ୍ରେଷ୍ଠ ଅଙ୍ଗର ନେତୃତ୍ୱରେ ସଙ୍ଗଠିତ, ସଂରକ୍ଷିତ ରହେ ଓ ସମ୍ବର୍ଦ୍ଧିତ ହେଉଥାଏ। ପାରିବାରିକ ଜୀବନ ରାଜତନ୍ତ୍ର ଓ ପ୍ରଜାତନ୍ତ୍ରର କି ବିଚିତ୍ର ସମାବେଶ !

[ ପ୍ରବନ୍ଧ ସୋପାନ ]

---

# ବିଦ୍ୟାବତ୍ତା ଓ ଧନବତ୍ତା

ସ୍ୱର୍ଗତ ଶଶିଭୂଷଣ ରାୟ

"ସ୍ୱଦେଶେ ପୂଜ୍ୟତେ ରାଜା
ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ ।"

୧୮୯୧ ସାଲରେ ମୟୂରଭଞ୍ଜର ପୁଣ୍ୟଶ୍ଳୋକ ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ନିକଟରେ ଏ ଲେଖକ ବସିଥିବାବେଳେ କଟକ କଲେଜର କେତେକ ବିଦ୍ୟାର୍ଥୀ ତାଙ୍କ ସହିତ ସାକ୍ଷାତ୍ ସକାଶେ ଉପସ୍ଥିତ ହେଲେ । କେତେଗୁଡ଼ିଏ ପ୍ରସଙ୍ଗ ଉପସ୍ଥିତ ହେବା ଉତ୍ତାରୁ ସେ ଉପଦେଶ ଛଳରେ କହିଲେ, "ଦେଖ ଯେ ଅବସ୍ଥାରେ ପଡ଼ିଲେ ମଧ୍ୟ ଲେଖାପଢ଼ା ଛାଡ଼ିବା କଦାପି ଉଚିତ ନୁହେଁ । ବିଦ୍ୟାବସ୍ଥାରେ ସବୁ ସମୟରେ ଟଙ୍କା ନ ଆସିପାରେ, କିନ୍ତୁ ବିଦ୍ୟାର ଗୋଟିଏ ବିଶିଷ୍ଟ ସମ୍ମାନ ରହିଅଛି । ଆଧୁନିକ ସମାଜରେ ଧନ ସମ୍ପତ୍ତି କାହା କାହା ନିକଟରେ ଏତେ ପରିମାଣରେ ସ୍ପୃହଣୀୟ ହେବାର ବିଶେଷ କାରଣ, ଆଜିକାଲି ଅନେକେ ଧନୀଙ୍କୁ ସମ୍ମାନ ଦେଖାଉଥାନ୍ତି । କିନ୍ତୁ ମୁଁ କହୁଅଛି, ସମାଜରେ କିମ୍ବା ଭାରତବର୍ଷରେ ବିଦ୍ୱାନର ଆଦର ଚିରକାଳ ରହିଛି ।"

ପ୍ରାୟ ୪୬ ବର୍ଷ ପୂର୍ବେ ମହାରାଜ ଏହି କଥାଗୁଡ଼ିକ କହିଥିଲେ । ସେ ଆଜୀବନ ବିଦ୍ୟାର୍ଥୀ, ଚରିତ୍ରବାନ, ଧାର୍ମିକ ଏବଂ ନିରଳସ । ବିଦ୍ୟାଳୟର ଛାତ୍ର ରୂପରେ କଟକ ଆଗମନ ସମୟରୁ ଏ ଲେଖକ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ତାଙ୍କର ପ୍ରତିମୁହୂର୍ତ୍ତର ଜ୍ଞାନାର୍ଜନସ୍ପୃହା ଏ ଲେଖକ ଅନେକ ସମୟରେ ଦେଖିଅଛି । ତାଙ୍କର ସାମୀପ୍ୟ ଓ ସାହଚର୍ଯ୍ୟରେ ଅନେକ ଦିନ କଟାଇ ଅଛି । ବିଶାଳ ମୟୂରଭଞ୍ଜର ଭାଗ୍ୟ-ବିଧାତା ରୂପେ ଯେଉଁ ହୃଦୟରେ ଗର୍ବ ଆଦୌ ସ୍ଥାନ ପାଇ ନ ଥିଲା, ସେହି ହୃଦୟର ଆଧାର ସ୍ୱରୂପ ତପ୍ତକାଞ୍ଚନ କାନ୍ତି ଚକ୍ଷୁର ସରଳ ଓ ବିଶ୍ୱାସ ପୂର୍ଣ୍ଣ ଦୃଷ୍ଟି ଏବଂ ଅପରିଲକ୍ଷିତ କେଶରାଶି ଆଜିଯାଏ ଏ ହୃଦୟ ପଟରେ ଅଙ୍କିତ ରହିଅଛି ଓ ଚିରଦିନ ରହିଥିବ ।

ପୂର୍ବେ ହିନ୍ଦୁ ସମାଜରେ, ଆମ୍ଭମାନଙ୍କ ଦେଶରେ ବିଦ୍ୟାର ହିଁ ସର୍ବାପେକ୍ଷା ଅଧିକ ସମ୍ମାନ ରହିଥିଲା । କିନ୍ତୁ ବର୍ତ୍ତମାନ ତାହା ନାହିଁ । ବର୍ତ୍ତମାନ ଦେଖୁଛୁଁ,

ବିଦ୍ୟାର ଆଦର କ୍ରମଶଃ କମିଆସୁଅଛି ଏବଂ ଧନର ଆଦର କ୍ରମେ କ୍ରମେ ବଢ଼ି ଯାଉଅଛି ତଥାକଥିତ ସାମ୍ୟବାଦୀମାନଙ୍କ ନିକଟରେ ଅଭିଜାତ୍ୟ ଘୃଣା ଓ କଟାକ୍ଷର ବସ୍ତୁ ହେଲେହେଁ ବିତ୍ତ-ବିଭବବିଶିଷ୍ଟ ସମାଦରର ଅଧିକାରୀ ରୂପରେ ଦଣ୍ଡାୟମାନ । ବିଦ୍ୟା ଗୌରବ ପରିବର୍ତ୍ତରେ, ବଂଶମର୍ଯ୍ୟାଦା ବିକଳ୍ପରେ କାଞ୍ଚନ-କୌଳିନ୍ୟ ସୃଷ୍ଟି ହେଉଅଛି ! କିନ୍ତୁ ମନୁସଂହିତାରେ ବ୍ୟକ୍ତିଗତ ମାନ୍ୟସ୍ଥାନ ନିର୍ଦ୍ଦେଶପୂର୍ବକ ବ୍ୟକ୍ତ ହୋଇଅଛି—

"ବିତ୍ତଂ ବନ୍ଧୁର୍ବୟଃ କର୍ମ
ବିଦ୍ୟା ଭବତି ପଞ୍ଚମୀ ।
ଏତାନି ମାନ୍ୟସ୍ଥାନାନି
ଗରୀୟୋ ଯଦ୍ ଯଦୁତ୍ତରଂ ।"

ବିଦ୍ୟାବନ୍ତ ହିଁ ସର୍ବାପେକ୍ଷା ଉଚ୍ଚ । ଏହା ତଳେ କର୍ମଶୀଳତା, ଏହା ତଳେ ବୟସ, ଏହା ଉତ୍ତାରୁ ସମ୍ପର୍କ ଅଥବା ଆଭିଜାତ୍ୟ, ଏହା ତଳେ ଧନବନ୍ତ । ଏହି ପଞ୍ଚବିଧ ମାନ୍ୟ ସ୍ଥାନ ହିଁ ସମସ୍ତ ସମାଜରେ ସ୍ୱୀକୃତ । କିନ୍ତୁ ସମାଜ ଭେଦରେ ଏହି ପାଞ୍ଚଗୋଟି ମଧ୍ୟରୁ କୌଣସିଟି ପ୍ରତି ବିଶେଷ ସମାଦର ହୋଇଥାଏ । ସାଧାରଣତଃ ଏତକି କହିଲେ ଚଳିବ ନବ୍ୟ ଇଉରୋପରେ ଧନବନ୍ତ ବଢ଼ିଅଛି, ଏ ଦେଶରେ ସେହି ଅନୁକରଣରେ ତାହାହିଁ ହେବାର ଉପକ୍ରମ ହୋଇଅଛି । ଏହି ଦୃଷ୍ଟିରୁ ମଧ୍ୟରୁ ପ୍ରାକୃତିକ ଧର୍ମାବଲମ୍ବୀଗଣ ସହଜ ଗୁଣବନ୍ତ ପ୍ରତି ସବିଶେଷ ଆସ୍ଥାବାନ୍ । ମନେ କରନ୍ତି ଯେ, "ସାମାଜିକ ବୈଷମ୍ୟର ବ୍ୟବସ୍ଥା ବଂଶ ମର୍ଯ୍ୟାଦାନୁସାରିଣୀ ହେବା ହିଁ ଭଲ—ବିଭବାନୁସାରିଣୀ ହେବା ଭଲ ନୁହେଁ । ବିଭବାନୁସାରିଣୀ ବୈଷମ୍ୟ ବ୍ୟବସ୍ଥା ଚେଷ୍ଟା-ଶକ୍ତିର ଉତ୍ତେଜକ ହେଲେ ହେଁ ଲୋଭ, ଈର୍ଷା, ଶଠତା, ଅସ୍ଥୈର୍ଯ୍ୟ ପ୍ରଭୃତି ଦୋଷର ଆକର ନୁହେଁ କି ?" କୌଣସି ମନୀଷୀଙ୍କର ଏହି ବାକ୍ୟଟି ଏଠାରେ ଉଦ୍ଧାର କରିଦେଲି ।

ମନୁଙ୍କ ଅନୁଶାସନରେ ସମାଦର ହିସାବରେ ଧନବନ୍ତ ଯେପରି ସର୍ବନିମ୍ନ ପଦବୀରେ ପରିସ୍ଥାପିତ ଥିଲା, ପ୍ରାଚୀନ ରୋମ ଓ ଗ୍ରୀସ୍‌ରେ ତାହାହିଁ ଥିଲା । ରସ୍କିନ୍ ତାଙ୍କର "A Joy for Ever" ପୁସ୍ତକରେ ଲେଖିଛନ୍ତି :

"I cannot however, help noticing, how extraordinary it is and how this epoch of ours differs from all bygone epochs, in having no philosophical nor religious worshippers of the ragged godship of poverty. In the classical ages, the Greeks and Latins seemed to have looked upon these eccentric people with as much respect as we do upon large capitalists and

landed proprietors; so that realy in those days, no one could be described as purse-proud but only as empty purse-proud. Nor are matters much better in the middle ages, when wealth seems to have been looked upon not only as contemplible, but criminal. The purse round the neck is then, one of the principal signs of condemnation in the pictured Inferno and the spirit of Poverty is reverenced with subjection of heart and faithfulness of affection like that of a loyal knight for his lady or a loyal subject for his queen.

ସୁତରାଂ ଆମ୍ଭେମାନେ ଦେଖୁଅଛୁ, ଇଉରୋପର ପ୍ରଥମ ଏବଂ ମଧ୍ୟଯୁଗରେ ଧନବନ୍ତ ଅତ୍ୟନ୍ତ ତିରସ୍କୃତ ଓ ଲାଞ୍ଛିତ ନବ୍ୟ ଇଉରୋପ, ବିଶେଷତଃ ଇଂଲଣ୍ଡରେ ଧନବନ୍ତ ଅତ୍ୟନ୍ତ ଆଦରଣୀୟ ଏବଂ ଏହା କେଉଁପ୍ରକାର ମୂର୍ତ୍ତି ଧାରଣ କରିଅଛି, ତାହା ନିମ୍ନରେ ଏମର୍ସନଙ୍କର "ଇଂରାଜ-ଚରିତ୍ର" (English Traits) ଅଧ୍ୟାୟରୁ ଉଦ୍ଧୃତ ହେଲା :

"There is no country in which so absolute a homage is paid to wealth. In America there is a touch of shame when a man exhibits the evidences of large property, as if after all, it needed apology. But the Englishman has pure pride in his wealth and esteems it a final certificate. A course logic rules throughout all English souls, if you have merit, can you not shew it by your good clothes, coach and horses? An Englishman who has lost his fortune is said to have died of a broken heart. The last term of insult is a 'beggar'—poverty is infamous in England."

ତୁଳନାରେ ସମାଲୋଚନା କଲେ ଆମ୍ଭେମାନେ କଣ ଦେଖୁନାହିଁ ଆମ୍ଭମାନଙ୍କ ଦେଶରେ ଧନବନ୍ତ ସମାଜରେ ଇଂରାଜୀ ଭାବ ହିଁ ପ୍ରବେଶାଧିକାର ଲାଭ କରିଅଛି ? ଇଂଲଣ୍ଡ ଏବଂ ନବ୍ୟ ଇଉରୋପର ଅନ୍ୟାନ୍ୟ ଦେଶରେ ଏହି ଧନବନ୍ତର ସମାଦର ହେତୁରୁ ଏହି ଅର୍ଥଗୃଧ୍ନୁତା ଫଳରୁ ବଡ଼ ବିଷମୟ ଫଳ ଫଳିଅଛି ଏବଂ ଫଳୁଅଛି ଏହାରି ଫଳରୁ ସମାଜ ବିପ୍ଳବ, ରାଷ୍ଟ୍ରବିପ୍ଳବ ପ୍ରଭୃତି ବିବିଧ ପ୍ରକାର ସାମାଜିକ ଅଶାନ୍ତିର ଉଦ୍ଭବ ହୋଇଅଛି । ଏହି ହେତୁରୁ କାର୍ଲାଇଲ, ରସ୍କିନ ପ୍ରଭୃତି ଏହି ଧନଲିପ୍ସା ଏବଂ ବିତ୍ତମର୍ଯ୍ୟାଦା ବିରୁଦ୍ଧରେ ସେମାନଙ୍କର ପ୍ରଭୂତ ଶକ୍ତି ଓ ବିଦ୍ୟାବୁଦ୍ଧି ପ୍ରୟୋଗ କରିଅଛନ୍ତି । କାର୍ଲାଇଲ ଏ ସମ୍ବନ୍ଧରେ କଣ କହିଅଛନ୍ତି ଦେଖାଯାଉ —

"Let inventive man consider whether the secret of universe does, after all, consist in making money. With a hell, which means faili g to make money. I do not think there is any heaven possible that would suit one well. In bri f all this Mammon Gospel of Supply and Demand competition 'lawsaiz faire' and devil take the hindmost begins to be one of the shabbiest Gospels ever preached"—(Carlyle's Past and Present)

ଏହି ହେତୁରୁ ଧାର୍ମିକ ଚିନ୍ତାଶୀଳ କବିଶ୍ରେଷ୍ଠ ଓ୍ୱାର୍ଡସଓ୍ୱାର୍ଥ ନିତାନ୍ତ ଆକ୍ଷେପ ସହକାରେ କହିଅଛନ୍ତି—

"Plain living and high thinking are no more."

ସାଧାରଣ ଇଂରେଜ ନ ବୁଝିଲେ ହେଁ ଚିନ୍ତାଶୀଳ, ସୁବୋଧ ଇଂରେଜମାନେ ବୁଝିଅଛନ୍ତି ଯେ ଏହି ଧନପିପାସା, ପରସ୍ପର ବିରୋଧ, ଘୋର ସଙ୍କୀର୍ଣ୍ଣ ସ୍ୱାର୍ଥପରତା ଏବଂ ଏହି ଧନବଶ୍ୟର ସମ୍ମାନ ହେତୁରୁ ସେମାନଙ୍କ ସ୍ୱଦେଶବାସିଗଣ କେଉଁ ସ୍ଥଳର ଶୋଚନୀୟ ଅଧଃପତନ ମାର୍ଗରେ ଧାଇଁ ଅଛନ୍ତି । ଇଂରେଜର ଯାହା ଦୋଷ, ତାହାହିଁ ଅନୁକରଣ କରିବାକୁ ଆମ୍ଭେମାନେ ସର୍ବଦା ଅଗ୍ରସର । ସୁତରାଂ ଯେଉଁ ଧନ ସମ୍ପତ୍ତି ଇଂରେଜର ଚାକଚକ୍ୟମୟ ସଭ୍ୟତାର ପ୍ରଧାନ ଅଂଗ ଏବଂ ଯେଉଁ ଧନ ସମ୍ପତ୍ତିରେ ବିବିଧପ୍ରକାର ବିଳାସର ଆୟୋଜନ—ପ୍ରୟୋଜନ ସିଦ୍ଧ କରିଦିଏ, ତାହାର ସମ୍ମାନ ନ କରିବୁ କାହିଁକି ? ଏହି ଧନ ସମ୍ପତ୍ତି ଲାଭ କରିବା ସକାଶେ ସଦୁପାୟ କିମ୍ବା ଅସଦୁପାୟ ଅବଲମ୍ବନ କରିବୁ ନାହିଁ କାହିଁକି ? ଯେଉଁ ବିଦ୍ୟା ଅର୍ଥକରୀ, ଯେଉଁ ବିଦ୍ୟା ବୃଦ୍ଧି ବିଶାଳ-ସୁଖର ସହାୟଭୂତାରେ ଉପୂର ସେହି ଠିକ ତ ମୋ ପକ୍ଷରେ ଆବଶ୍ୟକ । ଯେଉଁ ବିଦ୍ୟାରେ ଅର୍ଥ ଉତ୍କୁଳ ଉଠେନାହିଁ, ସୁତରାଂ ଯହିଁରେ ସମ୍ମାନ ନାହିଁ, ସେହି ଶୂନ୍ୟଗର୍ଭ ବିଦ୍ୟାଚର୍ଚ୍ଚା ନିଷ୍ପ୍ରୟୋଜନ । ଏହି ଭାବ ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରୁ ଅଧିକାଂଶଙ୍କ ମଧ୍ୟରେ ଆତ୍ମ ପ୍ରକାଶ କରୁନାହିଁ କି ? କବିବର ରବୀନ୍ଦ୍ରନାଥ ଥରେ କଥାପ୍ରସଙ୍ଗରେ କହିଥିଲେ, "ଉପାଧିଧାରିଗଣଙ୍କର ଗୋଟିଏ ଧାରଣା ଏହି ଯେ, ସେମାନେ ଯେତେବେଳେ ବି. ଏ., ଏମ. ଏ. କିମ୍ବା ବି. ଏଲ୍. ସେତେବେଳେ ସେମାନେ ବିଳାସ-ବିଭବର ଅଧିକାରୀ ଏବଂ ଗାଡ଼ି, ଘୋଡ଼ା କିମ୍ବା ବିଳାସର ଅନ୍ୟ ସାମଗ୍ରୀମାନ ସେମାନଙ୍କର ପ୍ରାପ୍ୟ ଅଧିକାର ଏବଂ ଏହି ସମସ୍ତ ହିଁ ଯେପରି ସେମାନଙ୍କର ଚରିତ୍ରାଦର୍ଶରୂପେ ଦଣ୍ଡାୟମାନ । ଯେଉଁମାନେ ପ୍ରକୃତ ଶିକ୍ଷିତ, ସେମାନଙ୍କର ଅଳ୍ପରେ ସନ୍ତୁଷ୍ଟ ହେବା ଉଚିତ । ଜର୍ମାନୀର ଯେଉଁମାନେ ସୁପ୍ରସିଦ୍ଧ ପଣ୍ଡିତ, ପ୍ରସିଦ୍ଧ ଅଧ୍ୟାପକ, ଯେଉଁମାନଙ୍କ କଥାରେ ଚିନ୍ତାଶୀଳ ସହୃଦୟ ସଭ୍ୟଜଗତ ମୁଗ୍ଧ, ସ୍ତମ୍ଭିତ ଏବଂ ଉଦ୍‌ବୁଦ୍ଧ

ସେମାନେ ମାସିକ ଦେଢ଼ଶତ କିମ୍ବା ଦୁଇଶତ ଟଙ୍କାରେ ପରିତୃପ୍ତ। "କଲିକତା ତଥା ବଙ୍ଗ ଦେଶରେ ଏଭଳି ଅନେକ କଲେଜର ଅଧ୍ୟାପକ ଅଛନ୍ତି, ଯେଉଁମାନଙ୍କର ମାସିକ ଆୟ ଦେଢ଼ଶତ, ଦୁଇଶତ ଟଙ୍କା, କିନ୍ତୁ ସେମାନେ ଯେ ତହିଁରେ ବିଶେଷ ସନ୍ତୁଷ୍ଟ ଏବଂ ପରିତୃପ୍ତ ହୋଇ ଏକାନ୍ତ ମନରେ ବିଦ୍ୟାଚର୍ଚ୍ଚା କରନ୍ତି, ତାହା ଅନୁମିତ ହୁଏନାହିଁ। ସାହିତ୍ୟ ସେବା ଏବଂ ବିଦ୍ୟାଚର୍ଚ୍ଚାରେ ଯେ ଗୋଟିଏ ମହତ୍ ସୁଖ ଏବଂ ଅନବଦ୍ୟ ଶାନ୍ତି ରହିଅଛି ତାହା ଆମ୍ଭମାନଙ୍କ ମଧ୍ୟରୁ ଅନେକେ ଅନୁଭବ କରିବାକୁ ପରାଙ୍ମୁଖ। ଯେଉଁ ସାହିତ୍ୟ ସେବା ଆନନ୍ଦରେ "ଅଜାଗ୍ରା ବାହ୍ୟବସ୍ତୁସୁ" ଆଣିଦିଏ, ଯେଉଁ ଆନନ୍ଦ ସମସ୍ତ ପାର୍ଥିବ ସୁଖକୁ ମଳିନ କିମ୍ବା ମ୍ଳାନ କରିଦିଏ, ଯେଉଁ ସୁକୁମାର ସାହିତ୍ୟୋନ୍ମାଦନା ସମ୍ବନ୍ଧରେ ଜନ୍ ମର୍ଲି ଥରେ କହିଥିଲେ, "Literature gives you everything provided you can get out of it" ସେହି ସାହିତ୍ୟ ସେବା ଆମ୍ଭମାନଙ୍କର କାହିଁ ? ଆମ୍ଭେମାନେ କଥାକଥାକେ ହଠାତ୍ ସାହିତ୍ୟ ସମ୍ରାଟ, ଗଦ୍ୟ ସମ୍ରାଟ, ପଦ୍ୟ ସମ୍ରାଟ, ଇତିହାସ ସମ୍ରାଟ, ପ୍ରତ୍ନତତ୍ତ୍ୱ ସମ୍ରାଟ, ସଙ୍ଗୀତ ସମ୍ରାଟ ପ୍ରଭୃତି ହୋଇ ସେହି ଆନନ୍ଦରେ ବିହ୍ୱଳ ହୋଇଯାଉ। ଯେଉଁଭାବରେ ଶିକ୍ଷା-ପରୀକ୍ଷା ଚାଲିଅଛି ଶିକ୍ଷାରେ ଯେଉଁ ପ୍ରକାର ଧର୍ମଭାବ କ୍ଷୁଣ୍ଣ ହେଉଅଛି, ଯେଉଁ ପ୍ରକାର ସାଧୁ-ପଣ୍ଡିତ ସହୃଦୟ ସାହିତ୍ୟସେବୀ ଶିକ୍ଷକର ଅଭାବ, ସେଥିରେ ବିଦ୍ୟାର ପ୍ରକୃତ ଆଦର ଲୁପ୍ତ, ବରଂ ଧନର ମାହାତ୍ମ୍ୟ ହିଁ ସବୁବେଳେ କୀର୍ତ୍ତିତ ହେବ ଏବଂ ଛାତ୍ରବର୍ଗ କ୍ରମଶଃ ହୃଦୟଶୂନ୍ୟ, ସ୍ୱାର୍ଥପର ହେଉଥିବେ।

ଅଜିକାଲି ଆମ୍ଭମାନଙ୍କ ମଧ୍ୟରେ ପ୍ରତ୍ନତତ୍ତ୍ୱ ଏବଂ ବିଜ୍ଞାନର କଥାବାର୍ତ୍ତା ତୀବ୍ର ଗତିରେ ଚାଲିଅଛି। ସୁକୁମାର ସାହିତ୍ୟ ଗୋଟିଏ କୋଣରେ ପଡ଼ି ରହିଅଛି। ସୁକୁମାର ସାହିତ୍ୟର ପ୍ରକୃତ ଚର୍ଚ୍ଚା ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ କ୍ରମଶଃ ସ୍ୱଳ୍ପରୁ ସ୍ୱଳ୍ପତର ହୋଇ ଯାଉଅଛି। ଜନ୍ ମର୍ଲି ତାଙ୍କର Compromise ପୁସ୍ତକରେ ପ୍ରତିପନ୍ନ କରିଅଛନ୍ତି ଯେ, ଇଉରୋପ ଖଣ୍ଡରେ ବିଜ୍ଞାନ ଚର୍ଚ୍ଚା ପ୍ରଧାନତଃ ବିଳାସ ଓ ସ୍ୱାର୍ଥପରତାର ଅନୁକୂଳ ହୋଇଅଛି ଏବଂ ଏହି ହେତୁରୁ ଯେପରି ସୁକୁମାର ସାହିତ୍ୟରେ ସହୃଦୟତା (humanities) ବୃଦ୍ଧି ପାଇବ, ସ୍ୱାର୍ଥପରତା, ନିଷ୍ଠୁରତା ଅନ୍ତର୍ହିତ ହେବ, ଯାହାର ପ୍ରଭାବରୁ ଧନବନ୍ତର ପାର୍ଥକ୍ୟ ମନ୍ଦୀଭୂତ ହେବ ଏବଂ ଧନ ସମ୍ପତ୍ତିର ନ୍ୟାଯ୍ୟ ଓ ଧର୍ମସଙ୍ଗତ ବିଭାଜନ କିମ୍ବା ବିଭାଗ ହେବ, ସେହି ସତ୍ ସାହିତ୍ୟ ସେହି ସୁକୁମାର ସାହିତ୍ୟ ପ୍ରଚାର କାଳରେ ମନୋଯୋଗୀ ହେବାକୁ ସମସ୍ତଙ୍କୁ ସନିର୍ବନ୍ଧ ଅନୁରୋଧ କରିଅଛନ୍ତି। ମହାତ୍ମା ଟଲ୍‌ଷ୍ଟୟ୍ ସୁନ୍ଦର ପରମ୍ପରାରେ ପ୍ରମାଣ କରି ଦେଇଅଛନ୍ତି ଯେ, ଇଉରୋପରେ ବିଜ୍ଞାନ ଅଧିକାଂଶ ସ୍ଥଳରେ ବିଳାସ ଦ୍ରବ୍ୟୋପକରଣ ଓ କଳକାରଖାନା ସୃଷ୍ଟି କରୁଅଛି ଏବଂ ଧନସମ୍ପତ୍ତିକୁ ନିତାନ୍ତ କ୍ଷୁଦ୍ର ଗଣ୍ଡି ମଧ୍ୟରେ ଆବଦ୍ଧ କରିବାକୁ ଚେଷ୍ଟା କରୁଅଛି। ତାଙ୍କର କଥାଗୁଡ଼ିକ ଏହି—

"The distress of any population means that they need food, house-room, clothes and fuel. You can never, therefore be wrong in employing any labourer to produce food, house-room, clothes or fuel, but you are generally wrong if you employ him to produce works of art or luxuries, because modern art is mostly on a false basis and modern luxury is criminally great. For, a great part of the earnest and ingenious industry of the world is spent in producing munitions of war, that is to say, the materials not of festive, but of consuming fire. (Ruskin's Munera Pulveris)

ଏଥିର ଉଦାହରଣ ସ୍ୱରୂପ ସାମାନ୍ୟ ଭାବରେ ଏତିକି ବୋଲାଯାଇ ପାରେ ଯେ, ବଙ୍ଗ ଦେଶ କୃଷି ଶିଳ୍ପ ନାସ୍ତିକ ପରିତ୍ୟକ୍ତ ହୋଇ ଶୁଦ୍ଧା ବଙ୍ଗର ବିଜ୍ଞାନ ରସାୟନ କାର୍ଯ୍ୟାଗାର ତାହାର କେତେକ ପରିମାଣରେ କଳା ବୃଦ୍ଧି ଭରସା—ସମ୍ଭୋଗ ଲାଲସାର ସୁବାସ-ସୁଗନ୍ଧୀ ପ୍ରସ୍ତୁତ କରିବାରେ ନିୟୁକ୍ତ ଏବଂ ଭୋଗ ବହ୍ନିର ବୃଦ୍ଧି କଳ୍ପରେ ଅନ୍ତତଃ ଅଂଶତଃ ଇନ୍ଧନ ସ୍ୱରୂପ ହୋଇ ଦଗ୍ଧାୟମାନ । ଏହି ବିଳାସିତା ଓ ଧନାକାଙ୍କ୍ଷା ଫଳରୁ ଆମ୍ଭମାନଙ୍କର ଧର୍ମ ଲୁପ୍ତ ଏବଂ ସାହିତ୍ୟ ଦୁର୍ଦ୍ଦଶାପନ୍ନ । ଅଳ୍ପଦିନ ପୂର୍ବେ ଜଣେ ମନୀଷୀ ସାହିତ୍ୟର ଗତି ବିଷୟରେ ଆଲୋଚନା କରି କହିଅଛନ୍ତି—

"ବିଜ୍ଞାନ ଚର୍ଚ୍ଚା ଫଳରୁ ବିଳାସର ଉଦ୍ଭବ; ବିଳାସ ପିପାସା ମେଣ୍ଟାଇବା ସକାଶେ ସମସ୍ତେ ପର୍ଯ୍ୟାପ୍ତ ଅର୍ଥୋପାର୍ଜ୍ଜନ ପାଇଁ ସଚେଷ୍ଟ । ମାନସିକ ଭାବ ଏତେଦୂର ହେୟ, ହୀନ ଓ ନୀଚ ହେଲେ, ଏପରି ସୁଖଲିପ୍ସୁ ହେଲେ ସତ୍ ସାହିତ୍ୟର ଉଦ୍ଭବ ସମ୍ଭବପରକି କି ?"

ଯେଉଁ ଦେଶରେ ଟଙ୍କା ପଇସା ସର୍ବସ୍ୱ ହୋଇ ଛିଡ଼ା ହୁଏ, ଯେଉଁ ଦେଶର ନରନାରୀ ଟଙ୍କା ଅଣା ପାହୁଲାର ହିସାବରେ ବ୍ୟସ୍ତ ଏବଂ ଲାଭାଲାଭ ସକାଶେ ସର୍ବଦା ଉଦ୍‌ବିଗ୍ନ ସେ ଦେଶର ସାହିତ୍ୟରେ ସତ୍ୟ, ଧର୍ମ, ସୌନ୍ଦର୍ଯ୍ୟ, ପବିତ୍ରତା, ଶୁଦ୍ଧି, ଆତ୍ମ ସମ୍ମାନ, ଆତ୍ମମର୍ଯ୍ୟାଦା, ବୀରତ୍ୱ ତତ୍ତ୍ୱକଥା ପ୍ରଭୃତିର ଆଲୋଚନା ପ୍ରକୃତ ଭାବରେ ବିଫଳ ହୋଇଥାଏ—ସେ ଦେଶରେ ସତ୍‌ସାହିତ୍ୟ ସୃଷ୍ଟି ଚେଷ୍ଟା ସୁଦୂର ପରାହତ ସ୍ୱରୂପ ବୋଧହୁଏ ।

କେହି କେହି ପଚାରିବେ, ମାନ୍ୟ ସ୍ଥାନ ହିସାବରେ ଧନବତ୍ତାର ସ୍ଥାନ ଏତେ ତଳକୁ କାହିଁକି ? ଯେତେବେଳେ ଦେଖାଯିବ, ଜଣେ ସହସା ବିଶିଷ୍ଟ ଧନଶାଳୀ ହୋଇ ଅଛି, ସେତେବେଳେ ବୁଝିବାକୁ ହେବ ଯେ, ତାହାର ପଶ୍ଚାତ୍‌ରେ ନୀଚତା, ଶଠତା,

ଅନ୍ୟାୟ ପରତା, ହୃଦୟ-ହୀନତା, କୁସୀଦ-ପୈଶାଚିକତା ଏବଂ ଉତ୍କୋଚ-ଗ୍ରାହିତା ରହିବ । ଅନ୍ୟର ଗ୍ରାସ କାଢ଼ି ନ ନେଲେ ଅନେକ ସ୍ଥଳରେ ସଫଳତା ଲାଭ ଅନିଶ୍ଚିତ । ଅନ୍ୟର ଅଭାବ ଦୁଃଖଯନ୍ତ୍ରଣା ଭଳି ପ୍ରତିକାର ପ୍ରୟାସୀ ହେଲେ, ସମାଜର ବର୍ତ୍ତମାନ ଯେଉଁ ପ୍ରକାର ମତିଗତି, ତହିଁରେ ନିଜର ଆର୍ଥିକ କ୍ଷତି ସୁନିଶ୍ଚିତ । ଧର୍ମପଥରେ ରହିଲେ ମୋଟ ଭାତ ଓ ମୋଟ କନ୍ଥା ମିଳିପାରେ, ଏହାକି ସିନା ? ଏ ସମ୍ବନ୍ଧରେ ବିଶ୍ୱ ବିଖ୍ୟାତ ରସ୍କିନ୍ କହି ଅଛନ୍ତି—

"Success, while society is guided by competition, signifies always so much victory over your neighbour, as to obtain the direction of his work. This is the real source of all great riches. No man becomes largely rich by his personal toil. The work of his own hands wisely directed, will, indeed always, maintain himself and his family and make fitting provision for his age." ( Ruskin's Munera Pulveris )

"ସତ୍ପଥ ହିଁ ଶ୍ରେଷ୍ଠ ନୀତି"(Honesty is the best policy) ଏହି ଗୋଟିଏ ପ୍ରବାଦ ପ୍ରଚଳିତ ଅଛି ସତ୍ୟ, କିନ୍ତୁ ଏହି ପ୍ରବାଦ ମୋହରେ କିମ୍ବା ଭରସାରେ ଲୋକ ପାର୍ଥିବ ବିଷୟର ସଫଳତା ପକ୍ଷରେ ଆଶ୍ୱସ୍ତ ରହି ନ ପାରେ । କୌଣସି ସମାଜ ହିଁ କେବଳ ମାତ୍ର ସତ୍ଲୋକର ସମଷ୍ଟି ନୁହେଁ—ସମାଜରେ ଅସତ୍ ଲୋକଙ୍କର ବାହୁଲ୍ୟ ଏବଂ ଅନେକ ସ୍ଥଳରେ ପ୍ରାବଲ୍ୟ । ସୁତରାଂ ସତ୍ଲୋକ ହିଁ ପ୍ରତିଯୋଗୀ ଜୀବନ ସଂଗ୍ରାମରେ ପଛକୁ ପଡ଼ିଥାନ୍ତି ଏବଂ ଭଗ୍ନମନୋରଥ ହୋଇ ଦୀନ ଭାବରେ ଦିନ ଯାପନ କରନ୍ତି । ଏହି ଅଭିମତ ପ୍ରକାଶଦ୍ୱାରା କେହି ଯେପରି ମନେ ନ କରନ୍ତି ଯେ, ଦୁର୍ନୀତିର ପ୍ରଶ୍ରୟ ଦେବା ହିଁ ଲେଖକର ଅଭିପ୍ରାୟ । ଯେଉଁ ମହାପୁରୁଷ ଯାହା ଲେଖି ଅଛନ୍ତି କିମ୍ବା ଉପଦେଶ ଦେଇଅଛନ୍ତି, ତାହା ହିଁ ନିଜ ଜୀବନର କାର୍ଯ୍ୟ ପରମ୍ପରାରେ ଦେଖାଇ ଅଛନ୍ତି —ଯେଉଁ ମହାପ୍ରାଣ ଉତ୍ତରାଧିକାର ସୂତ୍ରରେ ଲବ୍ଧ ପିତାଙ୍କ ଅର୍ଜିତ ଧନରାଶି ପ୍ରାୟ ୧୦ ଲକ୍ଷ ଟଙ୍କା charity and educational endowmentରେ ଅର୍ପଣ କରି ମାର୍ଗରେ କୃତକାର୍ଯ୍ୟ କରିଥିଲେ ଏବଂ ଯେ ସ୍ୱୋପାର୍ଜିତ ଯଥାସର୍ବସ୍ୱ ଦରିଦ୍ରର ଦୁଃଖ ନିବାରଣ ଓ ଉନ୍ନତି କଳ୍ପରେ ଚିରଜୀବନ ବ୍ୟୟ କରିଥିଲେ, ସେହି ମହାତ୍ମା ରସ୍କିନ୍ ସ୍ୱୀୟ ଜୀବନ-ବ୍ୟାପୀ ଅଭିଜ୍ଞତା ଫଳରେ ଯାହା ଲେଖି ଅଛନ୍ତି, ତାହା ନିମ୍ନରେ ଉଦ୍ଧୃତ ହେଲା—

"I have also to note the material law expressed in the proverb 'honesty is the best policy'. That proverb is wholly inapplicable to mattrs of private interest. It is not true that honesty, as far as material gain is concerned profits individuals.

A clever and cruel knave, in a mixed society, must always be richer than an honest person." ( Ruskin's Munera Pulveris )

ଏଥିରୁ ବୁଝାଯାଏ, ଯେଉଁ ସମାଜରେ ଧନବନ୍ତର ସମ୍ମାନ, ସେ ସମାଜରେ ବିଳାସ ବାହୁଲ୍ୟ, ସ୍ୱାର୍ଥପରତା ଏବଂ ହୃଦୟହୀନତାର ପ୍ରାବଲ୍ୟ । ସମାଜରେ ଧନୀଙ୍କ ସମ୍ପ୍ରଦାୟ ଚିରକାଳ ରହିଅଛନ୍ତି ଓ ରହିଥିବେ । କିନ୍ତୁ ସାମାଜିକ ଗଠନ ଏବଂ ବ୍ୟବସ୍ଥାରେ ସାମାଜିକ ଆଦର୍ଶ ଏବଂ ସମାଦରରେ ବିଦ୍ୱାନ୍‌ଙ୍କର ଆସନ ସର୍ବୋଚ୍ଚ ଦେବାହିଁ ବିଧେୟ । ବିଶେଷ ପରିତାପର ବିଷୟ ଏହି ଯେ, ଯେଉଁମାନେ ସମାଜର ଶୀର୍ଷସ୍ଥାନୀୟ, ସେହି ଶିକ୍ଷିତ ଭଦ୍ରମଣ୍ଡଳୀଙ୍କ ମଧ୍ୟରେ ପ୍ରକୃତ ଶିକ୍ଷାସମ୍ଭୂତ ବିଦ୍ୟାନୁରାଗ, ବିଷୟ ତୃଷ୍ଣା, ଇନ୍ଦ୍ରିୟ ସଂଯମ, ଚିତ୍ତଶୁଦ୍ଧି, ପର-ଦୁଃଖ-କାତରତା ପ୍ରଭୃତିକୁ ସତେଜ ଓ ସଜୀବ ନ କରି ବିଦ୍ୟାବିରାଗ, ବିଷୟ-ସ୍ପୃହା, ଇନ୍ଦ୍ରିୟ-ଲିପ୍‌ସା, ଅସତ୍ୟ ଏବଂ ଅଧର୍ମର ଆପାତ-ସୁମୋହନ-ମୂର୍ତ୍ତି ପ୍ରକଟ ଓ ପ୍ରୋଜ୍ଜ୍ୱଳ କରୁଅଛନ୍ତି ।

ସୁଖ ଓ ଆନନ୍ଦ ସମସ୍ତଙ୍କରହିଁ ଲକ୍ଷ୍ୟ, ମାତ୍ର ସେହି ସୁଖ ପନ୍ଥା ବାଛି ନେବାହିଁ କଠିନ । ମହାଜନମାନେ—ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ବୌଦ୍ଧ ପ୍ରଭୃତି ଅଭିଜ୍ଞତା ଓ ଅନ୍ତର୍ଦର୍ଶନ ଫଳରୁ କହିଅଛନ୍ତି, ସେହି ସୁଖ, ଯାହା ସକଳେ ମନୁଷ୍ୟ ଏତେ ବ୍ୟଗ୍ର ଓ ସେହି ସୁଖ ଅଧିଗମ୍ୟ—ଧନ କିମ୍ବା ପ୍ରାଚୁର୍ଯ୍ୟରେ ନୁହେଁ, ବିଳାସ ଓ ଇନ୍ଦ୍ରିୟ ପରିତୃପ୍ତିର ବିବିଧ ଆୟୋଜନରେ ନୁହେଁ,—ସେହି ସୁଖ ଓ ଆନନ୍ଦଲାଭ ହୋଇଥାଏ ବିଦ୍ୟାଚର୍ଚ୍ଚାରେ କିମ୍ବା ବ୍ରହ୍ମବିଦ୍ୟାର ଅନୁଶୀଳନରେ, ସମ୍ମିଳନ ଓ ଆଲିଙ୍ଗନରେ ସେହି ଆନନ୍ଦ ଲାଭ ହୋଇଥାଏ । ଅନ୍ତଃସମ୍ମିଳନରେ ସମାଜ ଉନ୍ନତ ଓ ଦୃଢ଼ ହୁଏ । ଆନନ୍ଦରେ ପରିପୂର୍ଣ୍ଣ ହୋଇଉଠେ । ବିଚ୍ଛେଦ, ବିଚ୍ଛିନ୍ନତା କିମ୍ବା ଛଡ଼ାଛଡ଼ିରେ ସମାଜର ଉନ୍ନତି ଆଶା ବିଡ଼ମ୍ବନା । ଇଂରାଜୀ ନୀତି ସ୍ୱର୍ଣ୍ଣାକ୍ଷରରେ କହିଅଛି—"Misery commences only when we isolate ourselves from others", ମାତ୍ର ଏହି ନୀତି ନବ୍ୟ ଇଉରୋପ ଯଥାର୍ଥରେ ଶୁଣି କାର୍ଯ୍ୟ କରୁଅଛି କି ?

[ ଉତ୍କଳ ସାହିତ୍ୟ, ୩୭ ଭାଗ, ୧ମ ସଂଖ୍ୟା ]

---

# ଦୁନିଆଁ ରୀତି ଏ

ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜ

What is friendship but a name,
A charm that lulls to sleep,
A shadow which follows wealth and fame,
But leaves the wretch to weep—?

—Cowper.

ସମ୍ପାଦକ ମହାଶୟ !

ବାର୍ଦ୍ଧକ୍ୟସୁଲଭ ସ୍ମୃତିଶକ୍ତି ହ୍ରାସଯୋଗୁଁ ଇଂରାଜ କବି କାଉପରଙ୍କ କବିତାର ପ୍ରଥମ ଓ ତୃତୀୟ ଛତ୍ର ମୋର ମନେ ଥିଲା; ଆଉ ଦୁଇ ପଦ ଜଣେ ପ୍ରବୀଣ ବନ୍ଧୁଙ୍କ ଦୟାରୁ ପାଇଲି । ମୋ ଭଳି ଜରାଜୀର୍ଣ୍ଣ ଲେଖକଙ୍କୁ କ୍ଷମା ନ ଦେଲେ ଆପଣଙ୍କ ପତ୍ରିକା ପାଇଁ ସନ୍ଦର୍ଭ ଆଶା କରିବେ ନାହିଁ ।

ଏ ସନ୍ଦର୍ଭର ଶିରୋନାମାରେ ଉଦ୍ଧୃତ ପଙ୍‌କ୍ତି ଚତୁଷ୍ଟୟର ଅନୁବାଦ —

'ବନ୍ଧୁତା' କେବଳ ଗୋଟିଏ ନାମ (ଆଭିଧାନିକ ଶବ୍ଦ) ଛଡ଼ା ଆଉ କିଛି ନୁହେଁ ଟି; ଏହି ଗାରୁଡ଼ି ମନ୍ତ୍ରରେ ଲୋକ ଭୋଳ ହୋଇ ଶୋଇ ପଡ଼େ; ଏହା ଧନର ଓ ଯଶର ଅନୁସାରିଣୀ ଛାୟାଟିଏ ସିନା, ଓ ଏଥିରେ ଭୋଳ ହେବା ହତଭାଗାର କାନ୍ଦୁ କାନ୍ଦୁ ଦିନ ସରେ ନାହିଁ ।

ଏ କବିତାରେ କବି ନିଜ ଅନୁଭୂତି ଲିପିବଦ୍ଧ କରିଛନ୍ତି ଓ ଏହା ଅଳ୍ପ ବହୁତ ସମସ୍ତେ ଅନୁଭବ କରିଥାଇଁ; କିନ୍ତୁ କର୍ମକ୍ଷେତ୍ରରେ ଏଥିପ୍ରତି ଆମର ହେଜ ରହେ ନାହିଁ । ମୋ ଜୀବନର ପ୍ରଥମ ଦଶ ବର୍ଷ ଅଣହେଜ ଅବସ୍ଥାରେ ବିତିଲା । ତା ପରେ ମୋ ହେତୁ ପାଇବା ଦିନରୁ ଆଜିକୁ ୫୭ ବର୍ଷ ହେଲା ମୁଁ ଦୁନିଆରେ ନାନାକ୍ଷେତ୍ରରେ ନାନା ପ୍ରସଙ୍ଗରେ, ନାନା ଅବସ୍ଥାରେ, ନାନା ସ୍ଥାନରେ ନାନା ପ୍ରକାରେ ଠେକିଛି; କିନ୍ତୁ ଠେକିକରି ଶିଖିନାହିଁ, ଏହା ହିଁ ଗଭୀର ଆକ୍ଷେପର ବିଷୟ । ଏହି ଦୀର୍ଘ କାଳ ମଧ୍ୟରେ ଜନ୍ମତଃ, ବିବାହତଃ, ସମାଜତଃ, କର୍ମକ୍ଷେତ୍ରତଃ, ସଂସାରତଃ, ବ୍ୟବସାୟତଃ, ସାହିତ୍ୟତଃ, ଏହିପରି ଅନେକତଃ ବହୁ ସହସ୍ର ବ୍ୟକ୍ତିଙ୍କ ସଙ୍ଗେ ମୋର 'ସାପ୍ତପଦୀନ' ଆଳାପ ପରିଚୟ ହୋଇଅଛି । ସେମାନଙ୍କ ମଧ୍ୟରୁ ବହୁଶତ ବ୍ୟକ୍ତିଙ୍କ ସଙ୍ଗେ ଆଳାପ

ପରିଚୟ ଅପେକ୍ଷା ଦୃଢ଼ତର ସମ୍ପର୍କ ହୋଇଅଛି, ସେମାନଙ୍କ ମଧ୍ୟରୁ ବନ୍ଧୁ 'କୋଡ଼ି' ବ୍ୟକ୍ତିଙ୍କ ସଙ୍ଗେ 'ବନ୍ଧୁତା' ହୋଇଅଛି, ତହିଁ ମଧ୍ୟରୁ କେତେ ଡଜନ ବ୍ୟକ୍ତିଙ୍କ ସଙ୍ଗେ ସୌହାର୍ଦ୍ଦ୍ୟ ସ୍ଥାପିତ ହୋଇଅଛି । ଏ କେତେ ଡଜନଙ୍କ ମଧ୍ୟରେ ମହାପ୍ରସାଦ ବନ୍ଧୁ ବା ପ୍ରୀତିବନ୍ଧୁ, ସଗୋତ୍ର ଓ ଅସଗୋତ୍ର ବନ୍ଧୁ, ସପିଣ୍ଡ ଓ ଅସପିଣ୍ଡ ବନ୍ଧୁ, ସମାନୋଦକ ଓ ଅସମାନୋଦକ ବନ୍ଧୁ, ସାକୁଲ୍ୟ ଓ ଅସାକୁଲ୍ୟ ବନ୍ଧୁ, ସମଧର୍ମୀ ଓ ଅସମଧର୍ମୀ ବନ୍ଧୁ, ସମକର୍ମୀ ଓ ଅସମକର୍ମୀ ବନ୍ଧୁ, ସହପାଠୀ ଓ ଅସହପାଠୀ ବନ୍ଧୁ, ସହଯୋଗୀ ଓ ଅସହଯୋଗୀ ବନ୍ଧୁ, ସମଲେଖକ ଓ ଅସମଲେଖକ ବନ୍ଧୁ, ସମପକ୍ଷ ଓ ଅସମପକ୍ଷ ବନ୍ଧୁ, ସମାନୁଭୂତ ଓ ଅସମାନୁଭୂତ ବନ୍ଧୁ, ସମଦଶାପନ୍ନ ଓ ଅସମଦଶାପନ୍ନ ବନ୍ଧୁ ଅଛନ୍ତି । ଅଛନ୍ତି ବୋଲି ନ କହି 'ଥିଲେ' ବୋଲି କହିଥିଲେ କଥାଟା ବାସ୍ତବତା ସଙ୍ଗେ କୋଳି ଖାଆନ୍ତା । ଏହି 'ସମ' ଓ 'ଅସମ' ତାଲିକାରେ 'ବିଷମ' ବିଶେଷଣ ବିଶିଷ୍ଟ ବନ୍ଧୁମାନେ ମଧ୍ୟ ଭୁକ୍ତ । ଏ ବନ୍ଧୁମାନଙ୍କ ସଙ୍ଗେ ସମ୍ପର୍କ 'ଆଭାଷଣପୂର୍ବ ସାପ୍ତପଦୀନ' ଠାରୁ ଆରମ୍ଭକରି କରମର୍ଦ୍ଦନ, ଅଙ୍ଗ ମର୍ଦ୍ଦନ, ଉତ୍ତମାଙ୍ଗ ଓ ଅଧମାଙ୍ଗାଦିରେ ତୈଳ ମର୍ଦ୍ଦନ, ଅଶ୍ଳେଷ ଚୁମ୍ବନାଦି, ଚପେଟମୁଷ୍ଟ୍ୟାଦି, କାଗଜ କଲମ, ସମାଲୋଚନ, ଡାକଘର ଜରିଆରେ ରେଜିଷ୍ଟରି, ଗଏର ରେଜିଷ୍ଟରି, ମନିଅର୍ଡର, ଇନ୍‌ସିଓର୍, ଟେଲିଗ୍ରାମ, ଟେଲିଫୋନ୍, ଗ୍ରାମଫୋନ୍, ଟକି, ସିନେମା, ପୁସ୍ତକାଦିର ମୁଦ୍ରଣ, ସମ୍ପାଦନ, ପ୍ରକାଶ ଓ ପ୍ରଚାର ଦ୍ୱାରା ଘଟିଅଛି ଓ ଘଟିଥିଲା । ଏମାନଙ୍କ ଛଡ଼ା "ଉତ୍ସବେ ବ୍ୟସନେଚୈବ ଦୁର୍ଭିକ୍ଷେ ରାଷ୍ଟ୍ରବିପ୍ଲବେ, ରାଜଦ୍ୱାରେ ଶ୍ମଶାନେଚ ଯସ୍ତିଷ୍ଠତି ସବାନ୍ଧବଃ" ଉକ୍ତି ଅନୁସାରେ ଗୁଡ଼ିଏ ବାନ୍ଧବ ମଧ୍ୟ ଜୁଟିଲେ ।

କିନ୍ତୁ "ପାପାନ୍ନିବାରୟତି ସଦୈବ ହିତେପ୍ରଯୁକ୍ତଃ
ଗୁହ୍ୟାନଗୂହତିଗୁଣାନ୍ ପ୍ରକଟୀକରୋତି
କାଲେ ଜହାତି ନ ଜହାତି ବିପତ୍ତିକାଲେ
ସନ୍ମିତ୍ରଲକ୍ଷଣମିଦଂ ପ୍ରବଦନ୍ତି ଧୀରାଃ ।"

ଅର୍ଥାତ୍ ସନ୍ମିତ୍ରର ଲକ୍ଷଣମାନ ପଣ୍ଡିତମାନେ ନିମ୍ନଲିଖିତ ଭାବରେ ପ୍ରକାଶ କରିଅଛନ୍ତି:—ପ୍ରକୃତ ମିତ୍ର ମିତ୍ରଙ୍କୁ ପାପରୁ ନିବୃତ୍ତ କରାନ୍ତି, ସର୍ବଦା ମିତ୍ରଙ୍କର ହିତସାଧନରେ ରତ ହୋଇଥାନ୍ତି, ମିତ୍ରଙ୍କର ଗୋପନୀୟ ବିଷୟମାନ ଗୋପନ ରଖନ୍ତି, ମିତ୍ରଙ୍କର ଅପ୍ରକଟିତ ଗୁଣମାନଙ୍କୁ ପ୍ରକଟିତ କରନ୍ତି, ମିତ୍ରଙ୍କ ସମ୍ପଦ କାଳରେ ପାଖରେ ରହିବାକୁ ଆଗ୍ରହାନ୍ୱିତ ହୁଅନ୍ତି ନାହିଁ କିନ୍ତୁ ମିତ୍ରଙ୍କୁ ବିପତ୍ତି ପଡ଼ିଲେ ତାଙ୍କ ପାଖେ ପାଖେ ରହନ୍ତି । ଏ କଷଟିରେ ମୋର ଗତ ୫୭ ବର୍ଷରେ ଅର୍ଜିତ ବନ୍ଧୁମାନଙ୍କ ବନ୍ଧୁତାକୁ ପରୀକ୍ଷା କଲି ବେଳକୁ ପୁଞ୍ଜିଏ ଖଣ୍ଡେ ଖାଣ୍ଟି ବନ୍ଧୁ ଧରା ପଡ଼ିଲେ ନାହିଁ । ଧନରେ (Wealth) ମୁଗ୍ଧ ହୋଇ ଯେଉଁମାନେ ମୋ ସଙ୍ଗେ ବନ୍ଧୁତା କରିଥିଲେ, ଯଶ (Fame) ବା

ପ୍ରତିପତ୍ତି ଯୋଗୁଁ ଯେ ମୋ ଆଡ଼କୁ ଆଉଜିଥିଲେ, ପଦବୀ (Position) ହେତୁ ଯେ ମୋ ସଙ୍ଗେ ବନ୍ଧୁତାର ସୂତ୍ରପାତ କରିଥିଲେ ଓ ମୋ ଦ୍ୱାରା ତାଙ୍କର ଈପ୍ସିତ ବା ଭବିଷ୍ୟତ୍ କାର୍ଯ୍ୟ ସାଧିତ ହେବା ପାଇଁ ଯେ ମୋ ସଙ୍ଗେ ବନ୍ଧୁତା ଡୋରି ଲଗାଇଥିଲେ ଓ ଯାହାଙ୍କ ମଧ୍ୟରୁ ଅଧିକାଂଶ ମୋ ମୁଣ୍ଡରେ ଜଡ଼ିଆ ଭାଙ୍ଗି ଉଖୁଡ଼ା ଖାଇଥିଲେ, ଫଳରେ ଦେଖିଲି ଯେ ସାପ ଦେହରୁ କାତି ଛାଡ଼ିଗଲା ପରି ମୋଠାରୁ ଧନ, ପ୍ରତିପତ୍ତି, ପଦବୀ, କାର୍ଯ୍ୟ ସାଧନ ଶକ୍ତି ଖସି ପଡ଼ିବା ସାଙ୍ଗେ ସାଙ୍ଗେ ସେ ବନ୍ଧୁଗୁଡ଼ିକ ଖଣ୍ଡେଦମ କେଉଁଆଡ଼େ ଉଭେଇଗଲେ । ସେତିକିରେ ଯେବେ ପାଠ ସରିଥାନ୍ତା ତେବେ ଅବଶ୍ୟ ରକ୍ଷା ହୋଇଥାନ୍ତା ଓ କବି ଲେଖି ନ ଥାନ୍ତେ, "But leaves the wretch to weep" (ହତଭାଗାର କାନ୍ଦୁ କାନ୍ଦୁ ଦିନ ସରେ ନାହିଁ) । ସଂସାରରେ ଦେଖାଯାଏ ଯେ ଅଧିକାଂଶ (ଅଧିକାଂଶ କାହିଁକି, ପନ୍ଦର ପଣ ଉଣେଇଶି ଗଣ୍ଡା ତିନି କଡ଼ା ଦୁଇ କାନ୍ତି ) ବନ୍ଧୁତା 'ହୈତୁକ' ବା କାମର ପିଆରି ବନ୍ଧୁତା । ସେ ବନ୍ଧୁତାରୁ ପନ୍ଦର ପଣ ଉଣେଇଶି ଗଣ୍ଡା ମହାପ୍ରସାଦ ବା ଖୋଦାଙ୍କ ନାମ ଉପରେ ଗଢ଼ା ହୋଇଥାଏ ସେହି ମହାପ୍ରସାଦ ବା ଖୋଦାଙ୍କ ନାମର ନିଶାରେ ମୁଁ ସେଥିମଧ୍ୟରୁ ପନ୍ଦର ପଣ ବନ୍ଧୁଙ୍କ ହାତକୁ ମୋ ବାଡ଼ି ଦୁଆରର ଗଳି କବାଟର କଞ୍ଚି ବଢ଼ାଇ ଦେଇଥିଲି; ବଢ଼ାଇ ଦେଇଥିଲି ନ କହି ମୁଁ ସେ ନିଶାରେ ଚୂର ଥିବାବେଳେ ସେମାନେ ମୋ ଅଣ୍ଟାରୁ ବା ପକେଟରୁ ସେ କଞ୍ଚି କାଢ଼ି ନେଇଥିଲେ । କାମ ସରିଲା, ବନ୍ଧୁତା ବନ୍ଧନ ହୁଗୁଳା ହୋଇଗଲା, କିନ୍ତୁ କଞ୍ଚିଟି ବନ୍ଧୁଙ୍କ ଅକ୍ତିଆରରେ ରହିଲା, ପୁଣି କେତେ ବନ୍ଧୁ ମୋଠାରୁ ଈପ୍ସିତ ଉପକାର ବା କାମ ହାସଲ କରି ସାରି ଦେଖିଲେ ଯେ ମୋ ବିପକ୍ଷଙ୍କୁ ଅନୁସରଣ କଲେ ତାଙ୍କର ଆହୁରି ଭବିଷ୍ୟତ୍ ଉପକାର ହେବ; ଅତଏବ ମୋ ବିପକ୍ଷଙ୍କ ଆଶ୍ରା ଧରି ମୋ ନାମରେ ଦୁର୍ନାମ ରଟନା, ଏମନ୍ତକି, ମୋ ବିରୁଦ୍ଧରେ ଧର୍ମାଧିକରଣରେ, ସମାଜର ଇଜଲାସରେ ସାକ୍ଷ୍ୟ ଦେବାକୁ କୁଣ୍ଠିତ ହେଲେ ନାହିଁ । ଥରେ ମହାତ୍ମା ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ ଆସି ଜଣେ କହିଲେ— "ଅମୁକ ଆପଣଙ୍କ ନାମରେ ଭାରି ଦୁର୍ନାମ ରଟନା କରୁଛନ୍ତି ।" ମହାପୁରୁଷ ଏହା ଶୁଣି ଟିକିଏ ଗୁମ୍ ମାରି ବସିଗଲେ । ରିପୋର୍ଟକାରୀ ଏହି ତୁଷ୍ଣୀ ଭାବର କାରଣ ପଚାରିବାରୁ ଈଶ୍ୱରଚନ୍ଦ୍ର କହିଲେ — ମହାଶୟଙ୍କର ମୁଁ କେବେ କୌଣସି ଉପକାର କରିଛି କି ନାହିଁ ଏହି କଥାର ହିସାବ କରୁଥିଲି । ମୁଁ ତାଙ୍କର କେବେ କିଛି ଉପକାର କରିଛି ବୋଲି ମୋର ସ୍ମରଣ ହେଉନାହିଁ ; ଏପରି ଅବସ୍ଥାରେ ସେ କାହିଁକି ମୋ ଦୁର୍ନାମ କରିବାରେ ମାତିଛନ୍ତି, ମୁଁ ବୁଝି ପାରୁ ନାହିଁ ।" ଫଳରେ ମଧ୍ୟ ଦେଖାଯାଏ ଯେ ବହୁ ସ୍ଥଳରେ ତୁମେ ଯାହାଙ୍କ ଉପକାର କରିଥାଅ, ଯେ ତୁମ ଅନ୍ନରେ ପ୍ରତିପାଳିତ, ଯେ ତୁମ ସ୍ୱାର୍ଥତ୍ୟାଗ ଓ ପରିଶ୍ରମ ଫଳରେ 'ମଣିଷ' ହୋଇଛନ୍ତି, ଯେ ତୁମ ରକ୍ତରେ ଗଢ଼ା ସେହି ପୁଣି ତୁମର କଠୋର ଦୁଶ୍ମନ ହୋଇ ଠିଆ ହୁଅନ୍ତି । ଏଥିରେ ମନୋଜ୍ଞାନାନୁମୋଦିତ ସତ୍ୟ ନିହିତ ଅଛି, ଯାହାଙ୍କର ମୁଁ ଉପକାର କରେଁ ସେ ଜାଣନ୍ତି ଯେ ଏହି

ଉପକାରର ବଦଳରେ ପ୍ରତ୍ୟୁପକାର ବା ଅନ୍ତତଃ କୃତଜ୍ଞତା ତାଙ୍କଠାରୁ ମୋର ଧର୍ମତଃ ପ୍ରାପ୍ୟ ଅଟେ ଓ ସେ ପାଉଣା ପରିଶୋଧ କରିବାକୁ ସେ ବାଧ୍ୟ ଅଟନ୍ତି । ଏହି 'ବାଧ୍ୟବାଧକତା' ହିଁ ସଂସାରରେ ବହୁ ଅନର୍ଥର ମୂଳ । ଆପଣ ସ୍ୱଇଚ୍ଛାରେ ଦଶ ଟଙ୍କା କାହାକୁ ଦାନ ବା ସାହାଯ୍ୟ କରିବେ, ସେ କଥା କଷ୍ଟପ୍ରଦ ହେବ ନାହିଁ, କିନ୍ତୁ ଜଣେ ଆସି କହନ୍ତୁ ଯେ ଆପଣ ମୋତେ ଟଙ୍କାଏ ଦେବାକୁ ବାଧ୍ୟ ଅଟନ୍ତି, ତେବେ ଦେଖିବେ ତତ୍କ୍ଷଣାତ୍ ମନ ଏ ଟଙ୍କାଟିଏ ଦେବାପାଇଁ ବିଦ୍ରୋହୀ ହୋଇ ଉଠିବ ! ଆପଣଙ୍କଠାରୁ 'ଚାନ୍ଦା' ବା 'ଭିକ୍ଷା' ରୂପେ ଦଶ ଟଙ୍କା ଆଦାୟ ହେଉ, ତାହା ବାଧିବ ନାହିଁ, କିନ୍ତୁ ବାଧ୍ୟ ବାଧକତା ରୂପେ ଟଙ୍କାଟିଏ ଉପରେ 'ଟାକ' ବସାଣ ହେଉ, ଦେଖିବେ ମନ ତତ୍ପ୍ରତି ବିଦ୍ରୋହୀ ହୋଇ ଉଠିବ । ଅତଏବ ବିପଦ ପଡ଼ିବା ସମୟରେ ଆପଣ ଦେଖିବେ ଯେ ଆପଣ କେବେ ଯାହାଙ୍କର ଟିକିଏ ଉପକାର କରି ନାହାନ୍ତି, କିମ୍ବା ଯେ ଆପଣଙ୍କୁ ସାହାଯ୍ୟ କରିବେ ବୋଲି ସ୍ୱପ୍ନରେ ସୁଦ୍ଧା ଭାବି ନାହାନ୍ତି, ସେ ସ୍ୱତଃ ପ୍ରଣୋଦିତ ହୋଇ ବିପଦରୁ ଉଦ୍ଧାର କରିବାକୁ ଆସି ପହଞ୍ଚି ଯିବେ; କିନ୍ତୁ ଆପଣଙ୍କ ଉପକାରର ପ୍ରତି-ଉପକାରରେ ସେ ସାହାଯ୍ୟ କରିବାକୁ ଧର୍ମତଃ ବାଧ୍ୟ ସେ ଦେଖାଦେବେ, ବରଞ୍ଚ ଆପଣଙ୍କୁ ଅଡ଼ୁଆରେ ପଡ଼ିଥିବା ଦେଖି ସେ ଠେଙ୍ଗୁଟିଏ ସେହିକବେଳେ ଅଣ୍ଟରେ ଠକ୍ ଠକ୍ କରି ହାଣି ଦେବେ । ମୁଁ ୫୭ ବର୍ଷର ଅନୁଭବରେ ଏହାହିଁ ଅଧିକାଂଶ କ୍ଷେତ୍ରରେ ଅଙ୍ଗେ ନିଭେଇଛି । ସେଥିପାଇଁ ମହାଜନମାନେ କହିଛନ୍ତି ଫଳର କାମନା ନ ରଖି, ପ୍ରତ୍ୟୁପକାରର ଆଶା ନ କରି, ପରିଶୋଧ ପାଇବାର ଇଚ୍ଛା ନ କରି ପବିତ୍ର କର୍ତ୍ତବ୍ୟ ଜ୍ଞାନରେ ପରର ଉପକାର କରିଯାଅ । ଯେଉଁଠାରେ ଫଳର ଆଶା ରଖି ପରୋପକାର ବା ବନ୍ଧୁତା କରିବ ସେଠାରେ ନିଶ୍ଚେ ଚୋଟ ପାଇବ; ତେବେ ସଂସାରରେ 'ନିଃସ୍ୱାର୍ଥ ବନ୍ଧୁତା' ନାହିଁ ବୋଲି ମୁଁ କହୁ ନାହିଁ । କିନ୍ତୁ ଏ ନିଃସ୍ୱାର୍ଥ ଓ ଅହେତୁକୀ ବନ୍ଧୁତା, ଫଳ-କାମନା-ବିରହିତ ପରୋପକାର ସଂସାରରେ ବିରଳ, ଇଂରାଜୀରେ ପ୍ରବଚନ ଅଛି, 'A friend in need is a friend indeed.' ଆବଶ୍ୟକତା ବା ବିପଦବେଳେ ବନ୍ଧୁ ପ୍ରକୃତ ବନ୍ଧୁ ପଦବାଚ୍ୟ, ନଚେତ୍ ଦୃଢ଼ ରକ୍ତ ସମ୍ପର୍କ, ଦୃଢ଼ କର୍ମ ସମ୍ପର୍କ-ଆଧାରିତ ବନ୍ଧୁତାକୁ ବନ୍ଧୁତା ବୋଲିଯାଇ ନପାରେ । ଅଫଳପ୍ରେପ୍ସୁ ବନ୍ଧୁ, ପ୍ରକୃତ ବନ୍ଧୁ । ଏଥିପାଇଁ ଭଗବାନଙ୍କୁ 'ଦୀନବନ୍ଧୁ' ନାମ ଦିଆ ଯାଇଛି । ଏକା ସେହି ବନ୍ଧୁ ପଦବାଚ୍ୟ । ଅନ୍ୟ ସବୁ ବନ୍ଧୁତା 'ଦେଖା-ସୁନ୍ଦର କଖାରୁ ବଣ୍ଡି' । ଅନ୍ୟ ସବୁ ବନ୍ଧୁତା କାମର ପିଆରି, ନାମର ପିଆରି, ଦାମର ପିଆରି । ଏ ସନ୍ଦର୍ଭର ଶିରୋନାମରେ ଉଦ୍ଧୃତ ପଙ୍କ୍ତିରେ ଯେବେ କବି ବନ୍ଧୁତାକୁ କେବଳ ଧନର ଯଶର ଅନୁସାରିଣୀ ଭ୍ରୁଷ୍ଟା ନ ଲେଖି ତା ସଙ୍ଗେ ଯେବେ ପଦବୀ ( position ), ଆବଶ୍ୟକତା ( necessity ), ପ୍ରଭୁତ୍ୱ ( mastership ) ଯୋଡ଼ି ଥାଆନ୍ତେ ତେବେ କବିତାଟି ବାସ୍ତବତା ଧରେଁ ଆହୁରି ବେଶି ଖାପ ଖାଇ ଥାଆନ୍ତା । ଯେଉଁ ପଦବୀରେ ରହି ସେ ବହୁ ଲୋକଙ୍କ ଉପକାର

କରି ପାରିବ, ବନ୍ଧୁ ଲୋକଙ୍କୁ ସଜାଇ ପାରିବ, ବନ୍ଧୁ ଲୋକଙ୍କ ଉପରେ ଅଧିକାର ଜମାଇ ପାରିବ, ବନ୍ଧୁ ଲୋକଙ୍କ ଗୋଡ଼ ଓ ଗଳା କାଟି ପାରିବ ସେପରି ଗୋଟିଏ ପଦବୀରେ ତୁମେ ପାଦଦେବା ମାତ୍ରକେ ଦେଖିବ ଯେ 'ବନ୍ଧୁ' ଜନ ପଙ୍ଗପାଳ ଭଳି ମାଡ଼ି ଆସିବେ; କିଏ ତୁମ ପାଦରେ ତାଙ୍କର ଧନ-ଜନ-ଗୋପ-ଲକ୍ଷ୍ମୀ ଢାଳି ଦେବାକୁ ବସିବେ, କିଏ ତୁମ ହାତରେ ତାଙ୍କ ଜାନ୍-ଅସ୍ଥାନ ସଁପି ଦେବେ, କିଏ ତାଙ୍କ ଇଜ୍ଜତ ହୁରମତ ତୁମ ଆଗରେ ଅଜାଡ଼ି ଦେବେ । ଇହ ଲୋକର କଥା ଗୋଧୋଇ ଯାଉ କେହି କେହି ତାଙ୍କର ପାରଲୌକିକ ଆଶାକୁ ମଧ୍ୟ ତୁମ ପାଇଁ ଜଳାଞ୍ଜଳି ଦେବାକୁ ତିଆରି ଅଛନ୍ତି ବୋଲି କହିବେ ଓ ତୁମର ଲୋଡ଼ା ହେଲେ ବାଘ-ଦୁଧ, ପିମ୍ପୁଡ଼ି ରକ୍ତ, ପୋତକର ପିତ୍ତ, ଆକାଶ କଇଁ, ନିର୍ମୂଳି ମୂଳ, ସାପ ଗୋଡ଼, ବେଙ୍ଗ ଜିଭ ଆଣିବାକୁ ବାହାରି ପଡ଼ିବେ । କିନ୍ତୁ ଈଶ୍ୱରଙ୍କ ଦୟାରୁ ହେଉ ବା ଦୈବଅନୁଗ୍ରହରୁ ହେଉ ତୁମେ ସେ ପଦରୁ ଯେଉଁ ଦିନ ଖସିବ, ତହିଁ ଆରଦିନ କୁଆ କାଆ କାଆ ନ କରୁଣୁ ତୁମର 'ପଦାଧିଷ୍ଠାନ'ଜନିତ ବନ୍ଧୁ ଯାକ ସମସ୍ତେ ଭଙ୍ଗା ପଡ଼ିଯିବେ ଓ କେତେକ ପୁଣି ତୁମ ବିରୁଦ୍ଧରେ ହତିଆର ଧରି ଠିଆ ହୋଇଯିବେ ଓ ତୁମ ବିପକ୍ଷଙ୍କର ବା ଶତ୍ରୁଙ୍କର ଲୋଡ଼ା ହେଲେ ତୁମଠାରେ ଗୋଇଠ ଲଗାଇବାକୁ, ତୁମ ଶ୍ରୀଅଙ୍ଗରେ ପାହୁଡ଼ ଲଗାଇବାକୁ କୁଣ୍ଠିତ ହେବେ ନାହିଁ । ଯାହାଙ୍କ ସଙ୍ଗେ କାଲି 'ଜଡ଼ାତେଲ ମେଣ୍ଢାବାଳ' ସମ୍ପର୍କ ଥିଲା ଆଜି ତାଙ୍କ ସଙ୍ଗେ 'ହୋଠ ନଥିଁ' ସମ୍ପର୍କ ଉପୁଜିବ—ଓ ତୁମ ବାଡ଼ି ଦୁଆରର କଣ୍ଟି ତୁମ ପ୍ରତିଦ୍ୱନ୍ଦ୍ୱୀ ବା ଶତ୍ରୁଙ୍କ ହାତରେ ପଡ଼ିବାକ୍ଷଣି ତାପରେ ଲାଗିବ ବନ୍ଧୁ ବନ୍ଧୁଙ୍କ ମଧ୍ୟରେ ଠିରାଠିରି, ଡରାଡରି, ଥରାଥରି, ଧରାଧରି, ପରାପରି, ମରାମରି, ସରାସରି ଓ ଶେଷକୁ ହରାହରି । 'ଆଜି ଯେ ବନ୍ଧୁ ତାସନେ କାଲି ସେ ଅରାତି' ପାଲଟିବେ—, ବାହାର ଘରେ ମିରଗର ନାଟ ଲାଗିଥିବ ଓ ତୁମେ ଆମେ ବଳି ବଳି କରି ଚାହିଁ ଜଳକା ବନି ଚାହିଁ ଥିବା, ଆଜି ଏତିକି !

[ଭଞ୍ଜ ପ୍ରଦୀପ, ୧୧ଶ ବର୍ଷ, ୧ମ ସଂଖ୍ୟା]

# ପ୍ରାଚୀନ ଯାଜପୁର

ଶ୍ରୀ ବନ୍ମାକ୍ଷ ନନ୍ଦ (ଯାଜପୁର)

ଯାଜପୁର ସବ୍‌ଡିଭିଜନର ହେଡ୍‌କ୍ୱାର୍ଟର ବା ରାଜଧାନୀ ଯାଜପୁର । ଏଠାରେ ସରକାରୀ ଓ ବେସରକାରୀ ନାନାବିଧ କଚେରି, ଅଫିସ ଓ ଅନୁଷ୍ଠାନମାନ ଅଛି । ଆଜି ଲୋକେ ଏହି ଭାବରେ ଏହାକୁ ଜାଣନ୍ତି । କିନ୍ତୁ ଓଡ଼ିଶା ଇତିହାସରେ ଏହାର ସ୍ଥାନ କେଉଁଠି, ଅଧିକାଂଶ ସମ୍ଭବତଃ ଜାଣନ୍ତି ନାହିଁ ।

ବିରଜା ଯାଜପୁରର ଅଧିଷ୍ଠାତ୍ରୀ ଦେବୀ । ସେଥିପାଇଁ ଏହାକୁ ବିରଜାକ୍ଷେତ୍ର କୁହାଯାଏ । ପ୍ରାଚୀନ ସ୍ଥାପତ୍ୟ-ବହୁଳ ନ ହେଲେହେଁ ଏ ସ୍ଥାନଟି ଓଡ଼ିଶା ତଥା ଭାରତରେ ହକେ ଗୋଟିଏ ପ୍ରାଚୀନ କୀର୍ତ୍ତି । ପ୍ରାକ୍ ବୌଦ୍ଧଯୁଗର ସାହିତ୍ୟରେ ଏହାର ନାମୋଲ୍ଲେଖ ନାହିଁ । ବୌଦ୍ଧ-ସାହିତ୍ୟରେ ମଧ୍ୟ ଏହାର ନିର୍ଦ୍ଦିଷ୍ଟ ଉଲ୍ଲେଖ ଦେଖାଯାଏ ନାହିଁ । ତଥାପି ଅଧୁନା ଗୋଚରୀଭୂତ ସ୍ଥାପତ୍ୟ ଓ ଐତିହାସିକ ଧାରାରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଏହା ଗୋଟିଏ ଅତି ପ୍ରାଚୀନ ପୀଠ ।

ବୌଦ୍ଧ ଓ ଜୈନ ଧର୍ମମତ ଉତ୍ତରାଞ୍ଚଳରୁ କେନ୍ଦୁଝର ଓ ମୟୂରଭଞ୍ଜର ଅରଣ୍ୟ ପଥରେ ଦକ୍ଷିଣ-ପୂର୍ବାଞ୍ଚଳରେ ପ୍ରବେଶ କରି ପୂର୍ବ ଉପକୂଳ ଦେଇ ଦକ୍ଷିଣକୁ ବ୍ୟାପିଥିଲା । ଉକ୍ତ ଅରଣ୍ୟାଞ୍ଚଳ ଓ ଯାଜପୁର, ରତ୍ନଗିରି, ଉଦୟଗିରି, ଲଳିତଗିରି, ଖଣ୍ଡଗିରି, ଧଉଳି ଓ ଜଉଗଡ଼ ଆଦି ଏହି ମତ ସ୍ରୋତର ପଥରେ ଅଗ୍ରପଶ୍ଚାତ୍ ଅବସ୍ଥିତ । ତେଣୁ ଏହିସବୁ ସ୍ଥାନରେ ପ୍ରାଚୀନ ବୌଦ୍ଧ ଓ ଜୈନ ମୂର୍ତ୍ତି, ସ୍ତୂପ, ଗୁହା ଓ ଅନୁଶାସନ ଆଦି ବହୁ ପରିମାଣରେ ଦେଖାଯାଏ । ପ୍ରତ୍ନତତ୍ତ୍ୱ ବିଭାଗର ଯତ୍ନରେ ଆଜି ଯାଜପୁର ସବ୍‌ଡିଭିଜନ ଅନ୍ତର୍ଗତ ରତ୍ନଗିରି, ଉଦୟଗିରି ଓ ଲଳିତଗିରିର ମାଟିତଳୁ ଯେଉଁ ପ୍ରାଚୀନ କୀର୍ତ୍ତି-ସମ୍ପଦମାନ ମିଳୁଅଛି, ତାହା ଇତିହାସରେ ନୂତନ ଅଧ୍ୟାୟ ସୃଷ୍ଟି କରିଅଛି । ସୁଦୂର ଚୀନ ଓ ଜାପାନ ପ୍ରଭୃତି ଦେଶର ପଣ୍ଡିତମାନେ ଆସି ଏହି ମୂକ-ଇତିହାସ ପାଠକରୁଅଛନ୍ତି ।

ଅବଶ୍ୟ ଯାଜପୁର ସହର ବା ବିରଜାକ୍ଷେତ୍ର ମଧ୍ୟରେ ସେ ଯୁଗର ବହୁଳ ପ୍ରାଚୀନ କୀର୍ତ୍ତି ଦେଖାଯାଏ ନାହିଁ । ତାହାର ଯଥେଷ୍ଟ ଐତିହାସିକ କାରଣ ମଧ୍ୟ ଅଛି । କିନ୍ତୁ ଯେ କେତେକ ପ୍ରାଚୀନ ସ୍ଥାପତ୍ୟ ବିଦ୍ୟମାନ ଅଛି, ତାହା ବିଭିନ୍ନ ଯୁଗର ବିଭିନ୍ନ ଭାବଧାରାର ପ୍ରତୀକ । ବୌଦ୍ଧ ଓ ଜୈନ ମୂର୍ତ୍ତିମାନ କାହିଁ ଜଙ୍ଗଲ ମଧ୍ୟରେ, କାହିଁ ବା

ଶସ୍ୟକ୍ଷେତ୍ରରେ ପଡ଼ି ରହିଅଛି; କେଉଁଠାରେ ବୃକ୍ଷମୂଳରେ ଅଥବା ଅଯତ୍ନ ନିର୍ମିତ ପୀଠ ଉପରେ ରଖାଯାଇ ଘୃତ-ସିନ୍ଦୂର-ଚର୍ଚ୍ଚିତ ହୋଇ ଗ୍ରାମଦେବୀ ସ୍ୱରୂପ ପୂଜିତ ହେଉଅଛନ୍ତି । ସ୍ଥାନେ ସ୍ଥାନେ ଖୋଦିତ ପତ୍ର, ପୁଷ୍ପ ଓ ନାନାବିଧ ଜୀବଜନ୍ତୁସମନ୍ୱିତ ଭଗ୍ନ ପ୍ରସ୍ତର ଖଣ୍ଡମାନ ପରିଲକ୍ଷିତ ହେଉଅଛି । ସେ ସବୁର ପରିକଳ୍ପନା ଓ ଖୋଦନ ରୀତି ବୌଦ୍ଧ ଯୁଗର ସ୍ଥାପତ୍ୟ ସଦୃଶ । ସବ୍‌ଡିଭିଜନାଲ ଅଫିସରଙ୍କ ହତା ମଧ୍ୟରେ ପ୍ରତ୍ନତତ୍ତ୍ୱ ବିଭାଗଦ୍ୱାରା ସଂରକ୍ଷିତ ପ୍ରକାଣ୍ଡ ପ୍ରସ୍ତରମୂର୍ତ୍ତି, ଯାହାକୁ ଲୋକ ମୁଖରେ ପୁରାଣ ଯୁଗର ଗୟାସୁର ନାମ ଦିଆଯାଇଅଛି, ତାହା ଏବଂବିଧ ଗୋଟିଏ ବୌଦ୍ଧମୂର୍ତ୍ତି । ସ୍ପଷ୍ଟ ଜଣାଯାଏ ଯେ ସାରା ଭାରତବର୍ଷ ପରି ଉତ୍କଳରେ ମଧ୍ୟ ପ୍ରସ୍ତର ସ୍ଥାପତ୍ୟ ବୌଦ୍ଧ ଓ ଜୈନ ଧର୍ମର ଏକ ଅଙ୍ଗ ସ୍ୱରୂପ ହୋଇଥିଲା । ମହାତ୍ମା ବୁଦ୍ଧ ଓ ମହାବୀରଙ୍କ ନିର୍ବାଣ ପରେ ପ୍ରସ୍ତର ଦେହରେ ନାନା ଦୃଶ୍ୟ, ଦେବଦେବୀ, ଜୀବଜନ୍ତୁ ଓ ବୃକ୍ଷଲତାଦିର ଅଙ୍କନ ଓ ଖୋଦନ ଶିକ୍ଷା ଧର୍ମକାର୍ଯ୍ୟ ମଧ୍ୟରେ ପରିଗଣିତ ହେଉଥିଲା । ଏହାହିଁ ବୌଦ୍ଧ ଓ ଜୈନ ଯୁଗରେ ପ୍ରସ୍ତର ସ୍ଥାପତ୍ୟର ବହୁଳତାର କାରଣ । ଉତ୍କଳରେ ଏହି ସ୍ଥାପତ୍ୟ ପରବର୍ତ୍ତୀ ଯୁଗର ପୋଷକତା ଦ୍ୱାରା ପରିପୁଷ୍ଟ ଓ ପରିବର୍ଦ୍ଧିତ ହୋଇ ପରିଶେଷରେ କୋଣାର୍କ ମନ୍ଦିର ଆକାରରେ ଫଳପୁଷ୍ପ ଧାରଣ କରିଥିଲା ।

ଖାରବେଳ ଓ ଅଶୋକ ଆଦି ବୌଦ୍ଧ ସମ୍ରାଟମାନଙ୍କ ତିରୋଧାନ ପରେ ଉତ୍କଳ ତଥା ଭାରତବର୍ଷରେ ବୌଦ୍ଧ ଓ ଜୈନଧର୍ମ କ୍ରମଶଃ ଦୁର୍ବଳ ହୋଇପଡ଼ିଲା । ସେତେବେଳେ ମାତ୍ର ଥିଲା, ରାଜାନୁଗତ ଧର୍ମ । ସମୁଦ୍ର ଗୁପ୍ତ ଓ ହର୍ଷବର୍ଦ୍ଧନଙ୍କ ପରି ବୈଦିକ ଧର୍ମାବଲମ୍ବୀ ପରାକ୍ରମୀ ସମ୍ରାଟମାନଙ୍କ ଆନୁକୂଲ୍ୟରେ ବୈଦିକ ଧର୍ମ ପୁନଃ ପ୍ରତିଷ୍ଠିତ ହୋଇଥିଲା । ଉତ୍କଳ ମଧ୍ୟ ଏହି ପୁନଃ ପ୍ରବାହିତ ଧର୍ମସ୍ରୋତକୁ ଏଡ଼ି ପାରିନଥିଲା । ବୈଦିକମାନେ ବୌଦ୍ଧ ଓ ଜୈନଧର୍ମର ଦେବ ଦେବୀ ଓ ରୀତି ନୀତି ଆଦିକୁ ନାନା କୌଶଳରେ ସ୍ୱ ପନ୍ଥାର ଅଙ୍ଗୀଭୂତ କରି ବିରୁଦ୍ଧ ଧର୍ମ ମତର ସତ୍ତା ଲୋପ କରିବାକୁ ଉଦ୍ୟତ ହୋଇଥିଲେ । ଏଭଳି ପରିସ୍ଥିତି ମଧ୍ୟରେ ମହାକୋଶଳର ଗୁପ୍ତବଂଶୀୟ ଜଣେ ରାଜପୁତ୍ର ବୈଦିକ ପନ୍ଥାର ଅବଲମ୍ବନରେ ଉତ୍କଳରେ ରାଜ୍ୟ ସ୍ଥାପନ କରିବାର ସୁବିଧା ଦେଖି ଉତ୍ତର-ପଶ୍ଚିମାଞ୍ଚଳ ବାଟେ ଉତ୍କଳରେ ପ୍ରବେଶ କରିଥିଲେ । ତାଙ୍କର ନାମ ଶିବଗୁପ୍ତ । ଶିବଗୁପ୍ତ ସିଂହବିକ୍ରମରେ ବ୍ରାହ୍ମଣମାନଙ୍କ ସାହାଯ୍ୟରେ ଉତ୍କଳରେ ବୌଦ୍ଧ ଓ ଜୈନ ଧର୍ମକୁ ବିଚ୍ଛିନ୍ନ କରି . ବୈଦିକ ଯୁଗର ପୁନଃ ପ୍ରତିଷ୍ଠା କରିବା ପାଇଁ ବ୍ରତୀ ହୋଇଥିଲେ ।

ସେତେବେଳେ ତନ୍ତ୍ର ବା ଅନ୍ୟ ଧର୍ମମତ ଉତ୍କଳରେ ପ୍ରବେଶ କରିବାର ଏକମାତ୍ର ପଥ ଥିଲା ଉତ୍ତର-ପଶ୍ଚିମ ପାର୍ବତ୍ୟ ଅଞ୍ଚଳ ଏବଂ ଉତ୍କଳର ଉପକୂଳବର୍ତ୍ତୀ ଅଞ୍ଚଳରେ ନୂତନ-ତନ୍ତ୍ର ବା ଧର୍ମମତର ଗତି ପଥରେ ପ୍ରଥମେ ଅବସ୍ଥିତ ଥିଲା

ଯାଜପୁର । ତେଣୁ ଶିବଗୁପ୍ତ ଏହି ଯାଜପୁରକୁ ନିଜ ରାଜ୍ୟର ରାଜଧାନୀ କରି ପୁନଃ ପ୍ରତିଷ୍ଠିତ ବୈଦିକ ଧର୍ମର କେନ୍ଦ୍ର ସ୍ଥଳରେ ପରିଣତ କରିଥିଲେ । ସେହିଦିନୁ ଯାଜପୁର ଭାରତରେ ଓ ଶାସ୍ତ୍ରପୁରାଣ ଆଦିରେ ଖ୍ୟାତି ଲାଭ କରିଥିଲା । ଶିବଗୁପ୍ତ ଉତ୍ତର ଭାରତରୁ ଗୁଡ଼ିଏ ନୈଷ୍ଠିକ ଯାଜ୍ଞିକ ବ୍ରାହ୍ମଣ ଅଣାଇ ଏହିଠାରେ ଦଶାଶ୍ୱମେଧ ଯଜ୍ଞ କରାଇଥିଲେ । ତହିଁର ସ୍ମୃତି ଚିହ୍ନ ସ୍ୱରୂପ ବୈତରଣୀ ନଦୀ ତଟରେ ପ୍ରସ୍ତରରେ ଦଶାଶ୍ୱମେଧ ଘାଟ ଓ ଆଖଣ୍ଡଳେଶ୍ୱର ନାମରେ ଶିବଲିଙ୍ଗ ସ୍ଥାପନ କରିଥିଲେ । ଏହି ଶିବ ଲିଙ୍ଗକୁ ଇନ୍ଦ୍ର ଆଖଣ୍ଡଳ କୁହାଯାଏ । ଇନ୍ଦ୍ରଙ୍କର ଅନ୍ୟ ନାମ ଆଖଣ୍ଡଳ । କଥିତ ଅଛି, ସ୍ୱୟଂ ଇନ୍ଦ୍ର ବ୍ରହ୍ମାଙ୍କ ଆଜ୍ଞା ଯଜ୍ଞ ସମାପନ କରି ଏହି ଶିବଲିଙ୍ଗ ସ୍ଥାପନ କରିଥିଲେ । ବହୁ ବ୍ରାହ୍ମଣ ସମାବେଶରେ ଯଜ୍ଞାନୁଷ୍ଠାନ ଓ ସ୍ମୃତିଚିହ୍ନ ସ୍ଥାପନ ଏହି କିମ୍ବଦନ୍ତୀର ଏକ ମାତ୍ର ତାତ୍ପର୍ଯ୍ୟ ବୋଲି ମନେ ହୁଏ ।

ଯାଜପୁର ଏକ ବ୍ରାହ୍ମଣ ବହୁଳ ସ୍ଥାନ । ଏମାନେ ପ୍ରାୟ ସମସ୍ତେ ବାଇଦେଲି ବୃତ୍ତିଭୋଗୀ । ଏମାନଙ୍କର ଯେ କେତୋଟି ପ୍ରାଚୀନ ବାସ୍ତୁ ଭୂମି ଅକ୍ଷତ ଅବସ୍ଥାରେ ଅଛି, ତାହାର ନିମ୍ନଦେଶ ସୁବିଶାଳ ବଉଳମାଳା ପ୍ରସ୍ତରର ଚଟାଣ ଓ ପ୍ରାଚୀର ଆଦିରେ ପରିପୂର୍ଣ୍ଣ । ଏଠାରେ ଅନେକ ସ୍ଥାନ ଅଛି, ଯାହା ଖୋଳିଲେ ବଉଳମାଳା ପ୍ରସ୍ତର ନିର୍ମିତ ସୁବିସ୍ତୃତ ଚଟାଣ ଓ ପ୍ରାଚୀର ଆଦି ଦେଖାଯାଏ । ବୈତରଣୀ ନଦୀ ତୀରରେ ବନ୍ଧ ପ୍ରସ୍ତୁତ ହେବା ପୂର୍ବେ ଏହା ଉପରେ ବନ୍ୟାସ୍ରୋତ ପ୍ରବାହିତ ହେଉ-ଥିଲା । ସୁତରାଂ ପ୍ରାକୃତିକ କାରଣରେ ଏହାର ପ୍ରାଚୀନତାର ବହୁ ଚିହ୍ନ ପୋତିହୋଇ ପଡ଼ିଥିବା ଅସମ୍ଭବ ନୁହେଁ । ଦଶାଶ୍ୱମେଧ ଘାଟର ଅଧିକାଂଶ ବାଲୁକା ଗର୍ଭଗତ ହୋଇଅଛି । ଅସ୍ଥାନ ସ୍ଥାନରେ ବହୁ ଶିବ ଲିଙ୍ଗ ଏଠାରେ ଦେଖାଯାଏ । ଶିବଗୁପ୍ତ ଏହି ସ୍ଥାନକୁ କେନ୍ଦ୍ର କରି ବହୁ ଯାଜ୍ଞିକ ବ୍ରାହ୍ମଣ ଅଣାଇ ଏକାଧିକ ବୈଦିକ ଯଜ୍ଞ କରି ଓ କରାଇ ଏହିଠାରୁ ଉତ୍କଳରେ ବୈଦିକ ଧର୍ମପନ୍ଥାର ପୁନଃ ପ୍ରଚଳନ କରାଇ ପୁରାଣ ପ୍ରସିଦ୍ଧ ଯାଜ୍ଞିକ ରାଜା ଯଯାତିଙ୍କର ନାମାନୁସାରେ ନିଜକୁ ଯଯାତି ଉପାଧିରେ ଭୂଷିତ କରିଥିଲେ । ବୌଦ୍ଧଧର୍ମ ମତରେ ହାତୀ ଓ ସିଂହ ଯଥାକ୍ରମେ ପୂର୍ବ ଓ ଉତ୍ତର ଦିଗର ରକ୍ଷକ । ତେଣୁ ଯଯାତି ଉତ୍ତରରୁ ଆସି ପୂର୍ବଦେଶ ଅର୍ଥାତ୍ ଉତ୍କଳ ଜୟକରି ଧର୍ମ ପ୍ରଚାର କରିଥିବାରୁ ଉତ୍କଳୀୟ ସ୍ଥପତିରେ ଦିଗ୍‌ବିଜୟର ନିଦର୍ଶନ ସ୍ୱରୂପ ଗଜସିଂହ ବା ହାତୀ ଉପରେ ସିଂହ ମୂର୍ତ୍ତି ସର୍ବତ୍ର ଦେଖାଯାଏ । ସେହିଦିନୁ ଯଯାତି ବା ଶିବଗୁପ୍ତଙ୍କର ବଂଶ ଉତ୍କଳରେ କେଶରୀ ବଂଶ ନାମରେ ଅଭିହିତ ।

ଯଯାତି ଯାଜପୁରର ପ୍ରତିଷ୍ଠାତା ଓ ନିର୍ମାତା । ଯାଜପୁରକୁ ସେ ଭାରତର ଦ୍ୱିତୀୟ ବାରାଣସୀ କରି ଗଢ଼ିଥିଲେ । ତାଙ୍କର ବୈତରଣୀ ଗଙ୍ଗା, ତାଙ୍କର ଆଖଣ୍ଡଳେଶ୍ୱର ବିଶ୍ୱନାଥ ଓ ତାଙ୍କର ଦଶାଶ୍ୱମେଧ ଘାଟ ବାରାଣସୀର ଦଶାଶ୍ୱମେଧ

ଯାଏ । ତାଙ୍କର କୀର୍ତ୍ତି ଫଳରେ ବୈତରଣୀ ସ୍ନାନ ଓ ଆଖଣ୍ଡଳେଶ୍ୱର ଦର୍ଶନ ଗଙ୍ଗାସ୍ନାନ ଓ ବିଶ୍ୱନାଥ ଦର୍ଶନ ସମାନ ଅନୁସୃତ ହେଉଥିଲା ଓ ହେଉଅଛି । ଯଯାତି ନିଜର ଏହି କୀର୍ତ୍ତିକେନ୍ଦ୍ର ଯାଜପୁରରୁ ବ୍ରାହ୍ମଣ ପଣ୍ଡିତମାନଙ୍କ ସାହାଯ୍ୟରେ ଧର୍ମ ଓ ସମାଜର ନିୟନ୍ତ୍ରଣ ଓ ରାଜ୍ୟ ଶାସନ କରୁଥିଲେ । କେଶରୀବଂଶୀୟ ରାଜାମାନଙ୍କ ତାମ୍ରଶାସନରେ 'ମହାସାନ୍ଧି ବିଗ୍ରହିକ (Minister of peace and war) ଉପାଧି ଦେଖାଯାଏ । ଉତ୍କଳରେ କେବଳ ଯାଜପୁରର କେତେକ ପ୍ରାଚୀନ ବ୍ରାହ୍ମଣ ବଂଶରେ 'ସନ୍ଧିବିଗ୍ରହି' ଉପାଧି ପ୍ରଚଳିତ ଅଛି । ଏଥିରୁ ଯାଜପୁର ସହିତ କେଶରୀ ବଂଶର ସମ୍ବନ୍ଧ ସ୍ପଷ୍ଟ ଅନୁମେୟ । ଯାଜପୁର ପ୍ରକୃତରେ ଯାଜପୁର ବା ଯାଜିମାନଙ୍କର ପୁର । ସଂସ୍କୃତ ମହାଭାରତରେ ଉଲ୍ଲେଖ ଅଛି—"ଏତେ କଳିଙ୍ଗାଃ କୌନ୍ତେୟ ଯତ୍ର ବୈତରଣୀ ନଦୀ । ଯତ୍ରା ଯଜନ୍ତ ଧର୍ମୋପି" ଇତ୍ୟାଦି । ଏହି ପଂକ୍ତି କେବେ ଲେଖା ହୋଇଥିଲା ତାହା ସଠିକ କହି ହେବନାହିଁ । କିନ୍ତୁ ବୌଦ୍ଧଧର୍ମର ପରବର୍ତ୍ତୀ ପୁନଃ ପ୍ରତିଷ୍ଠିତ ବୈଦିକ ଯୁଗରେ ଯାଜପୁର ବୈଦିକ **ଧର୍ମ**ମତର ଏକ ପ୍ରଧାନ ପୀଠ ଯେ ହୋଇଥିଲା, ଏହା ଏହି ପଂକ୍ତିରୁ ସହଜରେ ଅନୁମିତ ହୁଏ ।

ଆଜି ଯାଜପୁର ସହର ବା ତାହାର ଉପାନ୍ତରେ ପ୍ରାଚୀନକୀର୍ତ୍ତି ବା ଭାସ୍କର୍ଯ୍ୟର ବାହୁଲତା ନାହିଁ, ତାହାର କାରଣ, ଏହା ଉତ୍କଳରେ ପ୍ରବେଶ ପଥର ପ୍ରଧାନ ଦ୍ୱାର ହୋଇଥିବାରୁ ପରବର୍ତ୍ତୀ ବିଧର୍ମ ଓ ବିଧର୍ମୀମାନଙ୍କର ବହୁ ଘାତ ପ୍ରତିଘାତ ଦ୍ୱାରା ସେ ସବୁ ଲୁପ୍ତ ହୋଇଅଛି ।

କେଶରୀବଂଶୀୟ ରାଜାମାନେ ପ୍ରଧାନତଃ ଶିବଭକ୍ତ ଥିଲେ । ଯାଜପୁରରେ ବହୁ ସଂଖ୍ୟାରେ ଶିବଲିଙ୍ଗ ଦେଖାଯାଏ । ଏମାନଙ୍କ ମଧ୍ୟରେ କେତେକଙ୍କର ଆକାର ଓ ସ୍ଥାପନଚାତୁରୀ ଅତ୍ୟନ୍ତ କୌତୂହଳପୂର୍ଣ୍ଣ । ବିରଜାମନ୍ଦିରର ଅନତିଦୂରରେ 'ଅଗ୍ନିଶ୍ୱର' ନାମକ ଶିବଲିଙ୍ଗ ଦିନର ବିଭିନ୍ନ ସମୟରେ ବିଭିନ୍ନ ରଙ୍ଗରେ ପ୍ରତିଭାତ ହୁଏ । ମନ୍ଦିର ନିର୍ମାଣରେ ଆଲୋକପାତର ନିୟନ୍ତ୍ରଣ ଚାତୁରୀ ହେତୁ ଏଭଳି ଦେଖାଯାଏ ବୋଲି କାହାର କାହାର ମତ । ତିଳଭାଣ୍ଡେଶ୍ୱର ନାମକ ସୁବିଶାଳ ଶିବଲିଙ୍ଗ ପ୍ରତ୍ୟହ ତିଳ ପ୍ରମାଣରେ ବଢ଼ୁଥିବାର ଲୋକେ କହନ୍ତି । ତତ୍ସନ୍ନିକଟସ୍ଥ ତ୍ରିଲୋଚନେଶ୍ୱର ନାମକ ଶିବ ଲିଙ୍ଗର ପ୍ରାଚୀନ ମନ୍ଦିରର ଅଗ୍ରଦେଶ ଉତ୍କଳାନୁସୃତ ବିମାନାକୃତି ନ ହୋଇ ଗୋପୁର ବିଶିଷ୍ଟ ଅଟେ । ଏହି ମନ୍ଦିର ମଧ୍ୟରେ ଠିଆହେଲେ ଗୋଟିଏ ଶାସ୍ତ୍ରାନୁମୋଦିତ ଯଜ୍ଞଶାଳା ମଧ୍ୟରେ ଠିଆହେବା ପରି ଜଣାଯାଏ । ଉତ୍କଳ ପ୍ରଚଳିତ ସ୍ଥାପତ୍ୟ ପ୍ରଣାଳୀରେ ଏହା ଗୋଟିଏ ଅଭିନବ ସମାବେଶ ।

ଶିବପୂଜାର ସ୍ରୋତ ମଧ୍ୟରେ କ୍ରମେ ସମାଜରେ ଶକ୍ତି ଉପାସନା ବିସ୍ତାର ଲାଭ କରିଥିଲା । ପୁଣି ଏହି ଶକ୍ତି ଉପାସନାର ଧାରାରୁ ପାରିପାର୍ଶ୍ୱିକ ଭାବରେ ଦେବୀପୂଜା

ଓ ନାନାବିଧ ତନ୍ତ୍ରମତ ଉଦ୍ଭୂତ ହୋଇଥିଲା । ମହେନ୍ଦ୍ରୁଏ, ସଙ୍କ ଯୁଗର ସାବିତ୍ରୀ (ବ୍ରହ୍ମା ପତ୍ନୀ) ଦେବୀ ପୂଜା ଯୁଗରେ ବିରଜା ବା ସିଂହବାହିନୀ ଦୁର୍ଗାରେ ପରିଣତା ହେଲେ । ବିରଜା ନାମରୁ ଯାଜପୁରର ବିରଜାଦେବୀ ବିମଳା, ସାବିତ୍ରୀଙ୍କର ରୂପାନ୍ତର ବୋଲି କେତେକ ପରିମାଣରେ ଅନୁମିତ ହୁଏ ।

ଯାଜପୁର ଉତ୍କଳରେ ଦେବୀପୂଜାର ପ୍ରଧାନ ପୀଠ ଥିଲା ଓ ଆଜିଯାଏ ଅଛି । ଦେବୀ ପୂଜାର ବିଧିବିଧାନ ମଧ୍ୟରେ ଦୁର୍ଗାଙ୍କର ପ୍ରସୂତା ଇନ୍ଦ୍ରାଣୀ, ବାରାହୀ, ବୈଷ୍ଣବୀ, ଚାମୁଣ୍ଡା, କୁମାରୀ ଆଦି ଶକ୍ତିମାନଙ୍କର ନାମୋଲ୍ଲେଖ ଦେଖାଯାଏ । ଯାଜପୁରରେ ଏହି ଶକ୍ତିମାନଙ୍କର ଏକାଧିକ ପ୍ରସ୍ତରମୂର୍ତ୍ତି କଳ୍ପିତ ଓ ନିର୍ମିତ ହୋଇଥିଲା । ସେ ସବୁର ଉତ୍କୃଷ୍ଟ କଳା ଚାତୁରୀ ଦେଖିଲେ ଅଭ୍ରାନ୍ତ ବିଶ୍ୱାସ ହୁଏ ଯେ ଏଠାରେ ପ୍ରସ୍ତର ଶିଳ୍ପ ବୌଦ୍ଧଯୁଗରୁ କେବେ ବାଧାପ୍ରାପ୍ତ ନ ହୋଇ କ୍ରମୋନ୍ନତ ପଥରେ ଅଗ୍ରସର ହେଉଥିଲା । ପ୍ରତ୍ୟେକ ମୂର୍ତ୍ତି ଶାସ୍ତ୍ରୀୟ ବର୍ଣ୍ଣନାର ଠିକ ଅନୁରୂପ । ଶରୀରର ଅଙ୍ଗପ୍ରତ୍ୟଙ୍ଗ ଏବଂ ଶିରାପ୍ରଶିରା ପ୍ରାକୃତିକ ଭାବରେ ସୁସ୍ପଷ୍ଟ ଓ ସୁଗଠିତ । ଖୋଦିତ ଆଭରଣମାନ ସୂକ୍ଷ୍ମ, ସୁନ୍ଦର ଓ ସୁରୁଚିସମ୍ପନ୍ନ । ଆଜିକାଲି ଏହି ମୂର୍ତ୍ତିମାନଙ୍କ ମଧ୍ୟରୁ ସାତଟି ବୈତରଣୀ ତୀରସ୍ଥ ଗୋଟିଏ କ୍ଷୁଦ୍ର ମନ୍ଦିରରେ ରଖାଯାଇ ସପ୍ତମାତୃକା ନାମରେ ପୂଜିତ ହେଉଅଛନ୍ତି । ଏହି ସାତଟି ମୂର୍ତ୍ତି ବୈତରଣୀ ଗର୍ଭରେ ନିକ୍ଷିପ୍ତ ହୋଇଥିଲେ । ଜନୈକ ଧର୍ମପ୍ରାଣ ବ୍ୟକ୍ତି ଏହାଙ୍କୁ ଉଦ୍ଧାର କରି ଉକ୍ତ ମନ୍ଦିରରେ ରଖିଥିଲେ । ସମକଳାସମ୍ପନ୍ନ ଆଉ କେତୋଟି ମୂର୍ତ୍ତି ସବ୍‌ଡିଭିଜନାଲ ଅଫିସରଙ୍କ ହତା ମଧ୍ୟରେ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗଦ୍ୱାରା ରକ୍ଷିତ ହୋଇ ତତ୍ତ୍ୱାନ୍ୱେଷୀ ବ୍ୟକ୍ତିମାନଙ୍କର ମୂଲ୍ୟବାନ୍ ଗ୍ରନ୍ଥ ହୋଇଅଛି । ଶେଷୋକ୍ତ ଏହି ମୂର୍ତ୍ତିସବୁ ସବ୍‌ଡିଭିଜନାଲ ଅଫିସରଙ୍କ କଚେରି ଆଗରେ ଥିବା ବୋଖାରୀ ଆସ୍ଥାନର ପଶ୍ଚାଦ୍‌ଭାଗରେ ଏକ କ୍ଷୁଦ୍ର ପୁଷ୍କରିଣୀ ମଧ୍ୟରେ ନିକ୍ଷିପ୍ତ ହୋଇଥିଲା ।

ବିରଜା ଦେବୀ ପ୍ରାଚୀନା ହେଲେହେଁ ତାଙ୍କର ମନ୍ଦିର ପୁରାତନ ନୁହେଁ । କେବଳ ମନ୍ଦିର ଦେହରେ ସ୍ଥାନେ ସ୍ଥାନେ ସାମାନ୍ୟ କେତୋଖଣ୍ଡି ପ୍ରାଚୀନ ଭାସ୍କର୍ଯ୍ୟପୂର୍ଣ୍ଣ ଅର୍ଦ୍ଧଭଗ୍ନ ପ୍ରସ୍ତର ପ୍ରୋଥିତ ଥିବାର ଦେଖାଯାଏ । ଏହି ମନ୍ଦିରର ଅନତିଦୂରରେ ସାଉଁଳା ବନ୍ଧ ନାମକ ସ୍ଥାନରେ ଗୋଟିଏ ଅଷ୍ଟାଦଶ ଭୁଜା ଦେବୀ ମୂର୍ତ୍ତି ଅଛି । ସେହି ମୂର୍ତ୍ତିଟି ଯେଉଁ ମନ୍ଦିର ମଧ୍ୟରେ ସ୍ଥାପିତ ହୋଇଥିଲା, ତାହାର କେବଳ ଭଗ୍ନାବଶେଷ ମୂର୍ତ୍ତିସହ ଭୂପୃଷ୍ଠର କେତେ ହାତ ତଳେ ରହିଅଛି । ମୂର୍ତ୍ତିଟି ଅତ୍ୟନ୍ତ ଭାସ୍କର୍ଯ୍ୟପୂର୍ଣ୍ଣ ଓ ପ୍ରାଚୀନ ଶିଳ୍ପକଳାର ପରିଚାୟକ ।

ପରିଶେଷରେ ବୈଷ୍ଣବ ଧର୍ମମତ ମଧ୍ୟ ଉତ୍କଳର ଅନ୍ୟାନ୍ୟ ଅଞ୍ଚଳ ପରି ଯାଜପୁରକୁ ପ୍ଲାବିତ କରିଥିଲା । ଉତ୍କଳୀୟ ବୈଷ୍ଣବ ରାଜାମାନଙ୍କର ଏକାଧିକ ରାଜଧାନୀ ମଧ୍ୟରେ ଯାଜପୁର ଏକତମ ଥିଲା । ମୁସଲମାନ ଇତିହାସ ଏହାର ସ୍ପଷ୍ଟ ପ୍ରମାଣ । ଗୋଟିଏ ଦୁଇଟି ବୈଷ୍ଣବ ସ୍ଥାପତ୍ୟ ଆଜି ଏଠାରେ ଐତିହାସିକମାନଙ୍କର ଦୃଷ୍ଟି ଆକର୍ଷଣ କରୁଅଛି ।

ଏଠାରେ ଷୋଡ଼ଶ ପାର୍ଶ୍ୱବିଶିଷ୍ଟ ଏକ ସ୍ଥୂଳ ଓ ସୁଦୀର୍ଘ ପ୍ରସ୍ତରସ୍ତମ୍ଭ ଅଛି । ଏହାର ପୀଠ ମଧ୍ୟ ଓ ଉପରସ୍ଥ ଆସ୍ଥାନ ଯଥାକ୍ରମେ ଖଣ୍ଡିଏ ଲେଖାଏଁ ମୁଗୁନି ପଥର । ଏହାକୁ ଲୋକେ ଶୁଭସ୍ତମ୍ଭ କହନ୍ତି । ଉପରିସ୍ଥିତ ଅସ୍ଥାନର ଚତୁଃପାର୍ଶ୍ୱରେ ଖୋଦିତ କୀର୍ତ୍ତିମୁଖ ଓ ମାଳାଗୁଚ୍ଛିକ ଅତ୍ୟୁନ୍ନତ ଶିଳ୍ପ ରୁଚିର ପରିଚାୟକ । ସ୍ତମ୍ଭଟି ସୁଚିକ୍କଣ । ଏହା ଯାଜପୁରରେ ସୁଦୀର୍ଘ କାଳବ୍ୟାପୀ ନିରବଚ୍ଛିନ୍ନ ପ୍ରସ୍ତର-ଐଶ୍ୱର୍ଯ୍ୟର ସ୍ମାରକ । ଏହାର ଅନତିଦୂରରେ ଗୋଟିଏ ସମଶିଳ୍ପକଳା ବିଶିଷ୍ଟ ପ୍ରକାଣ୍ଡ ଗରୁଡ଼ ମୂର୍ତ୍ତି ଅଛି । କେହି କେହି ମନେ କରନ୍ତି, ନିକଟବର୍ତ୍ତୀ କୌଣସି ବିଷ୍ଣୁ ମନ୍ଦିରର ସମ୍ମୁଖରେ ଉପରୋକ୍ତ ଶୁଭସ୍ତମ୍ଭ ଏହି ଗରୁଡ଼ମୂର୍ତ୍ତି ଦ୍ୱାରା ଅଳଙ୍କୃତ ହୋଇଥିଲା । ଉଭୟର ଆକାର ସାମ୍ୟ ଦୃଷ୍ଟିରୁ ଏଭଳି ଅନୁମାନ ଅମୂଳକ ନୁହେଁ । କିମ୍ବଦନ୍ତୀ କହେ, କଳାପାହାଡ଼ ଭୟରେ ଗରୁଡ଼ ଉଡ଼ିଯାଇ ଗୋଟିଏ ପୋଖରୀରେ ଆଶ୍ରୟ ନେଇଥିଲା । ଗରୁଡ଼ମୂର୍ତ୍ତିଟି ନିକଟସ୍ଥ ଗୋଟିଏ ପୋଖରୀରୁ ଓ ସ୍ତମ୍ଭଟି ନିକ୍ଷିପ୍ତାବସ୍ଥାରୁ ଉଦ୍ଧାର କରାଯାଇଥିଲା । ଆଜି ମଧ୍ୟ ସେହି ପୋଖରୀର ନାମ ଗରୁଡ଼କୁଣ୍ଡ । କିମ୍ବଦନ୍ତୀ ଭାନ୍ତ ବିଧର୍ମର କଷାଘାତର ସ୍ମାରକ ଏବଂ ଏଭଳି କଷାଘାତ ଯାଜପୁରରେ ପ୍ରାଚୀନ କୀର୍ତ୍ତି ଓ ଐଶ୍ୱର୍ଯ୍ୟର ସ୍ୱଳ୍ପତାର ନିଶ୍ଚୟ କାରଣ ।

ଏଠାରେ ବରାହନାଥ ଠାକୁର ଅଛନ୍ତି । ବରାହନାଥ କୃଷ୍ଣ ମୁଗୁନି ପଥରରେ ଖୋଦିତ ଏକ କମନୀୟ ମୂର୍ତ୍ତି । କଥିତ ଅଛି, ଏହିଠାରୁ ଗୋଟିଏ ବରାହମୂର୍ତ୍ତି ଆଲୀକୁ ନୀତ ହୋଇଥିଲେ । ଉଭୟ ମୂର୍ତ୍ତି ଶିଳ୍ପନୈପୁଣ୍ୟର ପରାକାଷ୍ଠା । କିନ୍ତୁ ଦୁଃଖର କଥା, ବିରଜା ମନ୍ଦିର ପରି ବରାହଙ୍କର ମଧ୍ୟ ପ୍ରାଚୀନ ମନ୍ଦିର ନାହିଁ; କେବଳ ମନ୍ଦିର ଗାତ୍ରରେ ଖଣ୍ଡେ ଦୁଇ ଖଣ୍ଡ ମାତ୍ର ବିକଳାଙ୍ଗ ମୂର୍ତ୍ତି ବିଶିଷ୍ଟ ପ୍ରସ୍ତର ଖଞ୍ଜା ଯାଇଥିବାର ଦେଖାଯାଏ । ଲୋକେ କହନ୍ତି, ଜନୈକ ମୁସଲମାନ ଶାସନକର୍ତ୍ତା ଅଶ୍ୱପୃଷ୍ଠରେ ଯିବାବେଳେ ତୁଙ୍ଗ ମନ୍ଦିରର ଛାୟା ଦେଖି ଅଶ୍ୱ ବିଚଳିତ ହେବାରୁ ସେହି ମନ୍ଦିରକୁ ଭାଙ୍ଗି ଦିଆଯାଇଥିଲା । ଜନଶ୍ରୁତି ସତ୍ୟ ହୋଇ ନପାରେ । ମାତ୍ର କୌଣସି ବିଧର୍ମୀ ଶାସକଙ୍କ ଆଦେଶରେ ମନ୍ଦିର ଭଗ୍ନ ହୋଇଥିବାର ଅନ୍ତର୍ନିହିତ ରହସ୍ୟ ଅସମ୍ଭବ ନୁହେଁ । ବୋଧହୁଏ ପରେ ଦେବମୂର୍ତ୍ତିଙ୍କର ଆଶ୍ରୟ ପାଇଁ ଉପସ୍ଥିତ ମନ୍ଦିରଟି ନିର୍ମିତ ହୋଇଅଛି । ବରାହ ମନ୍ଦିରର ଜଗମୋହନ ଗୋଟିଏ ଦର୍ଶନୀୟ ସ୍ଥାପତ୍ୟ । ଏହା

ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିରର ଜଗମୋହନ ସଦୃଶ । ଏଥିରେ ଅବଶ୍ୟ ସୂକ୍ଷ୍ମ ଶିଳ୍ପକଳା ଆଦୌ ନାହିଁ; କିନ୍ତୁ ନିର୍ମାଣ କୌଶଳ ସିଦ୍ଧହସ୍ତ ଶିଳ୍ପୀର ନୈପୁଣ୍ୟବ୍ୟଞ୍ଜକ । ଏହା ଭିତରୁ ଗୋଟିଏ ପଦ୍ମପୁଷ୍ପ ଝୁଲୁଥିବା ପରି ଦେଖାଯାଏ । କଥିତଅଛି, ରାଜା ପ୍ରତାପରୁଦ୍ରଦେବ ଏହାକୁ ନିର୍ମାଣ କରାଇଥିଲେ କିନ୍ତୁ ମନ୍ଦିର ଓ ଜଗମୋହନ ସମସାମୟିକ ନୁହେଁ, ଏହା ଉଭୟର ଗଠନ ରୀତିରୁ ସ୍ପଷ୍ଟ ଅନୁମେୟ ।

ବରାହ ଓ ବିରଜା କେତେ ପ୍ରାଚୀନ, ତାହା କହିବା ସହଜ ନୁହେ । ଯାଜପୁରରେ ଏ ଦୁହିଁଙ୍କର ପ୍ରତିଷ୍ଠା ସମ୍ବନ୍ଧେ ପୁରାଣ ଯାହା କହେ, ତାହା ଐତିହାସିକର ଧେୟ । ଯଜ୍ଞ କୁଣ୍ଡରୁ ଏ ଦୁହିଁଙ୍କର ଅଭ୍ୟୁତ୍ଥାନ ଇତିହାସ ସମ୍ମତ ହୋଇ ନ ପାରେ । ମାତ୍ର ଯାଜପୁରର ପ୍ରାଚୀନ କୀର୍ତ୍ତି ମଧ୍ୟରେ ଏମାନଙ୍କର ସ୍ଥାନ ଅତି ଉଚ୍ଚରେ ।

ବୈତରଣୀ ନଦୀର ମୌଳିକ ଧାରର ଉତ୍ତର ତୀରରେ ବରାହ ପୀଠ ଅବସ୍ଥିତ । ଏହି ପୀଠକୁ ନଦୀ ସ୍ରୋତର କବଳରୁ ରକ୍ଷା କରିବାପାଇଁ ଦକ୍ଷିଣ ତୀରସ୍ଥ ଦଶାଶ୍ୱମେଧ ଘାଟର ଠିକ୍ ବିପରୀତ କୂଳରେ ପ୍ରସ୍ତରବନ୍ଧ ନିର୍ମିତ ହୋଇଥିଲା । ନଦୀ ଶଯ୍ୟାର ବକ୍ରତା ଦୃଷ୍ଟିରେ ଜଳସ୍ରୋତର ସ୍ୱାଭାବିକ ଗତି ଅବରୋଧ କରିବାପାଇଁ ବକ୍ରତାର ପ୍ରାରମ୍ଭ ସ୍ଥାନରୁ ପ୍ରାୟ ଏକକୋଣ ପଶ୍ଚିମରୁ ବନ୍ଧ ପ୍ରସ୍ତୁତ ହୋଇଥିଲା । ଏହି ବନ୍ଧ ପ୍ରାୟ ୫୬ ଫୁଟ ପ୍ରଶସ୍ତ ଓ କଠା ପ୍ରସ୍ତରରେ ନିର୍ମିତ । ବନ୍ଧର ଆରମ୍ଭ ଓ ମଧ୍ୟ ସ୍ଥାନରେ ଯଥାକ୍ରମେ ବନ୍ଧାଣେଶ୍ୱର ଶିବଲିଙ୍ଗ ଓ ବନ୍ଧାଣେଶ୍ୱରୀ ଠାକୁରାଣୀ ମୂର୍ତ୍ତି ସ୍ଥାପିତ ହୋଇଅଛନ୍ତି । ବନ୍ଧାଣ ବନ୍ଧାଣ ଶବ୍ଦର ଲୌକିକ ଅପଭ୍ରଂଶ । ଆଜି ମଧ୍ୟ ଏ ସ୍ଥାନର ନାମ ବନ୍ଧାଣ । ଏହି ବନ୍ଧର ଅଧିକାଂଶ ମାଟିତଳେ ପୋତିହୋଇ ଯାଇଛି । ଏହା ଯାଜପୁରର ଅନ୍ୟତମ ପ୍ରାଚୀନ କୀର୍ତ୍ତି ।

ଉତ୍କଳର ରାଜାମାନେ ଦେଶର ବିଭିନ୍ନ ଘାଟିସ୍ଥଳମାନଙ୍କରେ (Strategic points) ପ୍ରାସାଦ ସ୍ଥାପନ କରିଥିଲେ ଓ ଆବଶ୍ୟକମତେ ଭିନ୍ନ ଭିନ୍ନ ସମୟରେ ବାସ କରୁଥିଲେ। ଯାଜପୁରରେ ବହୁକାଳଯାଏଁ ସେହିପରି ରାଜପ୍ରାସାଦୋପମ ଭିନ୍ନ ଭିନ୍ନ ପ୍ରାସାଦ ଥିଲା । କିନ୍ତୁ ତାହା କେଉଁ ସ୍ଥାନରେ ଅବସ୍ଥିତ ଥିଲା ସ୍ଥିରକରି କହିବା ସହଜ ନୁହେଁ । କେବଳ ରାଜବସତିର ସ୍ମାରକ ସ୍ୱରୂପ ଇତସ୍ତତଃ କେତୋଟି ସ୍ଥାନର ରାଜସଂପୃକ୍ତ ନାମ ପ୍ରଚଳିତ ଅଛି । ମୁସଲମାନମାନେ ବଙ୍ଗଦେଶ ଜୟ କଲାପରେ ଉତ୍ତର ଦିଗରୁ ଓଡ଼ିଶାରେ ପ୍ରବେଶ କରିବାପାଇଁ ବାରମ୍ବାର ଚେଷ୍ଟା କରିଥିଲେ । ତେତେବେଳେ ଆଧୁନିକ ଧାମନଗରବାଟେ ବଙ୍ଗଦେଶରୁ ଉତ୍କଳକୁ ପ୍ରବେଶ ପଥ ଥିଲା । ମୁସଲମାନ ଇତିହାସରୁ ଜଣାଯାଏ, ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଥରେ ମୁସଲମାନ ସେନା ଉତ୍ତରରୁ ଅଗ୍ରସର ହେଉଥିବାର ସମ୍ବାଦ ପାଇ ଯାଜପୁରର ରାଜା (ଉତ୍କଳ ରାଜା)

ସେମାନଙ୍କୁ ପ୍ରତିହତ କରିବାପାଇଁ ପଥ ମଧ୍ୟରେ ରଣାପେକ୍ଷା କରି ରହିଥିଲେ । କେଣ୍ଟସ୍ପିନ ନାମକ ସ୍ଥାନରେ ଉଭୟ ପକ୍ଷର ଘୋର ଯୁଦ୍ଧ ହେଲା । ମୁସଲମାନ ସେନା ପରାସ୍ତ ହୋଇ ପଳାୟନ କଲେ । ଉତ୍କଳର ରାଜା ସ୍ଥାୟୀ ପ୍ରତିରୋଧ ପାଇଁ ସେହିଠାରେ ତିନିଗୋଟି ସୈନ୍ୟ ବସତି ସ୍ଥାପନ କରିଥିଲେ । ସେହି ବସତି ତିନି ଗୋଟି ଆଜି କଣ୍ଟି, ଶୁନ୍ନ ଓ ଦକ୍ଷିଣବାଡ଼ ନାମରେ ପରିଚିତ ଏବଂ ଖଣ୍ଡାୟତ ବହୁଳ । ମୁସଲମାନ ଐତିହାସିକମାନେ କଣ୍ଟି ଓ ଶୁନ୍ନକୁ କେନଶୁନ ବୋଲି କହିଅଛନ୍ତି ।

ଓଡ଼ିଶାର ରାଜା ଗଙ୍ଗା କୂଳରେ ଯୁଦ୍ଧଲିପ୍ତ ଥିବାର ସମ୍ବାଦ ପାଇ କଳାପାହାଡ଼ ଓଡ଼ିଶାରେ ପ୍ରବେଶ କରିବାପରେ ଉକ୍ତ ପ୍ରବେଶ ପଥର ଅନତିଦୂରରେ ଗୋହିରାଟିକିରିଠାରେ ମୁକୁନ୍ଦଦେବ ଓ କଳାପାହାଡ଼ ମଧ୍ୟରେ ଶେଷ ସ୍ୱାଧୀନତା ଯୁଦ୍ଧ ହୋଇଥିଲା । ମୁକୁନ୍ଦଦେବ ପରାସ୍ତ ଓ ନିହତ ହେଲେ । ଫଳରେ ଓଡ଼ିଶାର ପ୍ରଥମ ପୀଠ ଯାଜପୁର ବିଜୟୀ ମୁସଲମାନ ସେନାଙ୍କର ପ୍ରଥମ କଷାଘାତର କବଳରେ ପଡ଼ି ହତଶ୍ରୀ ହେଲା; ରାଜପ୍ରାସାଦ, ଶତ ଶତ ମନ୍ଦିର ଓ ମୂର୍ତ୍ତି ଧ୍ୱସ୍ତ-ବିଧ୍ୱସ୍ତ ଓ ନିଶ୍ଚିହ୍ନ ହେଲା । କଥିତ ଅଛି, ଯାଜପୁର ଫୌଜଦାରୀ କଚେରି ଆଗରେ ଯେଉଁ ବୋଖାରି ବା ଚପୀ ଅସ୍ଥାନ ଅଛି, ସେଠାରେ ପୂର୍ବେ ବ୍ରାହ୍ମଣମାନଙ୍କର ସମାଜ ନିୟନ୍ତ୍ରକ ମୁକ୍ତିମଣ୍ଡପ ଥିଲା । ଯାଜପୁରର ସୁବୃହତ୍ ଆବୁ ମସଜିଦ୍ ବିଧ୍ୱସ୍ତ ରାଜପ୍ରାସାଦ ଓ ମନ୍ଦିରର ଭଗ୍ନାବଶେଷ ପ୍ରସ୍ତରଦ୍ୱାରା ନିର୍ମିତ ବୋଲି ଜନମତ ପ୍ରଚଳିତ ଅଛି । ଏହି ମସ୍‌ଜିଦ୍ ମୋଗଲ ସମ୍ରାଟ୍ ଔରଙ୍ଗଜେବଙ୍କ ଆଦେଶରେ ନିର୍ମିତ ଏକ ପ୍ରାଚୀନ କୀର୍ତ୍ତି । ବୈତରଣୀ ତୀରସ୍ଥ ଆଦିମ ବ୍ରାହ୍ମଣ ବସତିର ଆଧୁନିକ ନାମ ବେଲମପୁର । ଦଶାଶ୍ୱମେଧ ଘାଟର ନିକଟବର୍ତ୍ତୀ କେତେକ ସ୍ଥାନ ଆଜି ବିବିସରାଇ ନାମରେ ପରିଚିତ । ମନେହୁଏ ମୁସଲମାନ ଶାସନକର୍ତ୍ତାମାନେ ହିନ୍ଦୁମାନଙ୍କର ପ୍ରଧାନ ଧର୍ମସ୍ଥାନମାନଙ୍କର ନାମସୁଦ୍ଧା ପରିବର୍ତ୍ତନ କରିବାକୁ ଚେଷ୍ଟାବାନ୍ ଥିଲେ ।

ମୁସଲମାନ ପ୍ରଭୁତ୍ୱ ପରେ ପରେ ଅନ୍ୟାନ୍ୟ ଅଞ୍ଚଳ ପରି ଯାଜପୁର ମରହଟ୍ଟାମାନଙ୍କର ହସ୍ତଗତ ହେଲା । ହିନ୍ଦୁ ପରବର୍ତ୍ତୀ ଶାସକମାନେ ତଦ୍ଦ୍ୱାରା ପ୍ରଚଳିତ ଧର୍ମାନ୍ଧତାର ଫଳରେ ମୁସଲମାନ କୀର୍ତ୍ତିର ଲୋପ ସାଧନପାଇଁ ତତ୍ପର ହୋଇଥିଲେ । ଶୁଣାଯାଏ, ସେମାନେ ପୂର୍ବୋକ୍ତ ଆବୁ ମସ୍‌ଜିଦ୍‌ର କେତେକାଂଶ ଭଗ୍ନକରି ବୈତରଣୀ ତୀରରେ ସେହି ବିବିସରାଇ ବକ୍ଷରେ ଅବସ୍ଥିତ ସୁବୃହତ୍ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ । ଆଜି ବିରଜା ମନ୍ଦିରକୁ ଯିବା ପଥରେ ଯେଉଁ ଅଠରନଳା ପୋଲ ସରକାରଙ୍କ ଦ୍ୱାରା ପ୍ରାଚୀନ କୀର୍ତ୍ତି ସ୍ୱରୂପ ସଂରକ୍ଷିତ ହୋଇଅଛି, ତାହା ସେହି ଭଗ୍ନାବଶେଷ ସାହାଯ୍ୟରେ ଗଠିତ । ଯାଜପୁରର ବାଲିଜମଠ, ଜଗନ୍ନାଥ ଓ ଗୌରାଙ୍ଗ ମନ୍ଦିର ମରହଟ୍ଟା ଶାସକମାନଙ୍କର ପ୍ରଧାନ କୀର୍ତ୍ତି ।

ବ୍ରିଟିଶ୍ ଶାସନରେ ଧର୍ମବିଦ୍ୱେଷ ଲୁପ୍ତହୋଇ ଶାନ୍ତି ପ୍ରତିଷ୍ଠିତ ହେଲା ଏବଂ ପ୍ରାଚୀନ କୀର୍ତ୍ତିମାନ ସୁରକ୍ଷିତ ହୋଇ ଯାଜପୁରର ଲୁପ୍ତ ଗୌରବ ଗାନ କରୁଅଛନ୍ତି । କିନ୍ତୁ ଉତ୍କଳର ପ୍ରାଚୀନତମ ପୀଠ ଇତିହାସ ପ୍ରସିଦ୍ଧ ଯାଜପୁର ଆଜି ଅବହେଳିତ । ତଥାପି ବୈତରଣୀରେ ସ୍ନାନ, ଦଶାଶ୍ୱମେଧ ଘାଟ ଓ ନାଭିଗୟାରେ ପିଣ୍ଡଦାନ, ବିରଜା, ବିରଜା ସପ୍ତମାତୃକା, ଶୁଭସ୍ତମ୍ଭ ଓ ଅନ୍ୟାନ୍ୟ ଭଗ୍ନସ୍ଥାପତ୍ୟମାନ ଦର୍ଶନ କରିବା ପାଇଁ ପ୍ରତ୍ୟହ ଶତ ଶତ ଯାତ୍ରୀ ଆସୁଛନ୍ତି ଓ ଆସୁଥିବେ ।

[ ସମାଜ— ୧୯୬୦, ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା ]



# ପୁଷ୍ପଗିରି ବିଶ୍ୱବିଦ୍ୟାଳୟ

ଶ୍ରୀ ଘନଶ୍ୟାମ ଦାଶ

ପ୍ରାଚୀନ ଭାରତରେ ଅସଂଖ୍ୟ ବିଶ୍ୱବିଦ୍ୟାଳୟ ଥିଲା । ସେମାନଙ୍କ ନାମ ହେଉଛି ତକ୍ଷଶିଳା, ପୁରୁଷପୁର, ଶ୍ରାବସ୍ତି, କୁଶନଗର, ବୈଶାଳୀ, ରାଜଗୃହ, ଚମ୍ପା, କପିଶା, ଗାନ୍ଧାର, ପୁଷ୍କରାବତୀ ଉଦ୍ୟାନ, ଅହିଛତ୍ର, କାନ୍ୟକୁବ୍ଜ, ଅଯୋଧ୍ୟା, ପ୍ରୟାଗ, ଜେତ୍ରବନ, ବିହାର, କପିଳବାସ୍ତୁ, ରାମଗ୍ରାମ, ବାରାଣସୀ, ସାରନାଥ, ମହାବୋଧି, ବିହାର, ନାଳନ୍ଦା, ଦନ୍ତପୁରୀ, ତାମ୍ରଲିପ୍ତ ଓ ପୁଷ୍ପଗିରି ଇତ୍ୟାଦି । ଏହି ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରୁ କେତୋଟି ଭାରତବର୍ଷରେ ଓ ଭାରତ ବାହାରେ ପ୍ରସିଦ୍ଧି ଲାଭ କରିଥିଲା । ଏମାନଙ୍କ ମଧ୍ୟରୁ ତକ୍ଷଶିଳା, ନାଳନ୍ଦା, ଅହିଛତ୍ର ପ୍ରଭୃତି ସ୍ଥାନରେ ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ଖନନକାର୍ଯ୍ୟ ହୋଇ ଅନେକ ତଥ୍ୟ ସଂଗୃହୀତ ହୋଇଅଛି । ଚୀନ ପରିବ୍ରାଜକ ହୁଏନ୍‌ସାଂ ଇତ୍ୟାଦିଙ୍କ ଭାରତ ଭ୍ରମଣ ବିବରଣୀରୁ ପ୍ରାଚୀନ ଭାରତର ବିଶ୍ୱବିଦ୍ୟାଳୟମାନଙ୍କ ବିଷୟରେ ବହୁ ତଥ୍ୟ ଜଣାଯାଏ । ଚୀନ ପରିବ୍ରାଜକ ହୁଏନ୍‌ସାଂ ଖ୍ରୀଷ୍ଟାବ୍ଦ ସପ୍ତମ ଶତାବ୍ଦୀରେ ଭାରତରେ ୧୫ ବର୍ଷ କାଳ ପରିଭ୍ରମଣ କରି ଭାରତର ଅସଂଖ୍ୟ ଗ୍ରନ୍ଥ ସଂଗ୍ରହପୂର୍ବକ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ଭାରତର ବହୁ ବିଶ୍ୱବିଦ୍ୟାଳୟମାନଙ୍କ ବିଷୟରେ ନିଜର ଅଭିଜ୍ଞତା ଭ୍ରମଣ ପୁସ୍ତକରେ ଲିପିବଦ୍ଧ କରି ଯାଇଛନ୍ତି । ତାଙ୍କ ଲେଖାରୁ ଜଣାଯାଏ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ମଧ୍ୟ ଭାଗରେ ଉଡ୍ର ଦେଶରେ ଅର୍ଥାତ୍ ଓଡ଼ିଶାରେ ପୁଷ୍ପପୁଲେକିଲି ନାମକ ଏକ ବିଶ୍ୱବିଦ୍ୟାଳୟ ପ୍ରସିଦ୍ଧି ଲାଭ କରିଥିଲା । ଏହି ପୁଷ୍ପପୁଲେକିଲି ଶବ୍ଦକୁ ଐତିହାସିକମାନେ ପୁଷ୍ପଗିରି ଶବ୍ଦର ଚୈନିକ ଅପଭ୍ରଂଶ ବୋଲି କହୁଅଛନ୍ତି । ହୁଏନ୍‌ସାଂଙ୍କ ମତରେ ଉଡ୍ରଦେଶରୁ ଦଶ ସହସ୍ର ବୌଦ୍ଧ ସନ୍ନ୍ୟାସୀ ସେଥିରେ ଅବସ୍ଥାନ କରି ମହାଯାନ ତତ୍ତ୍ୱ ଅଧ୍ୟୟନ କରୁଥିଲେ । କେତେକ ବିଭିନ୍ନ ସମ୍ପ୍ରଦାୟର ଧର୍ମବିରୋଧୀ ବ୍ୟକ୍ତି ମଧ୍ୟ ସମବେତ ହୋଇ ଦେବୀଙ୍କୁ ଉପାସନା କରୁଥିଲେ । ଉଡ୍ର ଦେଶରେ ଅଶୋକଙ୍କ ନିର୍ମିତ ଦେବୀଙ୍କ ସମ୍ମୁଖ ଦଶଗୋଟି ସ୍ତୂପ ଥିଲା । ହୁଏନ୍‌ସାଂଙ୍କ ଜୀବନୀରୁ ଜଣାଯାଏ ଯେ ଓଡ଼ିଶାର ବୌଦ୍ଧାଚାର୍ଯ୍ୟଗଣ ହୀନଯାନ ତତ୍ତ୍ୱ ଅଧ୍ୟୟନ କରୁଥିଲେ । ମହାଯାନ ପ୍ରତି ସେମାନଙ୍କର ଆଦୌ ବିଶ୍ୱାସ ନଥିଲା । ସେମାନେ ମନେ କରୁଥିଲେ ଯେ ଏହା ଧର୍ମ ବିରୋଧୀଗଣଙ୍କ ମତର ଅନୁକୂଳ ଓ ବୁଦ୍ଧଙ୍କ ପ୍ରଦତ୍ତ ନୁହେଁ । ହୁଏନ୍‌ସାଂଙ୍କ ଦ୍ୱାରା ଲିଖିତ ବିବରଣୀ ଓ ଅନ୍ୟମାନଙ୍କ ଦ୍ୱାରା ଲିଖିତ ତାଙ୍କ ଜୀବନୀରୁ ଏହିପରି ପରସ୍ପର ବିରୋଧାତ୍ମକ ବିଷୟ ଜଣାଯାଏ । ଭ୍ରମଣ ବୃତ୍ତାନ୍ତରୁ ଜଣାଯାଏ, ଓଡ଼ିଶାରେ ମହାଯାନ ମତାବଲମ୍ବୀ ବୌଦ୍ଧ ଥିଲେ, କିନ୍ତୁ ତାଙ୍କ ଜୀବନୀରୁ ଜଣାଯାଏ

ଯେ ଓଡ଼ିଶାରେ ହୀନଯାନ ପନ୍ଥୀ ବୌଦ୍ଧଭିକ୍ଷୁ ଥିଲେ । ମୋ ମତରେ ଏହି ପରସ୍ପର ବିରୋଧାତ୍ମକ ବାକ୍ୟର ସମାଧାନ ହେଉଛି ଯେ ଓଡ଼ିଶାର ସେ ସମୟରେ ଏକ ସହସ୍ର ସଙ୍ଘାରାମ ଥିବାରୁ ଓ ଦଶସହସ୍ର ବୌଦ୍ଧଭିକ୍ଷୁ ଥିବାରୁ କେତେକ ସଙ୍ଘାରାମରେ ହୀନଯାନ ପନ୍ଥୀ ଓ ଅନ୍ୟ କେତେକ ସ୍ଥାନରେ ମହାଯାନ ପନ୍ଥୀ ଏବଂ ଅନ୍ୟ କେତେକ ସ୍ଥାନରେ ମହାଯାନ ପନ୍ଥୀ ବୌଦ୍ଧାଚାର୍ଯ୍ୟ ଭିକ୍ଷୁ ଓ ଉପାସକ ଥିଲେ ।

କଥିତ ଅଛି ଯେ ଉତ୍ତର ଭାରତର ସମ୍ରାଟ୍ ହର୍ଷବର୍ଦ୍ଧନ ଗଞ୍ଜାମ ବିଜୟ କରି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କାଳରେ ଓଡ଼ିଶାରେ କିଛୁଦିନ ରହିଥିବା ବେଳେ ଓଡ଼ିଶାର ହୀନଯାନ ପନ୍ଥୀ ବୌଦ୍ଧାଚାର୍ଯ୍ୟଗଣ ସମ୍ରାଟ୍ ହର୍ଷବର୍ଦ୍ଧନଙ୍କ ସଙ୍ଗରେ ସାକ୍ଷାତ କରି ଶାସ୍ତ୍ରାଲୋଚନା ପ୍ରସଙ୍ଗରେ ତାଙ୍କୁ ଭାଷାରେ କହିଲେ "ମହାଭାଗ, ଆପଣ ନାଳନ୍ଦ ମଠ ନିକଟରେ ଏକ ପ୍ରକାଣ୍ଡ ମଠ ନିର୍ମାଣ କରାଇଛନ୍ତି । ଆପଣ କାହିଁକି କାପାଳିକ ବା କାଳୁଙ୍କ ମଠ ନିର୍ମାଣ କରାଇ ନାହାନ୍ତି ?" ସମ୍ରାଟ ଉତ୍ତର ଦେଲେ "ହେ ପଣ୍ଡିତଗଣ ଆପଣମାନଙ୍କ ଏହି ତିରସ୍କାରସୂଚକବାକ୍ୟ ପ୍ରୟୋଗର ଅଭିପ୍ରାୟ କଣ ?" ସେମାନେ କହିଲେ କି ଏହି ବାକ୍ୟ ପ୍ରୟୋଗର ଅଭିପ୍ରାୟ ଏହି ଯେ ନାଳନ୍ଦ ମଠ ଓ ସେହିଠାରେ ପ୍ରତିଷ୍ଠାପିତ ଆକାଶ କୁସୁମ ତତ୍ତ୍ୱ ଏବଂ ଆମ୍ଭମାନଙ୍କ କାପାଳିକ ତତ୍ତ୍ୱ ମଧ୍ୟରେ ବିଭିନ୍ନତା ନାହିଁ । ଇତିପୂର୍ବେ ଦାକ୍ଷିଣାତ୍ୟର କୌଣସି ପବିତ୍ରାନ୍ତରାତ୍ମା ନରପତିଙ୍କର ପ୍ରାଜ୍ଞଗୁପ୍ତ ନାମକ ବ୍ରାହ୍ମଣ କୁଳୋଦ୍ଭବ ଜଣେ ଆଚାର୍ଯ୍ୟ ଥିଲେ । ସେ ସକଳ ଶାସ୍ତ୍ର ଆୟତ୍ତ କରି ସପ୍ତଶତ ଶ୍ଳୋକ ବିଶିଷ୍ଟ ଏକ ମହାଯାନ ତତ୍ତ୍ୱ ବିରୋଧୀ ଗ୍ରନ୍ଥ ପ୍ରଣୟନ କରିଥିଲେ । ଓଡ଼ିଶାର ହୀନଯାନ ମତାବଲମ୍ବୀ ଆଚାର୍ଯ୍ୟଗଣ ପ୍ରାଜ୍ଞଗୁପ୍ତ ରଚିତ ଗ୍ରନ୍ଥର ଆଦର କରି ସମ୍ରାଟ ହର୍ଷବର୍ଦ୍ଧନଙ୍କୁ କହିଲେ, "ଏହି ଗ୍ରନ୍ଥରୁ କୌଣସି ମହାଯାନ ପନ୍ଥୀ ପଣ୍ଡିତ ଗୋଟିଏ ଶବ୍ଦ ସୁଦ୍ଧା ଖଣ୍ଡନ କରି ପାରିବେ କି ?" ରାଜା କହିଲେ "ମୂଷିକମାନଙ୍କ ସମଭିବ୍ୟାହାରରେ ଏକ ଶୃଗାଳ ଗୋଟିଏ ସିଂହ ସହିତ ଯୁଦ୍ଧ କରିବାକୁ ଅଗ୍ରସର ହୋଇ ସିଂହକୁ ଦୂରରୁ ଦେଖିବା ମାତ୍ରକେ ତାର ହୃଦସ୍ପନ୍ଦନ ସ୍ଥିର ଭୁକ୍ତ ହେଲା ଓ ମୂଷିକଗଣ ମୁହୂର୍ତ୍ତିକ ମଧ୍ୟରେ ଇତଃସ୍ତତଃ ପଳାୟନ କଲେ । ଆପଣମାନେ ମହାଯାନ ମତାବଲମ୍ବୀ ଆଚାର୍ଯ୍ୟମାନଙ୍କୁ ଦେଖି ନାହାନ୍ତି; ତେଣୁ ନିର୍ବୋଧଭଳି ଏତାଦୃଶ ତାଚ୍ଛଲ୍ୟ ବାକ୍ୟ ପ୍ରୟୋଗ କରୁଅଛନ୍ତି । କିନ୍ତୁ ଥରେ ଯଦି ସେମାନଙ୍କୁ ଦର୍ଶନ କରନ୍ତି, ତେବେ ଉକ୍ତ ଶୃଗାଳଭଳି ଭୀତତ୍ରସ୍ତ ହୋଇ ସେମାନଙ୍କ ସମ୍ମୁଖରୁ ପଳାୟନ କରିବେ । ଏହା ଶୁଣି ସେମାନେ କହିଲେ, "ଆଚ୍ଛା ହେଉ, ଆପଣଙ୍କ କହିବା ଅନୁସାରେ ଆମ୍ଭେମାନେ ଶୃଗାଳ ହେବୁନାହିଁ କିମ୍ବା ନାଳନ୍ଦ ବିଶ୍ୱବିଦ୍ୟାଳୟର ମହାଯାନ ଆଚାର୍ଯ୍ୟଗଣ ସିଂହ ହେବେନାହିଁ । ତେଣୁ ଏକ ସଭା ଏଠାରେ ଆହୂତ ହୋଇ ନାଳନ୍ଦ ବିଶ୍ୱବିଦ୍ୟାଳୟର ପଣ୍ଡିତଗଣଙ୍କ ସହ ଆମ୍ଭମାନଙ୍କର ଶାସ୍ତ୍ରାଲୋଚନା ଓ ତର୍କହୋଇ କିଏ ଶୃଗାଳ ଓ କିଏ ସିଂହ ତାର ମୀମାଂସା

କରାଯାଉ ।'' ସମ୍ରାଟ୍ ଏ ପ୍ରସ୍ତାବରେ ସମ୍ମତି ପ୍ରଦାନ କରି ଦ୍ରୁତଗାମୀ ଦୂତ ହସ୍ତରେ ନାଳନ୍ଦ ବିଶ୍ୱବିଦ୍ୟାଳୟର କୁଳପତି ଶୀଳଭଦ୍ରଙ୍କ ପାଖକୁ ପତ୍ର ପ୍ରେରଣ କଲେ । ଶୀଳଭଦ୍ର ପତ୍ର ପାଠକରି ଅତ୍ୟନ୍ତ ବ୍ୟଥିତ ଓ ଶଙ୍କିତ ହେଲେ; କାରଣ ସେ ସମୟରେ ନାଳନ୍ଦ ବିଶ୍ୱବିଦ୍ୟାଳୟରେ ସବ ଶାସ୍ତ୍ରଜ୍ଞ ପଣ୍ଡିତଗଣ ଥିଲେ ମଧ୍ୟ ଯୋଗଶାସ୍ତ୍ରରେ ତର୍କକରି ପୁଷ୍ପଗିରି ପଣ୍ଡିତମାନଙ୍କୁ ଜୟ କରିବା ଅସାଧ୍ୟ ବିବେଚିତ ହେଉଥିଲା । ଯାହାହେଉ କୁଳପତି ନାଳନ୍ଦରୁ ଚାରିଜଣ ଶାସ୍ତ୍ରଜ୍ଞ ଆଚାର୍ଯ୍ୟ ଓ ହୁଏନ୍‌ସାଂ ଏପରି ପାଞ୍ଚଜଣଙ୍କୁ ନିର୍ବାଚିତ କଲେ । କିନ୍ତୁ ଯେ କୌଣସି କାରଣରୁ ହେଉ ସମ୍ରାଟଙ୍କର ପରବର୍ତ୍ତୀ ଆଦେଶରେ ପ୍ରସ୍ତାବିତ ଆଲୋଚନା ସ୍ଥଗିତ ହେଲା । ଆଲୋଚନା ସ୍ଥଗିତ ହେବାର ପ୍ରକୃତ କାରଣ ଜଣାନଗଲେ ସୁଦ୍ଧା ଅନୁମିତ ହୁଏ ଯେ ନାଳନ୍ଦ ପଣ୍ଡିତମାନେ ପୁଷ୍ପଗିରି ପଣ୍ଡିତମାନଙ୍କ ସଙ୍ଗେ ତର୍କ ଯୁଦ୍ଧରେ ପରାଜିତ ହେଲେ ପୃଥିବୀ ପ୍ରସିଦ୍ଧ ନାଳନ୍ଦ ମୁଖରେ କାଳି ଲାଗିଯିବା ଆଶଙ୍କାରେ ସମ୍ରାଟ ହର୍ଷବର୍ଦ୍ଧନ ଏ ତର୍କଯୁଦ୍ଧ ବନ୍ଦ କରିଥିଲେ । ନାଳନ୍ଦ ବିଶ୍ୱବିଦ୍ୟାଳୟକୁ ଚୀନ ଦେଶର ଓ ଏସିଆ ମହାଦେଶର ଅନ୍ୟାନ୍ୟ ସ୍ଥାନରୁ ବହୁ ପଣ୍ଡିତ ଅଧ୍ୟୟନ କରିବାକୁ ଆସୁଥିବାର ପ୍ରମାଣ ଅଛି । ନାଳନ୍ଦରୁ କେତେକ ପଣ୍ଡିତ ସିଂହଳ, ଯାଭା, ସୁମାତ୍ରା, ଚୀନ, ତିବ୍ବତ ଆଦି ସ୍ଥାନକୁ ଯାଇ ବୌଦ୍ଧଧର୍ମ ବିସ୍ତାର କରୁଥିଲେ । ଚୀନ ପରିବ୍ରାଜକ ହୁଏନ୍‌ସାଂ, ଫାହିୟାନ ଓ ଇତ୍‌ସିଂ ଭାରତର ବହୁ ବୌଦ୍ଧଗ୍ରନ୍ଥ ଚୀନ ଦେଶକୁ ନେଇ ଚୀନ ଭାଷାରେ ଅନୁବାଦ କରିଥିଲେ ସୁଦ୍ଧା ଚୀନ ଦେଶର ଇତିହାସରୁ ସୁବିଖ୍ୟାତ ଫରାସୀ ପଣ୍ଡିତ ସିଲଭାନଲେଭି ଯେଉଁ ତଥ୍ୟ ଉଦ୍ଧାର କରି ଅଛନ୍ତି ସେଥିରୁ ଜଣାଯାଏ ଯେ ଚୀନ ସମ୍ରାଟଙ୍କ ମତରେ ଉତ୍କଳର ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ପ୍ରସିଦ୍ଧ ଥିଲା । ଜଣେ ଚୀନ ସମ୍ରାଟ ଉତ୍କଳ ସମ୍ରାଟ ଶୁଭକର କେଶରୀଙ୍କୁ ଖଣ୍ଡିଏ ପତ୍ର ପ୍ରେରଣ କରି ପୁଷ୍ପଗିରି ବିଶ୍ୱବିଦ୍ୟାଳୟରୁ କେତେଜଣ ଶାସ୍ତ୍ରଜ୍ଞ ବୌଦ୍ଧାଚାର୍ଯ୍ୟ ଓ କେତେକ ଗ୍ରନ୍ଥ ଚୀନ ସମ୍ରାଟଙ୍କଠାକୁ ପଠାଇବାକୁ ଅନୁରୋଧ କରିବାରୁ ଉତ୍କଳ ସମ୍ରାଟ ପ୍ରଜ୍ଞା ନାମକ ଜନୈକ ପୁଷ୍ପଗିରି ଆଚାର୍ଯ୍ୟ ସମଭିବ୍ୟାହାରରେ ପ୍ରଜ୍ଞା, ପାରମିତା, ଗଣ୍ଡବ୍ୟୂହ ଇତ୍ୟାଦି କେତେକ ବୌଦ୍ଧ ଗ୍ରନ୍ଥର ପାଣ୍ଡୁଲିପି ପ୍ରେରଣ କରିଥିଲେ । ଏଥିରୁ ଜଣାଯାଏ ଯେ ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ଖ୍ୟାତି ପ୍ରାଚୀନ କାଳରେ ଭାରତ ବାହାରେ ଚୀନ ଦେଶରେ ମଧ୍ୟ ପ୍ରସିଦ୍ଧି ଲାଭ କରିଥିଲା ।

ଏହି ପୁଷ୍ପଗିରି ବିଶ୍ୱବିଦ୍ୟାଳୟ କେବେ କାହାଦ୍ୱାରା ସ୍ଥାପିତ ହୋଇଥିଲା, କେତେ ଶତ ବର୍ଷ ଏହା ପରିଚାଳିତ ହୋଇଥିଲା, ଏଠାରେ କି ପ୍ରକାର କେତେ ଛାତ୍ର ଅଧ୍ୟୟନ କରୁଥିଲେ, କେତେ ଜଣ ଆଚାର୍ଯ୍ୟ ଅଧ୍ୟାପନା କରୁଥିଲେ, କି କି ବିଷୟର ଏଠାରେ ଶିକ୍ଷା ଦିଆଯାଉଥିଲା, କେବେ କାହିଁକି ଏବଂ କାହାଦ୍ୱାରା ଏହାର ଧ୍ୱଂସ ସାଧିତ ହେଲା, ଏହାର ପ୍ରକୃତ ନାମ କଣ ଥିଲା ଓ ଏହା ଓଡ଼ିଶାର କେଉଁ ସ୍ଥାନରେ ପ୍ରତିଷ୍ଠିତ ଥିଲା ଏ' ପ୍ରଶ୍ନମାନଙ୍କ ସମାଧାନ ଆଶା ସୁଦୂର ପରାହତ । ଏ ପର୍ଯ୍ୟନ୍ତ

ଯେ ସାମାନ୍ୟ ପ୍ରମାଣ ମିଳୁଛି, ସେଥିରୁ ଉପରୋକ୍ତ ପ୍ରଶ୍ନମାନଙ୍କର ସଠିକ୍ ଉତ୍ତର ଦେବା କଠିନ ବ୍ୟାପାର । କେବଳ ଅନୁମାନ ସାହାଯ୍ୟରେ ଶେଷ ପ୍ରଶ୍ନଟିର ଠିକ୍ ସମାଧାନ କରିବା ମୋର ଉଦ୍ଦେଶ୍ୟ । କନିଂହାମ୍ ସାହେବଙ୍କ ମତରେ ପ୍ରାଚୀନ ପୁଷ୍ପଗିରି ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରି ଓ ଉଦୟଗିରି ପାହାଡ଼ । କିନ୍ତୁ ଯେ ହେତୁ ପ୍ରାଚୀନ ଖଣ୍ଡଗିରି ଓ ଉଦୟଗିରିର ନାମ କୁମାର ଓ କୁମାରୀ ପର୍ବତ ବୋଲି ବିଶ୍ୱାସଯୋଗ୍ୟ ପ୍ରମାଣ ମିଳୁଛି ଓ ଯେହେତୁ ଏହି ଯୁଗ୍ମ ପାହାଡ଼ରେ ଜୈନ ସମ୍ରାଟ୍ ଖାରବେଳଙ୍କ ପ୍ରସିଦ୍ଧ ହାତୀଗୁମ୍ଫା ଲିପି ଖୋଦିତ ହୋଇଛି ଓ ଅନ୍ୟାନ୍ୟ ଜୈନକୀର୍ତ୍ତି ବିରାଜିତ ଏବଂ ଯେହେତୁ ଏ ଯୁଗ୍ମ ପାହାଡ଼ରେ ବିଶେଷ କୌଣସି ବୌଦ୍ଧମୂର୍ତ୍ତି ମିଳୁନାହିଁ ତେଣୁ ଏହା ନିଃସନ୍ଦେହ ଯେ ପୁଷ୍ପଗିରି ଭୁବନେଶ୍ୱରର ଖଣ୍ଡଗିରି ବା ଉଦୟଗିରି ନୁହେଁ ।

ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟଙ୍କ ମତରେ କେନ୍ଦୁଝର ଜିଲ୍ଲାର ଫୁଲଗୁଣ୍ଡି ବା ବାଙ୍ଗରପୋଷି ପାହାଡ଼ ପୁଷ୍ପଗିରି ଅଟେ । ମୁଁ ବହୁ ଶ୍ରମ କରି କେନ୍ଦୁଝର ଯାଇ ବାଙ୍ଗରପୋଷି ପାହାଡ଼ ପରିଦର୍ଶନ କରି ଦେଖିଲି ଯେ ଯଦିବା ସେଠାରେ ପ୍ରାଚୀନ ଯୁଗର ଚିତ୍ର ଓ କେତେକ ଲିପି ଅଛି ତଥାପି ସେଠାରେ କୌଣସି ବୌଦ୍ଧ କୀର୍ତ୍ତି ଦେଖିପାରିଲି ନାହିଁ । ପ୍ରାୟ ୨୦ ବର୍ଷ ପୂର୍ବେ କଟକ ଜିଲାର ଲଳିତଗିରି, ରତ୍ନଗିରି ଓ ଉଦୟଗିରି ପାହାଡ଼ ତନ୍ନ ତନ୍ନ କରି ଭ୍ରମଣ କରି ଅସଂଖ୍ୟ ବୌଦ୍ଧକୀର୍ତ୍ତିର ଧ୍ୱଂସାବଶେଷ ପରିଦର୍ଶନ କରି ମୋର ମନରେ ଦୃଢ଼ ଧାରଣା ହେଲା ଯେ ଏହି ତିନୋଟି ପାହାଡ଼ ମଧ୍ୟରୁ ଗୋଟିଏ ଅବଶ୍ୟ ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ଧ୍ୱଂସାବଶେଷ ହୋଇଥିବ । ଐତିହାସିକ ରାଖାଲ ଦାସ ବେନାର୍ଜି ମଧ୍ୟ ଏହି ମତର ପୃଷ୍ଠପୋଷକ । କଟକରୁ ଯାଜପୁର ଯିବା ରେଲ ରାସ୍ତାରେ ଧାନମଣ୍ଡଳ ଷ୍ଟେସନରୁ ଓହ୍ଲାଇ ୮-୧୦ ମାଇଲ ଯିବାପରେ ନଳିତଗିରି, ରତ୍ନଗିରି, ଉଦୟଗିରି, ଓଲାସୁଣୀ, ପାରାଭାଡ଼ି ଇତ୍ୟାଦି ପାହାଡ଼ରାଜି ଦୃଶ୍ୟମାନ ହୁଏ । ଏହି ପାହାଡ଼-ଗୁଡ଼ିକରୁ ବହୁ ଦିନ ପୂର୍ବେ ଅସଂଖ୍ୟ ବୌଦ୍ଧମୂର୍ତ୍ତି ନିଆ ହୋଇ ବର୍ତ୍ତମାନ କଲିକତାସ୍ଥ ଇଣ୍ଡିୟାନ ମିଉଜିୟମରେ ସୁରକ୍ଷିତ ହୋଇଛି । ଉଦୟଗିରି ପାହାଡ଼ରୁ କେତେକ ମୂର୍ତ୍ତି ଓ ଗୋଟିଏ ବିଚିତ୍ର କାରୁକାର୍ଯ୍ୟ ଖୋଦିତ ତୋରଣ ବାଲେଶ୍ୱରର କଲେକ୍ଟର ଜନ୍ ବିମସ୍ ସାହେବ, କଟକର ରେଭେନ୍ସା କଲେଜ ନିକଟସ୍ଥ ଗୋଲପୁଲ ଆସ୍ରମ ବା ଖୋଲପୁଅ ମା ମନ୍ଦିର ନିକଟରେ ରଖିଥିଲେ । ପ୍ରାୟ ପଚିଶ ବର୍ଷ ପୂର୍ବେ ଉପରୋକ୍ତ ତୋରଣ ବିହାର ରାଜଧାନୀ ପାଟଣାକୁ ପ୍ରେରିତ ହୋଇ ବର୍ତ୍ତମାନ ତାହା ପାଟଣା ମିଉଜିଅମର ଶୋଭାବୃଦ୍ଧି କରୁଅଛି । ଏବେ ମଧ୍ୟ ବହୁ ପ୍ରକାଣ୍ଡକାୟ ବୌଦ୍ଧମୂର୍ତ୍ତି ଲଳିତ ବା ନଳିତ ଗିରିରେ, ପାରାଭାଡ଼ିରେ, ରତ୍ନଗିରିରେ ଓ ଉଦୟ ଗିରିରେ ଖରା ବର୍ଷା ଖାଇ ଅଯତ୍ନ ଭାବରେ ପଡ଼ିରହି ପୁଷ୍ପଗିରିର ପ୍ରାଚୀନ ଗୌରବ ବିଭବର ମୂକ ସାକ୍ଷୀରୂପେ ଆଧୁନିକ ଓଡ଼ିଆ ଜାତିକୁ 'ଚେତାବାଣୀ' ଶୁଣାଉଅଛି ।

ଏ ସ୍ଥାନମାନଙ୍କରୁ କେତେକ ପ୍ରକାଣ୍ଡକାୟ ପ୍ରସ୍ତରମୂର୍ତ୍ତି ଯାଜପୁର ସହରକୁ ଆନୀତ ହୋଇ ସବ୍‌ଡ଼ିଭିଜନାଲ ଅଫିସରଙ୍କ ବସା ସମ୍ମୁଖରେ ପଡ଼ିରହିଅଛି । ଯାଜପୁରବାସୀ ସେମାନଙ୍କ ପୂର୍ବ ଇତିହାସ ନ ଜାଣି ସେ ପ୍ରସ୍ତର ମୂର୍ତ୍ତିଗୁଡ଼ିକୁ "କଳିଯୁଗ ଭେଣ୍ଡା" ନାମରେ ଅଭିହିତ କରୁଅଛନ୍ତି । ଉପରୋକ୍ତ ପାହାଡ଼ମାନଙ୍କ ମଧ୍ୟରୁ କେଉଁଟି ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ଅଧିଷ୍ଠାନ, ଖନନ କାର୍ଯ୍ୟ ନ କରି ଅନୁମାନ ସାହାଯ୍ୟରେ କହିବା ଧୃଷ୍ଟତାମାତ୍ର । ତେବେ ଉପରୋକ୍ତ ପାହାଡ଼ଗୁଡ଼ିକରେ ସାତଦିନ କାଳ ପରିଭ୍ରମଣ କରି ମୋ ମନରେ ଦୃଢ଼ ଧାରଣା ଜାତ ହୋଇଛି ଯେ ତନ୍ମଧ୍ୟରୁ ଉଦୟଗିରି ପାହାଡ଼ଟି ପ୍ରାଚୀନ ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ଅଧିଷ୍ଠାନ । ତେବେ ସେ ପାହାଡ଼ରେ ଅସଂଖ୍ୟ ଗଛ ବିଶେଷତଃ କଣ୍ଟାଗଛ ପରିବର୍ଦ୍ଧିତ ହୋଇ ତାହା ନିବିଡ଼ ଅରଣ୍ୟରେ ପରିଣତ ହୋଇଛି । ଏପରିକି ସେଠାରେ ମୁଁ ଦିନେ ରାତିରେ ଶୟନ କରିଥିବା ସମୟରେ ବ୍ୟାଘ୍ରର ଗର୍ଜନ ଶୁଣିଅଛି ଓ ସ୍ୱହସ୍ତରେ ସେ ଜଙ୍ଗଲର ହରିଣ ଶିକାର କରିଅଛି । ସେଠାରେ ପୂର୍ବକାଳର ଏକ ବାପୀ ଓ ଏକ ଅବଲୋକିତେଶ୍ୱର ଦେଖିଅଛି ଏବଂ ଗୁରିଜଣ ବନ୍ଧୁଙ୍କ ଧାଇଁ ଦେହରକ୍ଷୀ ସମଭିବ୍ୟାହାରରେ—କଣ୍ଟାଗଛ କାଟାଇ କାଟାଇ ଅର୍ଦ୍ଧ ଉତ୍ଥିତ ଓ ଅର୍ଦ୍ଧ ସମାବେଶିତ ଭାବରେ ପାହାଡ଼ ଭିତରେ ପ୍ରାୟ ଏକ ମାଇଲ ପରିଭ୍ରମଣ କରି ନିବିଡ଼ ଅରଣ୍ୟ ଭିତରେ ପ୍ରାଚୀନ ଉତ୍କଳର ମୁକୁଟମଣି ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ସେ ଧ୍ୱଂସାବଶେଷ ଦେଖିଅଛି । ସେଠାରେ ଉପବିଷ୍ଟ ପ୍ରକାଣ୍ଡକାୟ ଅବଲୋକିତେଶ୍ୱରଙ୍କ ପାଷାଣ ମୂର୍ତ୍ତିର ସୁନ୍ଦର, ଶାନ୍ତ, ସୌମ୍ୟ, ମଧୁର ମୂର୍ତ୍ତି ଓ ତା ପଛପଟେ ଖୋଦିତ ଲିପିମାଳା ଦେଖି ଯେ ଅଦ୍ଭୁତ ଆନନ୍ଦ ଲାଭ କରିଛି ତାହା ଆଜି କାହିଁକି ଚିରଦିନ ସକାଶେ ମୋ ମାନସପଟରେ ଅଙ୍କିତ ହୋଇ ରହିଅଛି ଓ ରହିଥିବ । ଏ ମୂର୍ତ୍ତିର ଏ ପର୍ଯ୍ୟନ୍ତ କେହି ଫଟୋ ନେଇ ନାହାନ୍ତି ବା ଲିପି ଉଦ୍ଧାର କରି ପାଠ କରି ନାହାନ୍ତି । ଏହି ପ୍ରସିଦ୍ଧ ପୁଷ୍ପଗିରି ବିଶ୍ୱବିଦ୍ୟାଳୟର କେବେ, କାହିଁକି ଓ କାହାଦ୍ୱାରା ଧ୍ୱଂସ ହେଲା ତାହା ମଧ୍ୟ କହିବା କଠିନ ବ୍ୟାପାର । ଅନୁମାନ କରାଯାଏ ଯେ କଳାପାହାଡ଼ ପ୍ରମୁଖ ଅନ୍ୟାନ୍ୟ ଇସଲାମ ଧର୍ମାବଲମ୍ବୀ ପଠାଣ ଓ ମୋଗଲ ଦିଗ୍‌ବିଜୟୀଗଣ ପ୍ରାୟ ତ୍ରୟୋଦଶରୁ ସପ୍ତଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶା ଅଧିକାର କରି ହିନ୍ଦୁ, ବୌଦ୍ଧ ମନ୍ଦିର ଓ ମୂର୍ତ୍ତିମାନଙ୍କର ଧ୍ୱଂସ ସାଧନ କରିବାରୁ ପୁଷ୍ପଗିରିର କେତେକ ପଣ୍ଡିତ ଓ ଆଚାର୍ଯ୍ୟଗଣ ବିଧର୍ମୀଙ୍କ ଦ୍ୱାରା ନିହତ ହେଲେ ଓ ଆଉ କେତେକ ଇତସ୍ତତଃ ପଳାୟନ କଲେ । ଠିକ୍ ଏପରି ଭାବରେ ମଗଧର ବିକ୍ରମଶୀଳା ବିଶ୍ୱବିଦ୍ୟାଳୟର ପତନ ହୋଇଥିଲା । ପାର୍ସୀ ଭାଷାରେ ଲିଖିତ ତବାକତି ନାଶିରି ନାମକ ଗ୍ରନ୍ଥରେ ବିକ୍ରମଶୀଳା ବିଶ୍ୱବିଦ୍ୟାଳୟର ପତନ ବିଷୟରେ ଲିଖିତଅଛି ଯେ, ସେଠାର ଅଧିକାଂଶ ଅଧିବାସୀ ବ୍ରାହ୍ମଣ ବା ବୌଦ୍ଧ ଭିକ୍ଷୁ ଓ ସେମାନେ ମୁଣ୍ଡିତ ମସ୍ତକ ଥିଲେ ଏବଂ ସେମାନେ ସମସ୍ତେ ମୁସଲମାନଙ୍କ ଦ୍ୱାରା

ନିହତ ହେଲେ । ସେ ବିଶ୍ୱବିଦ୍ୟାଳୟରେ ଅସଂଖ୍ୟ ଗ୍ରନ୍ଥରାଜି ଦେଖି ସେମାନେ ଗ୍ରନ୍ଥମାନଙ୍କର ବିଷୟବସ୍ତୁ ଜାଣିବାକୁ ଉଦ୍‌ବିଗ୍ନ ହୋଇଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ କେହି ଜଣେ ହେଲେ ହିନ୍ଦୁଙ୍କୁ ଜୀବିତାବସ୍ଥାରେ ସେ ସ୍ଥାନରେ ନ ପାଇ ସେମାନେ ଅନ୍ୟ ସ୍ଥାନରୁ କେତେକ ହିନ୍ଦୁ ପଣ୍ଡିତଙ୍କୁ ଡକାଇ ଆଣିଥିଲେ । ଓଡ଼ିଶାର ପ୍ରାଚୀନ ବିଶ୍ୱବିଦ୍ୟାଳୟର ଧ୍ୱଂସ ବିଷୟରେ ସେପରି କିଛି ପ୍ରମାଣପୂର୍ଣ୍ଣ ପାରସ୍ୟ ଗ୍ରନ୍ଥ ମିଳେନାହିଁ । ତେବେ ଜନଶ୍ରୁତିରୁ ଜଣାଯାଏ, ଏକଦା ଯାଜପୁରରେ ପ୍ରବଳ ଝଡ଼ ହୋଇ କେବଳ ମଦ ଓ ଗୋମାଂସ ବୃଷ୍ଟିପାତ ହେଲାରୁ ବ୍ରାହ୍ମଣ ଓ ବୌଦ୍ଧ ପଣ୍ଡିତମାନେ ଧର୍ମଗ୍ଲାନି ଭୟରେ ପଳାୟନ କଲେ । ଏହି କଥା ପଛରେ ଏକ ବିରାଟ ଐତିହାସିକ ସତ୍ୟ ନିହିତ ଅଛି । ତାହା ହେଉଛି ହିନ୍ଦୁ ରାଜତ୍ୱର ଅବସାନରେ ଓ ପଠାଣ ମୋଗଲ ରାଜତ୍ୱ ସମୟରେ—ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ଧ୍ୱଂସ ସାଧିତ ହେଲା । ଆଚାର୍ଯ୍ୟ ଓ ପଣ୍ଡିତଗଣ ଧର୍ମ ଓ ବିଶ୍ୱବିଦ୍ୟାଳୟ ରକ୍ଷା କରିବାକୁ ପ୍ରାଣବଳି ଦେଇଥିବେ ଓ କେତେକ ପୁଷ୍ପଗିରିରୁ ପଳାଇ ନିର୍ଜନ ଗିରିଗହ୍ୱରରେ ଆଶ୍ରୟ ନେଇଥିବେ । କେତେକ ବା ଭାରତ ଛାଡ଼ି ନେପାଳ, ତିବ୍ବତ ବା ଭାରତ ମହାସାଗରସ୍ଥ ବାଲି ଦ୍ୱୀପକୁ ପଳାୟନ କରିଥିବେ; କିନ୍ତୁ ଏ ସମସ୍ତ ଅନୁମାନ ଛଡ଼ା ଆଉ କିଛିନୁହେଁ । କାଳକ୍ରମେ ପୁଷ୍ପଗିରି ଜନଶୂନ୍ୟ ହେଲା । ସେହିଦିନୁ କାଳର କରାଳ କବଳରେ ଶୀତ, ବର୍ଷା, ଗ୍ରୀଷ୍ମ ସହ୍ୟ କରି ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ଆସ୍ଥାନ ଉଦୟଗିରି କ୍ରମେ ନିବିଡ଼ ଅରଣ୍ୟରେ ପରିଣତ ହୋଇ ବ୍ୟାଘ୍ର, ଭଲ୍ଲୁକ ଓ ବିଷଧର ସର୍ପଙ୍କର ଲୀଳାଭୂମି ହୋଇ ପଡ଼ି ରହିଛି । କିନ୍ତୁ ପ୍ରସ୍ତରମୂର୍ତ୍ତିଗୁଡ଼ିକ ଉତ୍କଳୀୟଙ୍କୁ ଉଦ୍‌ବୋଧନ ଦେଇ ନୀରବ ଭାଷାରେ କହୁଅଛନ୍ତି, "ହେ ଉତ୍କଳୀ ନିଜର ପୂର୍ବ ଗୌରବ ସ୍ମରଣ କରି ଉଦ୍‌ବୁଦ୍ଧ ହୁଅ ।"

[ ଝଙ୍କାର ୫ମ ବର୍ଷ ୪ର୍ଥ ସଂଖ୍ୟା ]

# ମହାଭାରତର ରାଜନୀତି

ଶ୍ରୀ କାଳିଆ ପାଣିଗ୍ରାହୀ

ରକ୍ତ ନଦୀ ଅତିକ୍ରମ କରି ପରିଶେଷରେ ଧର୍ମବୀର ଯୁଧିଷ୍ଠିର ହସ୍ତିନା ସିଂହାସନ ଲାଭ କଲେ । ରାଜା ହେବାପରେ ସେ ଭୀମଙ୍କୁ ଯୁବରାଜ ରୂପେ ନିଯୁକ୍ତ କଲେ । ରାଜାଙ୍କ ତଳେ ଜଣେ ଯୁବରାଜ ରଖାଯିବା ପ୍ରଥା ଭାରତର ରାମାୟଣ ଯୁଗରୁ ଚାଲି ଆସୁଥିଲା । ପ୍ରକୃତ ଅର୍ଥରେ ଯୁଧିଷ୍ଠିର ଏହି ଭାରଟି ଭୀମଙ୍କ ହସ୍ତରେ ନ୍ୟସ୍ତ କଲେ । ଲଙ୍କାରୁ ପ୍ରତ୍ୟାଗତ ହୋଇ ମହାରାଜା ରାମଚନ୍ଦ୍ର ନିଜ ଭାଇ ଭରତଙ୍କୁ ଯୌବରାଜ୍ୟ ପଦ ଅର୍ପଣ କରିବା ବିଷୟ ରାମାୟଣ କହେ । ବିଦୁର ହେଲେ ହସ୍ତିନା ରାଜାଙ୍କର ପ୍ରଧାନ ମନ୍ତ୍ରୀ । ଅନ୍ଧରାଜା ଧୃତରାଷ୍ଟ୍ରଙ୍କ ଭୂତପୂର୍ବ ଅମାତ୍ୟ ସଞ୍ଜୟଙ୍କୁ ଅର୍ଥ-ସଚୀବ କାର୍ଯ୍ୟ ଦିଆଗଲା । ସେ ମନ୍ତ୍ରୀ ପରିଷଦରେ ଜଣେ ପ୍ରଧାନ ମନ୍ତ୍ରୀ ହୋଇ ରହିଲେ । ରାଜ୍ୟର ଆୟ ବ୍ୟୟ ବିଭାଗ ତାଙ୍କ ଅଧୀନରେ ରହିଲା । ନକୁଳଙ୍କୁ ସେନା-ବେତନ-ଦାୟକ ରୂପେ ନିଯୁକ୍ତ କରାଗଲା । ଅର୍ଜ୍ଜୁନ ହେଲେ ରାଜାଙ୍କର ପ୍ରଧାନ ସେନାପତି । ପୁରୋହିତ ଧୌମ୍ୟଙ୍କୁ ଧର୍ମ ବିଭାଗର ଅଧ୍ୟକ୍ଷ କରାଗଲା । ନିଜେ ରାଜା ଯୁଧିଷ୍ଠିର କୌଣସି ଗୋଟିଏ ବିଭାଗର ଭାର ନ ନେଇ ସବୁ ବିଭାଗ ତଦାରଖ କରୁଥିଲେ । ତାଙ୍କୁ ସାହାଯ୍ୟ କରୁଥିଲେ ସହଦେବ । ରାଜାଙ୍କର ବ୍ୟକ୍ତିଗତ ମନ୍ତ୍ରୀରୂପେ ରହି ରାମାୟଣ ଯୁଗର ସୁମନ୍ତ୍ରଙ୍କ ସହିତ ସହଦେବଙ୍କୁ ତୁଳନା କରାଯାଇ ପାରେ । ସେ ରାଜାଙ୍କର ପାରିବାରିକ ବିଷୟ ଓ ରାଜାନ୍ତଃପୁରର ପରିଚାଳନା ଭାର ମଧ୍ୟ ଗ୍ରହଣ କରିଥିଲେ । ଏହି ମନ୍ତ୍ରୀମାନେ ସମସ୍ତେ ରାଜାଙ୍କର ଭାଇ କିମ୍ବା ବନ୍ଧୁ । ସେମାନଙ୍କୁ ବେତନ ଦିଆ ଯାଉଥିଲା କି ନାହିଁ ଏ ସମ୍ବନ୍ଧେ ମହାଭାରତ ନୀରବ । ସେହି ଗ୍ରନ୍ଥରୁ ଏତିକି ଜଣାଯାଏ ଯେ ପ୍ରତ୍ୟେକ ମନ୍ତ୍ରୀ ରହିବା ପାଇଁ ରାଜା ସ୍ୱତନ୍ତ୍ର ବାସଭବନ ଦେଇଥିଲେ । ସେମାନଙ୍କର ଅନ୍ୟାନ୍ୟ ଦାୟିତ୍ୱ ମଧ୍ୟ ରାଜକୋଷରୁ ହେଉଥିଲା ବୋଲି ଅନୁମାନ କରିବା ଯୁକ୍ତିହୀନ ହୋଇ ନ ପାରେ ।

ମହାଭାରତର ଶାନ୍ତି ପର୍ବ ରାଜନୀତିର ଗୋଟିଏ ପ୍ରକୃଷ୍ଟ ପନ୍ଥା । ସେହି ନୀତିର ବକ୍ତା ଅଟନ୍ତି ଭୀଷ୍ମ ଏବଂ ଶ୍ରୋତା ଭଗବାନ ଶ୍ରୀକୃଷ୍ଣ ଓ ପାଣ୍ଡବମାନେ । ଶାନ୍ତି ପର୍ବରୁ ଜଣାଯାଏ ଭୀଷ୍ମ ଜଣେ ଅଦ୍ୱିତୀୟ ରାଜନୀତିଜ୍ଞ । ଭୀଷ୍ମଙ୍କ ଦ୍ୱାରା କଥିତ ରାଜନୀତି ଯେ ସେହି ଯୁଗରେ ପ୍ରଚଳିତ ଥିଲା ଏହା ସନ୍ଦେହ କରିବା ପାଇଁ କୌଣସି କାରଣ ନାହିଁ । ଶାନ୍ତିପର୍ବରୁ ଆମ୍ଭେମାନେ ତତ୍କାଳୀନ ରାଜନୈତିକ ପରିସ୍ଥିତି ସଙ୍ଗେ ସଙ୍ଗେ

ସେହି ସମୟର ରାଜନୀତିଜ୍ଞମାନଙ୍କର ଶାସନ ସମ୍ବନ୍ଧୀୟ ଚିନ୍ତା ଓ ଧାରଣା ଜାଣିବାକୁ ସମର୍ଥ ହେଉଁ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଓ ଶୁକ୍ର ବା କାମନ୍ଦକଙ୍କ ନୀତିଶାସ୍ତ୍ରରୁ ଯେପରି ମୌର୍ଯ୍ୟ ଓ ତତ୍‌ପରବର୍ତ୍ତୀ ଐତିହାସିକ ଯୁଗର ଶାସନ ପ୍ରଣାଳୀ ଓ ରାଜନୀତି ଚିନ୍ତାର ଧାରା ଜଣାଯାଏ ସେହିପରି ଶାନ୍ତି ପର୍ବରୁ ପୌରାଣିକ ଯୁଗର ରାଜନୀତି ଜଣାଯାଏ ।

ରାଜନୀତିର ଅନ୍ୟ ନାମ ଦଣ୍ଡନୀତି । ଏହି ନୀତିର ଉଦ୍ଭବ ସମ୍ବନ୍ଧେ ଶାନ୍ତି ପର୍ବରେ ଯେଉଁ କଥାଟି କୁହାଯାଇଛି ତାହା ଐତିହାସିକ ନୁହେଁ, ରୂପକ । ଭୀଷ୍ମଙ୍କ ମତରେ ଦଣ୍ଡନୀତି ବ୍ରହ୍ମାଙ୍କଠାରୁ ଜାତ । ମାନବ ଇତିହାସର ପ୍ରାଥମିକ ଅବସ୍ଥାରେ ରାଜା ନ ଥିଲେ କି ରାଜ୍ୟ ନଥିଲା । ସମସ୍ତେ ସମାନ ଭାବେ ଜୀବନ ଯାପନ କରୁଥିଲେ । ଏହି ସାମ୍ୟ ଓ ପ୍ରାକୃତିକ ଅବସ୍ଥାରେ ପରସ୍ପର କଳହର ଅବକାଶ ନ ଥିଲା, କିଏ କାହାର ଅନିଷ୍ଟ କରିବାର ଆବଶ୍ୟକତା ନଥିଲା, ପୁଣି ଅନ୍ୟାୟ ନିମନ୍ତେ କାହାରିକୁ ଦଣ୍ଡଦେବା ବିଷୟ କମା ଉଠୁ ନ ଥିଲା । ମାତ୍ର ଏହି ସୁଖମୟ ଅବସ୍ଥା ଅଦୃଶ୍ୟ ହେଲା, ଯେତେବେଳେ ତାଙ୍କୁ ତାହାର ସ୍ୱାର୍ଥପରତା ଗ୍ରାସ କଲା । ପରିଣାମରେ ମାନବ-ସମାଜରେ ସ୍ୱାର୍ଥସଂଘର୍ଷ ହେତୁ ଦେଖା ଦେଲା କଳହ ଓ ଅଶାନ୍ତି । ପରିଶେଷରେ ସମାଜରେ "ମତ୍ସ୍ୟନ୍ୟାୟ" ପ୍ରବଳ ହେଲା । ବଳବାନ ଦୁର୍ବଳକୁ ଆସ୍ମତ୍ତ କରି ତାହାର ସ୍ୱାର୍ଥସିଦ୍ଧ କରିବାକୁ ଲାଗିଲା । ମନୁଷ୍ୟର ଏହି ଶାନ୍ତିହୀନ ଅବସ୍ଥା ଦେଖି ବ୍ରହ୍ମାଙ୍କ ମନରେ ମାନବ ଜାତି ପ୍ରତି କରୁଣା ଉଦୟ ହେଲା । ସେ ତେଣୁ ଦଣ୍ଡନୀତି ଶାସ୍ତ୍ର ପ୍ରଣୟନ କଲେ । ମହାଭାରତ କହେ ଯେ ଶିବ, ଇନ୍ଦ୍ର, ବୃହସ୍ପତି, ଶୁକ୍ର ପ୍ରଭୃତି ଦେବତାମାନେ କ୍ରମାନ୍ୱୟରେ ବ୍ରହ୍ମାଙ୍କର ବୃହତ୍‌କାୟ ପ୍ରକାଣ୍ଡ ଗ୍ରନ୍ଥଟିକୁ କ୍ଷୁଦ୍ର କରି ପରିଶେଷରେ ମନୁଷ୍ୟର ପାଠୋପଯୋଗୀ କରିପାରି ଥିଲେ ।

ଦଣ୍ଡନୀତି ପ୍ରଣୟନ ପରେ ତେଜସ ଓ ବିରାଜ ଦୁଇ ଜଣଙ୍କୁ ସଂସାରରେ ରାଜତ୍ୱ କରିବାକୁ ପଠାଗଲା । ବିରାଜ ଅନିଚ୍ଛୁକ ହେବାରୁ ରାଜ୍ୟ ଶାସନର ସମସ୍ତ ଭାର ତେଜସଙ୍କ ଉପରେ ପଡ଼ିଲା । ସେ ତେଣୁ ହେଲେ ମାନବ ଜାତିର ସର୍ବପ୍ରଥମ ରାଜା । ତାଙ୍କ ବଂଶଧରମାନେ କାଳକ୍ରମେ ରାଜ୍ୟ ପାଳନ କଲେ । ପରିଶେଷରେ ଜଣେ ଦୁଷ୍ଟ ରାଜା ରାଜ୍ୟଭାର ଗ୍ରହଣ କଲେ । ତାଙ୍କ ନାମ ବେଣ ବା ବେଣୁ । ସେ ଅତି ଅତ୍ୟାଚାରୀ ଓ ପ୍ରଜାପୀଡ଼କ ଥିଲେ । ଦିନକୁ ଦିନ ତାଙ୍କ ଅତ୍ୟାଚାର ବୃଦ୍ଧି ପାଇ ପରିଶେଷରେ ଅସହ୍ୟ ହୋଇ ପଡ଼ିଲା । ସାଧାରଣ ପ୍ରଜାଙ୍କ କଥା ଛାଡ଼, ଧୀର ସ୍ଥିର ମତି ଋଷିମାନେ ସୁଦ୍ଧା ବେଣୁଙ୍କ ଦୁଷ୍ଟ ରାଜତ୍ୱରେ ବିରକ୍ତ ହୋଇ ତାଙ୍କୁ ହତ୍ୟା କଲେ । ମାତ୍ର ବେଣୁଙ୍କ ମୃତ୍ୟୁପରେ ରାଜା ହେବା ପାଇଁ ତାଙ୍କର କେହି ବଂଶଧର ନ ଥିଲେ । ସିଂହାସନ ଖାଲି ପଡ଼ିଲା ଓ ରାଜ୍ୟ ଅରାଜକ ହେଲା । ଋଷିମାନେ ବେଣୁଙ୍କ ମୃତ ଶରୀରକୁ ଘର୍ଷିବାକୁ ଲାଗିଲେ । ତାହାର ଫଳରେ ବେଣୁଙ୍କ ଦେହରୁ ଗୋଟିଏ କଦାକାର, କୁତ୍ସିତ ରୂପ

ଜର୍ଜରିତ ହେଲା । ଏପରି ଜଣେ ବ୍ୟକ୍ତିଙ୍କୁ ରାଜା କରିବାକୁ କାହାରି ଇଚ୍ଛା ହେଲା ନାହିଁ । ବେଣୁଙ୍କ ଶରୀର ପୁନର୍ବାର ମନ୍ଥାଗଲା । ଏହିଥର ସେହି ଦେହରୁ ଜଣେ ଅପୂର୍ବ ଜ୍ୟୋତିର୍ମୟ ମୂର୍ତ୍ତି ଆବିର୍ଭୂତ ହେଲେ । ତାଙ୍କ ନାମ ପୃଥୁ । ସେ ରାଜାହୋଇ ପୃଥିବୀ ପରିପାଳନ କଲେ । ଉଲ୍ଲିଖିତ ପୌରାଣିକ ଗଳ୍ପଟି ଭାଗବତରେ ମଧ୍ୟ ଅଛି । ପୁରାତନ ରାଜନୀତି ଚିନ୍ତାର ଅଭିବ୍ୟକ୍ତି ବ୍ୟତୀତ ଏହା ଆଉକିଛି ନୁହେଁ । ଗଳ୍ପଟି ସତ୍ୟ ନୁହେଁ; ମାତ୍ର ଗଳ୍ପ ମୂଳରେ ଥିବା ଉଦ୍ଦେଶ୍ୟଟି ନିରାଟ ସତ୍ୟ ଓ ଅତିଶୟ ସ୍ୱାଭାବିକ । ମାନବ ଇତିହାସର ପ୍ରାଥମିକ ଅବସ୍ଥାରେ ରାଜାର ଆବଶ୍ୟକତା ନ ଥିଲା; ମାତ୍ର "ମତ୍ସ୍ୟ ନ୍ୟାୟ" ପରେ ଅରାଜକତା ଓ ଅଶାନ୍ତିର ଫଳ ସ୍ୱରୂପ ଦଣ୍ଡନୀତିର ସୃଷ୍ଟି ଆବଶ୍ୟକ ହେଲା । ବିଶୃଙ୍ଖଳ ସମାଜରେ ଶୃଙ୍ଖଳା ସ୍ଥାପନ କରିବା କୃତିତ୍ୱ ମନୁଷ୍ୟର, ବ୍ରହ୍ମାଙ୍କର ନୁହେଁ । ରାଜନୀତି କ୍ଷେତ୍ରରେ ଦୈବୀ ହସ୍ତକ୍ଷେପ ମଧ୍ୟର କଳ୍ପନାବ୍ୟତୀତ ଆଉ କିଛି ନୁହେଁ । ସମାଜରେ ଶାସନର ରୀତି ସମାଜର ବିକାଶ ସଙ୍ଗେ ସଙ୍ଗେ ଅଭିବୃଦ୍ଧି ଲାଭ କଲା । ବେଣୁଙ୍କ ଶବ ମନ୍ଥନ ଏହି ବିକାଶର ଗୋଟିଏ ରୂପକ କାହାଣୀ । ବିଶ୍ଳେଷଣ ଦ୍ୱାରା ଏହା ସ୍ପଷ୍ଟ ହୁଏ, ସମାଜରେ ଦଣ୍ଡନୀତି ବା ରାଜତ୍ୱର ମୂଳ କାରଣ ଅରାଜକତାର ସୃଷ୍ଟି । ଉତ୍ତମ ଶାନ୍ତିଶିଷ୍ଟଙ୍କ ପାଇଁ ଶାସନ ଅନାବଶ୍ୟକ, କାରଣ ସେମାନେ ଆତ୍ମସଂଯତ ଓ ସ୍ୱ-ଶାସିତ । ସମାଜ ଭିତରେ ଅରାଜକତା ଓ ଅନ୍ୟାୟ ପ୍ରବେଶ କଲେ କେହି କାହାକୁ ମାନେ ନାହିଁ, ସର୍ବଦା ପରସ୍ପର କଳହ ଲାଗେ ଓ ଅଶାନ୍ତିରେ କାଳ କଟାଇବାକୁ ସମସ୍ତେ ବାଧ୍ୟ ହୁଅନ୍ତି । ସେତେବେଳେ ସମାଜରେ ଏକପ୍ରକାର ମନ୍ଥନ ଚଳେ, ଅଶାନ୍ତି ଓ ଅନୀତି ବୃଦ୍ଧି ପାଏ, ଅତ୍ୟାଚାର ଅଧିକ ହୁଏ ଏବଂ ନ୍ୟାୟ ଓ ଶାନ୍ତିର ପ୍ରଭାବ ଊଣା ପଡ଼ିଯାଏ । ସେତେବେଳେ, ସାଗର ମନ୍ଥନରୁ ବିଷ ବାହାରିଲା ପରି, ଅଫଗାନିସ୍ଥାନରେ ବାଚ୍ଚାସାକ ପରି କେହି ଜଣେ ବଳବାନ ଦେଶର ସମସ୍ତ କ୍ଷମତା ନିଜ ହାତକୁ ବଳପୂର୍ବକ ନେଇଯାଇ ସମାଜର ଏକଚ୍ଛତ୍ରାଧିପତି ନିରଙ୍କୁଶ ମାଲିକ ହୋଇଯାଏ । ଏହାହିଁ ବେଣୁ ମନ୍ଥନରୁ ନିଷାଦର ଆବିର୍ଭାବ । ମାତ୍ର ଏପରି ଦୁଷ୍ଟ ରାଜତ୍ୱ ବେଶୀ ଦିନ ତିଷ୍ଠି ପାରେ ନାହିଁ, ଧୂମକେତୁ ପରି ଅତି ଶୀଘ୍ର ଅଦୃଶ୍ୟ ହୋଇଯାଏ । ଉତ୍ତମ ରାଜତ୍ୱ, ଶାନ୍ତି, ନ୍ୟାୟ ଓ ଆନୁସଙ୍ଗିକ ସକଳ ହିତକର କାର୍ଯ୍ୟ ଦେଶକୁ ଫେରିଆସେ । ସେତେବେଳେ ପ୍ରଜାମାନେ ରାଜାଙ୍କଠାରେ ସମସ୍ତ କ୍ଷମତା ଅର୍ପଣ କରି ଭାବନ୍ତି "ନରାଣାଂ ନରାଧିପଃ" ।

ମହାଭାରତ ଯୁଗରେ ପ୍ରଜାନିର୍ଭରଶୀଳ ରାଜତ୍ୱ ସର୍ବଶ୍ରେଷ୍ଠ ବୋଲି ବିବେଚିତ ହୋଇଥିଲା । ରାଜାଙ୍କର ନିରଙ୍କୁଶତା ଲାଘବ କରିବାକୁ, ତାଙ୍କର ଅତ୍ୟାଚାର ଓ ଅନ୍ୟାୟ ଅସମ୍ଭବ କରିବା ପାଇଁ ନାନାବିଧ ପ୍ରଣୀତ ହୋଇଥିଲା ମାତ୍ର ରାଜାହୀନ ରାଜ୍ୟର ଭାବ ତତ୍କାଳୀନ ଲୋକଙ୍କ ମନକୁ ଆଦୌ ସ୍ପର୍ଶ କରି ନ ଥିଲା । ରାଜା

ନ ଥାଇ ରାଜ୍ୟ ହେବ, ଏପରି ବିଷୟର କଳ୍ପନା କରିବାକୁ ତତ୍କାଳୀନ ଲୋକେ ଅସମର୍ଥ ଥିଲେ । ରାଜତନ୍ତ୍ର ହିଁ ସେ ସମୟର ଏକମାତ୍ର ତନ୍ତ୍ର ଥିଲା । ସୌର ଜଗତର ସୂର୍ଯ୍ୟପରି ରାଜା ଥିଲେ ରାଷ୍ଟ୍ରର କେନ୍ଦ୍ର ସ୍ଥଳରେ । ଆଉ ସବୁ ତାଙ୍କ ଚତୁର୍ଦ୍ଦିଗରେ ଘୂରୁଥିଲେ ଗ୍ରହମାନଙ୍କ ପରି । ସବୁ ଶକ୍ତିର ଏକମାତ୍ର କେନ୍ଦ୍ର ଥିଲା ରାଜଶକ୍ତି ।

ଏହି ରାଜକେନ୍ଦ୍ରୀଭୂତ ରାଷ୍ଟ୍ର ତନ୍ତ୍ରର ଏକ ଅଙ୍ଗ ଥିଲା ମନ୍ତ୍ରୀ ପରିଷଦ । ମନ୍ତ୍ରଣାହୀନ ଶାସନ ଉଚିତ ବୋଲି ବିବେଚିତ ହେଉ ନ ଥିଲା । ରାମାୟଣରେ ମନ୍ତ୍ରୀ-ମାନଙ୍କର ଆବଶ୍ୟକତା ଓ ପ୍ରାଧାନ୍ୟ ପୁଣି ସେମାନଙ୍କ କ୍ଷମତା ଓ କର୍ତ୍ତବ୍ୟ ବିଷୟ ବିଭିନ୍ନ ସ୍ଥାନରେ ବିଚାର କରାଯାଇଅଛି । ମହାଭାରତରେ ମଧ୍ୟ ଏହି ଗୁରୁତର ବିଷୟଟିର ସମ୍ୟକ୍ ଆଲୋଚନା ହୋଇଅଛି । ମହାଭାରତୀୟ ମନ୍ତ୍ରୀ ଚାରି ପ୍ରକାର; ସହାର୍ଥ, ଭଜମାନ, ସହଜ ଓ କୃତ୍ରିମ । ସହାର୍ଥ ମନ୍ତ୍ରୀ ମନରେ କିଛି ଗୋଟିଏ ଉଦ୍ଦେଶ୍ୟ ରଖି ତାଙ୍କର କାର୍ଯ୍ୟ କରନ୍ତି । ଯେଉଁ ମନ୍ତ୍ରୀମାନେ ରାଜାଙ୍କ ପୂର୍ବପୁରୁଷଙ୍କ ମନ୍ତ୍ରୀ ଥିଲେ, ବା ଯେଉଁମାନଙ୍କର ପୂର୍ବପୁରୁଷମାନେ ମନ୍ତ୍ରୀ କାର୍ଯ୍ୟ କରୁଥିଲେ ସେମାନେ ଭଜମାନ ମନ୍ତ୍ରୀ । ପୁରୁଷାନୁକ୍ରମେ ସେମାନେ ମନ୍ତ୍ରୀ ହୁଅନ୍ତି, ତେଣୁ ସେମାନଙ୍କର ଆବଶ୍ୟକତାସ୍ୱ ଅନୁଭୂତ ଥାଏ, ପୁଣି ପାରମ୍ପରିକ ଭାବେ ସେମାନେ ରାଜାଙ୍କର ବିଶ୍ୱାସଭାଜନ ଓ ଅନୁଗତ ହୋଇ ରହିଥାନ୍ତି । ମହାଭାରତ ମତରେ ଭଜମାନ ଜାତୀୟ ମନ୍ତ୍ରୀ ସର୍ବଶ୍ରେଷ୍ଠ । ତୃତୀୟ ପ୍ରକାର ମନ୍ତ୍ରୀ ରାଜାଙ୍କର ବନ୍ଧୁ ବାନ୍ଧବଙ୍କ ମଧ୍ୟରୁ ନିର୍ବାଚିତ ହେଉଥିଲେ । ସାଧାରଣରେ ରାଜମାତା ବା ରାଣୀଙ୍କ ବାନ୍ଧବମାନେ ଏହି କାର୍ଯ୍ୟ ପାଉଥିଲେ । ଏହି ଜାତୀୟ ମନ୍ତ୍ରୀ ସମସ୍ତଙ୍କ ଅପେକ୍ଷା ହୀନତମ ଓ ଅନିଷ୍ଟକାରକ । ତଦ୍ୱାରା ଶାସନ ଦୁର୍ବଳ ଓ ଶୃଙ୍ଖଳାହୀନ ହେବା ଅତିଶୟ ସ୍ୱାଭାବିକ । ସହଜ ମନ୍ତ୍ରୀ ନିର୍ବାଚନ ରାଜାଙ୍କ ଦୁର୍ବଳତାର ପରିଚାୟକ ଓ ରାଜ୍ୟର ଅନିଷ୍ଟ ସାଧକ । ଚତୁର୍ଥ ପ୍ରକାର ମନ୍ତ୍ରୀମାନଙ୍କର ଏକମାତ୍ର ଲକ୍ଷ୍ୟ ଧନାର୍ଜନ । ରାଜଭକ୍ତି କିମ୍ବା ପ୍ରଜାପ୍ରୀତି ସେମାନଙ୍କଠାରେ ସ୍ୱଳ୍ପ । ସେମାନଙ୍କ କର୍ତ୍ତବ୍ୟାଗ୍ରହ ଓ ଧନ ଲାଭ ମଧ୍ୟରେ ଘନିଷ୍ଠ ଅନୁପାତ ରହିଥିଲା । ସୁବର୍ଣ୍ଣ ହିଁ ରାଜାଙ୍କ ନିକଟରେ ସେମାନଙ୍କୁ ବାନ୍ଧି ରଖିଥିଲା । ହାର୍ଦ୍ଦିକ ସମ୍ବନ୍ଧ ସେମାନଙ୍କର ଆଦୌ ନ ଥିଲା ।

ମନ୍ତ୍ରୀମାନଙ୍କ ବ୍ୟତୀତ ଆହୁରି ଅନେକ ରାଜକର୍ମଚାରୀ ନିଯୁକ୍ତ ହେଉଥିଲେ । ସେମାନଙ୍କୁ ସେମାନଙ୍କର ଚରିତ୍ର ବଳ, ନ୍ୟାୟବୁଦ୍ଧି, ସତ୍ୟବାଦିତା, ନିଷ୍ପକ୍ଷପାତିତା ଓ ବିଶ୍ୱାସ ପରାୟଣତା ପ୍ରଭୃତି ଗୁଣ ପରୀକ୍ଷା କରି ରାଜକାର୍ଯ୍ୟରେ ନିଯୁକ୍ତ କରା ଯାଉଥିଲା । ମାତ୍ର ରାଜା କୌଣସି କର୍ମଚାରୀଙ୍କୁ ସମ୍ପୂର୍ଣ୍ଣ ବିଶ୍ୱାସ କରିବା ଅନୁଚିତ ଓ ବିପଜ୍ଜନକ ବୋଲି ମହାଭାରତର ସ୍ପଷ୍ଟ ଉପଦେଶ । ବିଶ୍ୱାସ ସୀମା ଲଙ୍ଘନ କଲେ ବିଷମୟ ଫଳ ନିଶ୍ଚିତ । ରାଜା ନିଜେହିଁ ନିଜର ଉପଦେଷ୍ଟା, ଅନ୍ୟ କାହା ଉପରେ ଏକାନ୍ତ ଭାବେ ନିର୍ଭରଶୀଳ ହେବା ଅନୁଚିତ ।

ପରିଷଦରେ ମନ୍ତ୍ରୀମାନଙ୍କର ସଂଖ୍ୟା ଶାନ୍ତି ପର୍ବରେ ବିଚାର କରାଯାଇଅଛି। ରାମାୟଣରେ ମଧ୍ୟ ଏହାର ବିଷଦ ଆଲୋଚନା ହୋଇଅଛି। ବହୁତ ଲୋକରେ ଯେପରି ମୂଷା ମରେ ନାହିଁ, ସେପରି ବହୁତ ମନ୍ତ୍ରୀଙ୍କ ଦ୍ୱାରା ରାଜ୍ୟ ଶାସନ ଭଲ ଚଳେ ନାହିଁ। ମନ୍ତ୍ରୀ ପରିଷଦର ସଦସ୍ୟ ସଂଖ୍ୟା ଅବଶ୍ୟ ଦିଆଯାଇଛି ସଇଁତିରିଶ; ମାତ୍ର ସାଧାରଣତଃ ଅଷ୍ଟ ପ୍ରଧାନ ପଣ୍ଡିତ ମନ୍ତ୍ରୀ ପରିଷଦ ମହାରାଜା ଦଶରଥଙ୍କଠାରୁ ଛତ୍ରପତି ଶିବାଜୀଙ୍କ ପର୍ଯ୍ୟନ୍ତ ଚାଲି ଆସିଛି। ମହାଭାରତରେ ମନ୍ତ୍ରୀ ପରିଷଦ ଗଠନ ପ୍ରଣାଳୀରେ ଜାତି ଓ ବର୍ଣ୍ଣର ବିଚାର କରାଯାଇଛି। ପରିଷଦରେ ସଦସ୍ୟ ସଂଖ୍ୟା ରଖାଗଲେ, ସେଥିରୁ ଚାରିଜଣ ହେବେ ବ୍ରାହ୍ମଣ, ଆଠ ଜଣ କ୍ଷତ୍ରିୟ, ଏକୋଇଶି ଜଣ ବୈଶ୍ୟ, ତିନି ଜଣ ଶୂଦ୍ର ଓ ଜଣେ ସୂତ ବା ରଥ ଚାଳକ। ପରିଷଦରେ ଜଣେ ପ୍ରଧାନ ମନ୍ତ୍ରୀ ରହିବେ। ପରିଷଦର ସଂଖ୍ୟା ଆଠ ହେଲେ ଚାରି ଜଣ ବ୍ରାହ୍ମଣ, ତିନି ଜଣ ଶୂଦ୍ର ଓ ଜଣେ ସୂତ ନିଯୁକ୍ତ ହେବେ। ଦ୍ୱିତୀୟ ପ୍ରକାର ପରିଷଦରେ କ୍ଷତ୍ରିୟ କିମ୍ବା ବୈଶ୍ୟ ମନ୍ତ୍ରୀଙ୍କ ପାଇଁ ସ୍ଥାନ ଦିଆଯାଇ ନାହିଁ। ଏପରି ବର୍ଣ୍ଣନାରୁ ପରିଷଦ ଗଠନ ସମ୍ବନ୍ଧେ କୌଣସି ନିର୍ଦ୍ଦିଷ୍ଟ ରୀତି ଜଣାଯାଏ ନାହିଁ; ମାତ୍ର ଏତିକି ଜଣାଯାଏ ଯେ ପୌରାଣିକ ଭାରତରେ ଉଚ୍ଚ ନୀଚ ସବୁ ଜାତିର ଲୋକେ ସର୍ବୋଚ୍ଚ ମନ୍ତ୍ରୀ କାର୍ଯ୍ୟ ପର୍ଯ୍ୟନ୍ତ ପାଇବାକୁ ତତ୍କାଳୀନ ବର୍ଣ୍ଣାଶ୍ରମ ଧର୍ମ କୌଣସି ପ୍ରକାର ପ୍ରତିବନ୍ଧକ ହେଉ ନଥିଲା; ପୁଣି ସବୁ ଜାତିର ଲୋକେ ମନ୍ତ୍ରୀ ହୋଇ ରାଜାଙ୍କ ନିକଟରେ ଏକାସନରେ ବସିବାକୁ ଅଧିକାର ପାଇଥିଲେ। ପରିଷଦରେ ବିଭିନ୍ନବର୍ଣ୍ଣର ମନ୍ତ୍ରୀ ରହିବାରୁ ତାହା ପ୍ରତିନିଧିମୂଳକ ହୋଇଥିଲା।

ଏହା ସତ୍ତ୍ୱେ ମନ୍ତ୍ରୀ ନିର୍ବାଚନ ଜାତିଗତ ହୋଇଥିଲା ବୋଲି ବୁଝିବାକୁ ହେବନାହିଁ। ରାଜା କେବଳ ବ୍ୟକ୍ତିଗତ ଗୁଣ ଉପରେ ନିର୍ଭର କରି ମନ୍ତ୍ରୀ ନିଯୁକ୍ତ କରୁଥିଲେ। ଭୀଷ୍ମଙ୍କ ମତରେ ଯେ କୌଣସି ଲୋକ (କୌଣସି ଜାତିର ପ୍ରତିନିଧି ବୋଲି) ମନ୍ତ୍ରୀ ପଦକୁ ଉନ୍ନୀତ ହେବା ଉଚିତ ନୁହେଁ। ସେମାନେ ଉଚ୍ଚକୁଳ ସମ୍ଭୂତ, ଶିକ୍ଷିତ, ଗଭୀର ପାଣ୍ଡିତ୍ୟ ପୂର୍ଣ୍ଣ, ସଚ୍ଚରିତ୍ର ଓ ଆତ୍ମ ସଂଯତ ହୋଇଥିବା ଆବଶ୍ୟକ। ସ୍ୱଦେଶୀ ମନ୍ତ୍ରୀ ବିଦେଶୀ ଅପେକ୍ଷା ନିଶ୍ଚୟ ସର୍ବଥା ନିର୍ବାଚନ ଯୋଗ୍ୟ। ସେ ରୂପବାନ ଓ ହୃଷ୍ଟଚିତ୍ତ ହୋଇ ଅନ୍ୟକୁ ସନ୍ତୁଷ୍ଟ କରୁଥିବା ଆବଶ୍ୟକ। ତାଙ୍କୁ ଗ୍ରାମ ଓ ସହର-ବାସୀଙ୍କର ନେତା ହେବାକୁ ହେବ। ତାଙ୍କଠାରେ ଧୈର୍ଯ୍ୟ, ଶାନ୍ତ ସ୍ୱଭାବ ଓ ଆତ୍ମ ବିଶ୍ୱାସ ରହିବା ଆବଶ୍ୟକ। କଥୋପକଥନ ବା ବାଦାନୁବାଦରେ ତାଙ୍କର ଅଭିନିବେଶ ଓ କୃତିତ୍ୱ ଥିବା ଦରକାର। ତାଙ୍କର ବଚନ ମଧୁର ହେବା ସଙ୍ଗେ ସଙ୍ଗେ ସେ କୂଟନୀତି ପରାୟଣ ମଧ୍ୟ ହେବା ଉଚିତ। ଶାସନର ଦ୍ୱିତୀୟ ପ୍ରଧାନ ଅଙ୍ଗ ଗୁପ୍ତଚର। ରାଜାଙ୍କ ଅନ୍ୟ ନାମ ଚାର ଚକ୍ଷୁ; ଏହି ବିଭାଗରେ ବିଚକ୍ଷଣ କୂଟନୀତି ବିଶାରଦ ଓ ପ୍ରତା-ରଣା ପୂର୍ଣ୍ଣ ବ୍ୟକ୍ତି ନିଯୁକ୍ତ ହେବା ଆବଶ୍ୟକ। ଶତ୍ରୁର ଶତ୍ରୁ ଗୁପ୍ତଚର ହେବା ପାଇଁ ଯୋଗ୍ୟ

ଅଟନ୍ତି । ସନ୍ନ୍ୟାସୀ ଓ ପାଷଣ୍ଡମାନେ ଏହି ବେଶରେ ନିଯୁକ୍ତ ହୋଇ ରାଜ୍ୟର ବିଭିନ୍ନ ସ୍ଥାନରୁ ସମ୍ବାଦ ଆଣନ୍ତି । ମଦ୍ୟ ଦୋକାନ, ସମ୍ବାଦ ଜାଣିବା ପାଇଁ ଗୁପ୍ତଚରମାନଙ୍କର ଗୋଟିଏ ପ୍ରଶସ୍ତ ସ୍ଥଳ; ଧର୍ମଶାଳା ଓ ଅତିଥିଶାଳା ମଧ୍ୟ ତଦ୍ରୂପ । ବିଦେଶାଗତ ଆଗନ୍ତୁକମାନେ ରାଜାଙ୍କ ବିରୁଦ୍ଧରେ ସେପରି ସ୍ଥାନରେ ରାଜଦ୍ରୋହୀମାନଙ୍କ ସଙ୍ଗେ ଷଡ଼ଯନ୍ତ୍ର କରିବା ଅତି ସ୍ୱାଭାବିକ ।

ରାଜଶକ୍ତିର ଦୁଇଟି ପ୍ରଧାନ ସ୍ଥାନ ସୈନ୍ୟ ବିଭାଗ ଓ ରାଜକୋଷ । ମହାଭାରତ କହେ, "ଯେଉଁଠାରେ ବଳ (ସେନା) ନାହିଁ ସେଠାରେ କୋଷ ରହି ନ ପାରେ ଓ ଯେଉଁଠାରେ କୋଷ ନାହିଁ ସେଠାରେ ବଳ ରହି ନ ପାରେ ।" ସୈନ୍ୟବଳ ଓ ଧନ ରାଜାଙ୍କର ଯେପରି ଅତ୍ୟନ୍ତ ଆବଶ୍ୟକ, ସେହିପରି ପରସ୍ପର ନିର୍ଭରଶୀଳ । ସବଳ ଓ ବିପୁଳ ସେନା ଥିଲେ ଧନ ଆଦାୟ ହୋଇ ନପାରେ; ମାତ୍ର ଧନ ନଥିଲେ ବିପୁଳ ସେନା ରଖିବା ଅସମ୍ଭବ । ତେଣୁ ପ୍ରତିଦିନ ରାଜା ଧନାଗାର ପ୍ରତି ଦୃଷ୍ଟି ଦେବେ ଓ ତାହାର ପୁଷ୍ଟି ସାଧନାରେ ବ୍ରତୀ ହେବେ । ପ୍ରତିଦିନ ରାଜକୋଷକୁ ଧନର ସ୍ରୋତ ବହିବା ଆବଶ୍ୟକ । ସଭ୍ୟତାମୂଳକ ଶାସନରେ କରଦାୟର ପନ୍ଥା ନିର୍ଣ୍ଣୟ ପ୍ରଧାନ । ଶାସନର ଭଲ ମନ୍ଦ ସେଥିରୁ ଜଣାଯାଏ । ସୁସଭ୍ୟ ସରକାରଙ୍କଠାରୁ ପ୍ରଜାପୁଞ୍ଜ ଯେଉଁ ଶାନ୍ତି ଓ ନିର୍ବିଘ୍ନ ଭାବ ଲାଭ କରନ୍ତି ତାହାର ମୂଲ୍ୟ ସ୍ୱରୂପ ସେମାନଙ୍କୁ ଖଜଣା ଦେବାକୁ ହୋଇଥାଏ । କର ଆଦାୟ ସମ୍ବନ୍ଧେ ଶାନ୍ତି ପର୍ବରେ କେତୋଟି ନିୟମ ବିଧିବଦ୍ଧ କରାଯାଇଅଛି । ସେଗୁଡ଼ିକ ବର୍ତ୍ତମାନକାଳୀନ ସରକାରଙ୍କର ମଧ୍ୟ ପ୍ରଣିଧାନ ଯୋଗ୍ୟ । ରାଜା ପ୍ରଜାଙ୍କଠାରୁ କର ଆଦାୟ କଲାବେଳେ ତାଙ୍କ ମନରେ ଲୋଲୁପତା କିମ୍ବା କ୍ରୋଧ ରହିବା ଅନୁଚିତ । ଉତ୍ତମ ରାଜା, ଯେତେ ପାରିବେ ସେତେ ନେବେ ବା ପ୍ରଜାମାନଙ୍କ ଉପରେ କର ଭାର ଲଦି ଦେଇ ସେମାନଙ୍କୁ ଦୁର୍ବଳ ଓ ସର୍ବସ୍ୱାନ୍ତ କରିଦେବେ, ଏପରି ଭାବ ପୋଷଣ କରନ୍ତି ନାହିଁ । ମାତ୍ର ରାଜାଙ୍କର ସଚ୍ଚିନ୍ତା ଓ ପ୍ରଜାଙ୍କ ଉପକାର କରିବା ଭାବ ଅସାଧୁ ଓ ବିଚକ୍ଷଣତାହୀନ କର୍ମଚାରୀଙ୍କ ଦ୍ୱାରା ପଣ୍ଡ ହୋଇଯାଏ । ମହାରାଜା ଅଶୋକ ମଧ୍ୟ ଠିକ୍ ଏହି ମନ୍ତବ୍ୟ ତାଙ୍କ ଶିଳାନୁଶାସନ ଗୁଡ଼ିକରେ ପରବର୍ତ୍ତୀ କାଳରେ ଲେଖାଇଥିଲେ । ତେଣୁ ନିର୍ଦ୍ଦୟ, କ୍ରୂର, ଲୋଲୁପ ଓ ଅଶିକ୍ଷିତ ବ୍ୟକ୍ତି ଉପରେ କର ଆଦାୟ ଭାର ନ୍ୟସ୍ତ କରିବା ଅନୁଚିତ । ମହାଭାରତ ସମୟରେ ଜମିର ସମୂହ ଆଦାୟ (gross produce) ର ଷଷ୍ଠାଂଶ ରାଜଭାଗ ରୂପେ ସ୍ଥିର ହୋଇଥିଲା । ବଣିକମାନେ ମଧ୍ୟ ସେମାନଙ୍କ ଲାଭର ନିୟମିତାଂଶ ରାଜାଙ୍କୁ କର ସ୍ୱରୂପ ଦେଉଥିଲେ । ଜମି ଓ ବାଣିଜ୍ୟ କର ବ୍ୟତୀତ ରାଜା ପ୍ରଜାଙ୍କଠାରୁ ଆୟକର ( income tax ) ମଧ୍ୟ ନେଉଥିଲେ । ରାଜକର୍ମଚାରୀମାନେ ଯେଉଁ ଦରମା ପାଉଥିଲେ ସେହି ଦରମା ଉପରେ ଏହି ଆୟକର ବସୁଥିଲା । କର ସମ୍ବନ୍ଧେ ନିୟମ ଥିଲା ଯେ ପ୍ରତ୍ୟେକ ଆଦାୟକାରୀ ତାହାର ଆଦାୟରୁ ରାଜାଙ୍କୁ ନିର୍ଦ୍ଦିଷ୍ଟ ଅଂଶ ପ୍ରଦାନ କରିବ,

ମାତ୍ର ଏପରି କେତେ ବୃତ୍ତି ଥିଲା ଯାହାର ଅବଲମ୍ବନରେ କୌଣସି ଧନାଦାୟ ହେଉ ନଥିଲା । ଯେଉଁ ବ୍ରାହ୍ମଣମାନେ ଆଧ୍ୟାତ୍ମିକ ଚର୍ଚ୍ଚାରେ ବ୍ୟସ୍ତ ରହି ଧନାଗମର ଉପାୟ କରୁ ନଥିଲେ ସେମାନଙ୍କଠାରୁ ରାଜା କୌଣସି କର ଗ୍ରହଣ କରୁ ନଥିଲେ; ମାତ୍ର ଏପରି କେତେ ବ୍ରାହ୍ମଣ ଥିଲେ ସେମାନେ ଅନ୍ୟ ବୃତ୍ତି ଅବଲମ୍ବନ କରି ଧନାଦାୟ କରୁଥିଲେ । ଯଥା:—ପତ୍ରବାହକ, ପୁରୋହିତ, ଜ୍ୟୋତିଷୀ । ସେମାନେ ରାଜାଙ୍କୁ ରାତିମତ କର ଦେଉଥିଲେ । ଯେଉଁ ବ୍ରାହ୍ମଣମାନେ ରାଜକର୍ମଚାରୀ ହୋଇ ବେତନ ପାଉଥିଲେ ଅନ୍ୟ କର୍ମଚାରୀମାନଙ୍କ ପରି ସେମାନେ ମଧ୍ୟ ରାଜାଙ୍କୁ ଆୟକର ଦେଉଥିଲେ । ଏହି ଭାବେ ମହାଭାରତ ଯୁଗରେ ଜାତିବର୍ଣ୍ଣ ବିଚାର ନଥାଇ ଆର୍ଥିକ ଅବସ୍ଥାକୁ ଧରି ପ୍ରତ୍ୟେକ ପ୍ରଜାଠାରୁ କର ଅସୁଲ କରାଯାଉଥିଲା ।

ପ୍ରଜାମାନଙ୍କ ଉପରେ ଅତ୍ୟଧିକ କର ପୀଡ଼ାର ଅନୌଚିତ୍ୟ ସମ୍ବନ୍ଧେ ମହାଭାରତର ମତ ଖୁବ୍ ସ୍ପଷ୍ଟ । ସେପରି କରିବା ରାଜାଙ୍କ ପକ୍ଷେ ଅନୁଚିତ ଓ ଅନ୍ୟାୟ । ତଦ୍ଦ୍ୱାରା କେବଳ ପ୍ରଜାଙ୍କର ନୁହେଁ, ରାଜାଙ୍କର ମଧ୍ୟ ଅନିଷ୍ଟ ଘଟେ । ଅଧିକ ଦୁଧ ଆଶାରେ ଅଜ୍ଞ ଲୋକ ଯେପରି ଗାଈର ପହ୍ନା କାଟି ଦିଏ, ସେହିପରି ଅତ୍ୟଧିକ ଅର୍ଥ-ଲୋଲୁପ ହୋଇ ରାଜା ପ୍ରଜାଙ୍କଠାରୁ ଅତ୍ୟଧିକ କର ଆଦାୟ କରି ସେମାନଙ୍କୁ ନିଃସ୍ୱ ଦୁର୍ବଳ କରି ପକାନ୍ତି । ସେପରି ରାଜା ଅଙ୍ଗାର ଲୋଭରେ ବୃକ୍ଷ ଜାଳିବା ବ୍ୟକ୍ତି ପରି ମୂର୍ଖ ଅଟନ୍ତି । ବଗିଚାରକ୍ଷକ ଯେପରି ତାହାର ବୃକ୍ଷଗୁଡ଼ିକୁ ଯତ୍ନରେ ପାଳନ କରି ଫଳ-ମୂଳ ଆଦାୟ କରେ ସେପରି ବୁଦ୍ଧିମାନ ରାଜା ପ୍ରଜାଙ୍କୁ କର ପୀଡ଼ା ନ ଦେଇ ନିଜେ ସମୃଦ୍ଧିଶାଳୀ ହୁଅନ୍ତି ।

କର ସଂଗ୍ରହର ଏହି କୋମଳ ନୀତିକୁ ସମୟେ ସମୟେ ରାଜାଙ୍କୁ ବ୍ୟତିକ୍ରମ କରିବାକୁ ହେଉଥିଲା । ଯେତେବେଳେ ସେ ଯୁଦ୍ଧରେ ପ୍ରବୃତ୍ତ ହେଉଥିଲେ ସେ ବାଧ୍ୟ ହୋଇ ପ୍ରଜାଙ୍କଠାରୁ ଅଧିକ କର ନେଉଥିଲେ । ସେପରି ଅସାଧାରଣ ପରିସ୍ଥିତିରେ, ଯେତେବେଳେ ରାଜ୍ୟକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବା ସମସ୍ତଙ୍କର ସର୍ବପ୍ରଥମ କାର୍ଯ୍ୟ, ସେତେବେଳେ ଅଧିକ କର ଦେବାକୁ ପଶ୍ଚାଦ୍‌ପଦ ହେବା ପ୍ରଜାମାନଙ୍କ ପକ୍ଷେ ମଧ୍ୟ ଶୋଭନୀୟ ନୁହେଁ, କି ରାଜ୍ୟ ପକ୍ଷରେ ମଙ୍ଗଳପ୍ରଦ ନୁହେଁ । ଯୁଦ୍ଧ ଦେଶର ଓ ଜାତିର—କେବଳ ଜଣେ ରାଜାଙ୍କର ନୁହେଁ; ତେଣୁ ଜାତିଠାରୁ ଅଧିକ କର ନେଇ ରାଜା ଯୁଦ୍ଧ ଚଳାଇଲେ ସେ ଦୋଷୀ ହୋଇ ନ ପାରନ୍ତି ।

ପ୍ରଜାଙ୍କଠାରୁ କର ସଂଗ୍ରହ କରି ରାଜକୋଷରେ ରଖି ଦେଲା ମାତ୍ରେ ରାଜାଙ୍କର କର୍ତ୍ତବ୍ୟ ଶେଷ ହୁଏ ନାହିଁ । ସେହି ଧନକୁ ପ୍ରଜାଙ୍କ ମଙ୍ଗଳ ସକାଶେ ବିନିଯୋଗ କରିବା ତାଙ୍କର ଦ୍ୱିତୀୟ ପ୍ରଧାନ କର୍ତ୍ତବ୍ୟ । ମହାଭାରତରେ କୁହାଯାଇଛି ଗ୍ରୀଷ୍ମକାଳରେ

ସୂର୍ଯ୍ୟ ବାଷ୍ପ ଆଦାୟ କରି ବର୍ଷା ଋତୁରେ ଯେପରି ବୃଷ୍ଟି ପ୍ରଦାନ କରେ, ସେହିପରି ରାଜା ପ୍ରଜାଙ୍କ ହିତାର୍ଥେ ସେମାନଙ୍କଠାରୁ ସଂଗୃହୀତ ଧନ ବ୍ୟୟ କରନ୍ତୁ । ପ୍ରଜାଙ୍କର ଆର୍ଥିକ ଅବସ୍ଥା ଠିକ୍ ରଖିବା ରାଜାଙ୍କର ଅନ୍ୟ ଏକ କର୍ତ୍ତବ୍ୟ । ସମସ୍ତ ପ୍ରଜାଙ୍କୁ ଅର୍ଥାଭାବରୁ ମୋଚନ କରିବା ତାଙ୍କର କାର୍ଯ୍ୟ । ରାଜାଙ୍କ ଆଦେଶ ହେଲେ କେବଳ ଧନୀ ଦରିଦ୍ରକୁ ସାହାଯ୍ୟ କରେ । ଦାନ ବା ଋଣ ପ୍ରଦାନ ଦ୍ୱାରା ଏପରି ସାହାଯ୍ୟ କରାଯାଇପାରେ । ରାଜାଙ୍କୁ ଦେଖିବାକୁ ହେବ, ସମାଜରେ ଏପରି ସାହାଯ୍ୟ କରାଯାଉଛି କି ନାହିଁ । ଦାରିଦ୍ର୍ୟ ଓ କ୍ଷୁଧାରୁ ପ୍ରଜାମାନଙ୍କୁ ବଞ୍ଚାଇ ରଖିବାରେ ରାଜାଙ୍କର କୌଣସି ଅବହେଳା ଶୋଭନୀୟ ନୁହେଁ । ରାଜା ନୀରବ ରହିଲେ ଧନୀମାନେ ଗରିବଙ୍କୁ କଦାଚ ସାହାଯ୍ୟ କରିବେ ନାହିଁ । ତେଣୁ ଧନୀମାନଙ୍କୁ ଜଣାଇଦେବା ଆବଶ୍ୟକ ଯେ ଦରିଦ୍ରଙ୍କୁ ସାହାଯ୍ୟ ସେମାନେ କରିବାକୁ ବାଧ୍ୟ । ଏପରି କରିବାକୁ ହେଲେ ପ୍ରଜାଙ୍କର ବ୍ୟକ୍ତିଗତ ଆର୍ଥିକ ବିଷୟରେ ରାଜାଙ୍କର ହସ୍ତକ୍ଷେପ ନିତାନ୍ତ ଦରକାର । ବ୍ୟକ୍ତିଗତ ସ୍ୱାଧୀନତା ନାମରେ ରାଜା ଏଥି ସମ୍ବନ୍ଧେ ନୀରବ ରହିଲେ ଦରିଦ୍ର ପ୍ରଜାଙ୍କର ହୀନାବସ୍ଥା କେବେ ଭଲ ହୋଇ ନ ପାରେ ।

ରାଜ୍ୟ ଶାସନର ସାଧାରଣ ନୀତି ବ୍ୟତୀତ ଶାସନର ଦୈନନ୍ଦିନ କାର୍ଯ୍ୟକଳାପ ପୁଣି ରାଜକର୍ମଚାରୀମାନଙ୍କ ବ୍ୟକ୍ତିଗତ କର୍ତ୍ତବ୍ୟ ଓ ପରସ୍ପର ସମ୍ବନ୍ଧ ମହାଭାରତରୁ ଜଣାଯାଏ । ରାଜତ୍ୱ ଚଳାଇବାକୁ ହେଲେ ରାଜାଙ୍କଠାରୁ ଆରମ୍ଭ କରି ସର୍ବନିମ୍ନ କର୍ମଚାରୀ ପର୍ଯ୍ୟନ୍ତ କ୍ରମାନୁସାରେ ଅନେକ କର୍ମଚାରୀ ନିଯୁକ୍ତ ହେବା ଆବଶ୍ୟକ । ମହାଭାରତର ଶାସନ ପିରାମିଡ଼ଟି ଗ୍ରାମରୂପ ଭିତ୍ତି ଉପରେ ସ୍ଥାପିତ ହୋଇଥିଲା । ପ୍ରତ୍ୟେକ ଗ୍ରାମରେ ଜଣେ ଗ୍ରାମାଧିକାରୀ ଥିଲେ । ଗ୍ରାମରେ ସେ ଥିଲେ ରାଜାଙ୍କର ପ୍ରତିନିଧି । ପ୍ରତ୍ୟେକ ଦଶଟି ଗ୍ରାମ ମିଶାଇ ଗୋଟିଏ ବିଭାଗ ହୋଇଥିଲା । ଏହି ବିଭାଗରେ ଜଣେ ପରିଚାଳକ ନିଯୁକ୍ତ ହୋଇଥିଲେ । ଏହିପରି ଶହେଗୋଟି ବିଭାଗ ମିଶାଇ ଗୋଟିଏ ବୃହତ୍ତ ବିଭାଗ କରା ଯାଇଥିଲା । ଏହି ବୃହତ୍ତର ବିଭାଗର ଅଧିକାରୀଙ୍କ ଅଧୀନରେ ଏକ ହଜାର ଗ୍ରାମ ରହୁଥିଲା । ଏହିପରି ନଣକେ ତଳେ ଜଣେ କର୍ମଚାରୀ ନିଯୁକ୍ତ ହେଉଥିଲେ । ବୃହତ୍ତମ ବିଭାଗୀୟ ଅଧିକାରୀଙ୍କ ସହିତ ରାଜାଙ୍କର ସାକ୍ଷାତ୍ ସମ୍ବନ୍ଧ ରହିଥିଲା । ମାତ୍ର ରାଜା କୌଣସି ରାଜକାର୍ଯ୍ୟ ନିଜେ ଏକାକୀ ନ କରି ଗୋଟିଏ ରାଜସଭାର ପରାମର୍ଶରେ କରୁଥିଲେ । ରାଜକୀୟ ସମସ୍ତ କାର୍ଯ୍ୟ ଓ ନିବେଦନ ତଳରୁ ଉପରକୁ ନିୟମାନୁସାରେ ଯିବାର ବିଧି ଥିଲା । ତେଣୁ କୌଣସି ବିଶୃଙ୍ଖଳା ନ ଥାଇ ରାଜକାର୍ଯ୍ୟ ପରିଚାଳିତ ହେଉଥିଲା । ପ୍ରତ୍ୟେକେ ସ୍ୱକୀୟ ସୀମାରେ ଆବଦ୍ଧ ହୋଇ ରାଜକାର୍ଯ୍ୟ ଚଳାଉଥିବାରୁ ତାହା ଭଲଭାବେ ଚଳୁଥିଲା । କୌଣସି କର୍ମଚାରୀଙ୍କ କର୍ତ୍ତବ୍ୟରେ ଅନ୍ୟ କୌଣସି କର୍ମଚାରୀ ବାଧା ଦେଉ ନ ଥିଲେ । ପରସ୍ପର କର୍ତ୍ତବ୍ୟ ବା ଅଧିକାର ଉପରେ ହସ୍ତକ୍ଷେପ

ଦୈନନ୍ଦିନ ଶାସନ ପରିଚାଳନାର ଗୋଟିଏ ଗୁରୁତର ଦୋଷ । ଏପରି ଅନଧିକାର-ଚର୍ଚ୍ଚା ହେଲେ କର୍ମଚାରୀମାନଙ୍କର ସ୍ୱ ସ୍ୱ କାର୍ଯ୍ୟରେ ଶ୍ରଦ୍ଧା କମିଯାଏ ଓ ଶାସନ ବିଶୃଙ୍ଖଳ ହୋଇପଡ଼େ ଏବଂ ବଳବାନ, ଧନୀ ଓ ପ୍ରଭାବଶାଳୀମାନେ କେବଳ ନିଜର ସ୍ୱାର୍ଥ ସିଦ୍ଧି କରି ଅନ୍ୟମାନଙ୍କର ଅମଙ୍ଗଳ କରନ୍ତି ।

ବିଚାର ବିଭାଗ ଶାସନର ଅନ୍ୟ ଏକ ପ୍ରଧାନ ଅଙ୍ଗ । ଦୋଷୀକୁ ଦଣ୍ଡ ଦେବାହିଁ ଦଣ୍ଡ ନୀତି । ଦୁଷ୍ଟ ଦମନ ଓ ଶିଷ୍ଟ ପାଳନ ଭଗବାନଙ୍କଠାରୁ ଆରମ୍ଭକରି ରାଜାଙ୍କର ବିଚାରପତି ପର୍ଯ୍ୟନ୍ତ ସମସ୍ତଙ୍କର ଗୋଟିଏ ପ୍ରଧାନ କାର୍ଯ୍ୟ । ଜଣେ ପ୍ରଜା ଅନ୍ୟ ପ୍ରଜା ବିରୁଦ୍ଧରେ ନିବେଦନ କଲେ ରାଜା ଗୋଟିଏ ସଭା ବସାଇ ସେ ବିଷୟ ବିଚାର କରିବା ଆବଶ୍ୟକ । ବିଚାର, ନ୍ୟାୟ ଓ ଦଣ୍ଡ ପ୍ରକାଶ୍ୟ ଭାବରେ ପୁଣି ଉତ୍ତମ ପରାମର୍ଶ ପରେ ହେବା ଉଚିତ । ବିଷୟଟି ବିଚାର କଲାବେଳେ ଉଭୟ ପକ୍ଷକୁ ବିଚାରାଳୟରେ ସାକ୍ଷ୍ୟ ଆଣିବାକୁ ସମାନ ସୁଯୋଗ ଦେବାକୁ ହେବ । ପୁଣି ବିଷୟଟିର ଆମୂଳଚୂଳ ବିଚାର କରିବାକୁ ହେବ । ସମୟେ ସମୟେ ଦାରିଦ୍ର୍ୟ, ପ୍ରଭାବହୀନତା, ଅପ୍ରିୟତା ଓ ବିପକ୍ଷ ପକ୍ଷର କୌଶଳ, ଧନ ଓ ପ୍ରଭାବ ହେତୁ କୌଣସି ବ୍ୟକ୍ତି ଉପଯୁକ୍ତ ସାକ୍ଷ୍ୟ ସଂଗ୍ରହ କରିବାକୁ ଅକ୍ଷମ ହୋଇପାରେ । ସେହିପରି ଅବସ୍ଥାରେ ଅତି ଜାଗ୍ରତ ଭାବେ, ସାକ୍ଷ୍ୟ ଉପରେ ଏକାନ୍ତ ନିର୍ଭର ନ କରି ବିଚାର କରିବା ଉଚିତ୍ । ସାକ୍ଷୀମାନେ ସମସ୍ତେ ସତ୍ୟବାଦୀ ନୁହନ୍ତି । ନାନା କାରଣରୁ ସେମାନେ ଅକୁଣ୍ଠିତ ଚିତ୍ତରେ ମିଥ୍ୟା ସାକ୍ଷ୍ୟ ଦିଅନ୍ତି । ତେଣୁ ଜାଗ୍ରତଭାବରେ ସାକ୍ଷ୍ୟ ବିଚାର କରି ନ୍ୟାୟ ଦେବା ଉଚିତ ।

କୌଣସି ବ୍ୟକ୍ତି ଦୋଷୀ କି ନିର୍ଦ୍ଦୋଷ ଜାଣିବାକୁ ରାଜା ବା ବିଚାରପତି ଯଥାସମ୍ଭବ ଚେଷ୍ଟା କରିବେ । ଯଦି ଦୋଷୀ ବୋଲି ଠିକ୍ ହେଲା ତେବେ ତାହାକୁ ଉପଯୁକ୍ତ ଦଣ୍ଡ ଦେବାରେ ଅବହେଳା କରିବେ ନାହିଁ । ନ୍ୟାୟ ସମ୍ମୁଖରେ ସମସ୍ତେ ସମାନ । ସେମାନେ ଧନୀ ହୁଅନ୍ତୁ, ନିର୍ଦ୍ଧନ ହୁଅନ୍ତୁ, ଉଚ୍ଚ ହୁଅନ୍ତୁ, ନୀଚ ହୁଅନ୍ତୁ; ଦୋଷକଲେ ଦଣ୍ଡ ପାଇବାକୁ ବାଧ୍ୟ । ନିରପେକ୍ଷ ବିଚାର ନ୍ୟାୟର ପ୍ରଧାନ ଗୁଣ । ନ୍ୟାୟ ସମ୍ମୁଖରେ ରାଜାଙ୍କର ପତ୍ନୀ ଓ ପୁତ୍ର ସୁଦ୍ଧା ଅନ୍ୟ ଲୋକଙ୍କ ସଙ୍ଗେ ସମାନ । ତେଣୁ ସେମାନେ ମଧ୍ୟ ଦୋଷ କଲେ ଅନ୍ୟଲୋକଙ୍କ ପରି ଦଣ୍ଡନୀୟ ହେବେ ।

ନ୍ୟାୟର ଗୋଟିଏ ଦୋଷ ହେଉଛି ପାରିପାର୍ଶ୍ୱିକ ଘଟଣା ଓ ଘଟଣାର ଅବସ୍ଥା ବିଚାର ନକରି କେବଳ ଆକ୍ଷରିକ ଅର୍ଥ ଉପରେ ନିର୍ଭର କରି ଦଣ୍ଡପ୍ରଦାନ କରିବା । ତଦ୍ଦ୍ୱାରା ଲୋକଙ୍କୁ ପ୍ରକୃତ ନ୍ୟାୟ ମିଳେ ନାହିଁ । କୌଣସି ଦୋଷୀର ଦଣ୍ଡ ବିଧାନ କରିବା ପୂର୍ବରୁ ବିଚାରପତିଙ୍କୁ ବୁଝିବାକୁ ହେବ କେଉଁ କାରଣରୁ, କି ଅବସ୍ଥାରେ ପଡ଼ି ପୁଣି କେଉଁ ପ୍ରକାର ମାନସିକତା ନେଇ ସେ ସେହି ଦୋଷ କରିଅଛି । ହୋଇପାରେ,

କୌଣସି ଜଣେ ଗରିବ ଉପବାସୀ ଉଦରଜ୍ଵାଳା ସମ୍ଭାଳି ନ ପାରି ତାହାର ନିର୍ଦ୍ଦିଷ୍ଟ ଧନୀ ପଡ଼ୋଶୀଘରୁ ଆହାର ଚୋରିକରି ଆଣିଛି । ନ୍ୟାୟର ଅକ୍ଷରିକ ଅର୍ଥ କହେ ଚୌର୍ଯ୍ୟାପରାଧ ସକାଶେ ଦୋଷୀ ଦଣ୍ଡାର୍ହ । ମାତ୍ର ଯେଉଁ ଅବସ୍ଥାରେ ଏହି ଅପରାଧ କରାଯାଇଅଛି ତାହାର ପ୍ରତିବିଧାନ କଦାଚ କୌଣସି ଦଣ୍ଡ ହୋଇ ନ ପାରେ । ବରଂ ଉପବାସୀର ଭରଣପୋଷଣ ନିମନ୍ତେ ପଡ଼ୋଶୀର ଉଦ୍‌ବୃତ୍ତ ଧନର ବ୍ୟବହାର ହିଁ ଉପଯୁକ୍ତ ନ୍ୟାୟ ବୋଲି ବିବେଚିତ ହେବା ଉଚିତ । ମାତ୍ର ଉତ୍ତମ ଅବସ୍ଥାରେ ଥାଇ ଯେ ଚୌର୍ଯ୍ୟବୃତ୍ତି ଅବଲମ୍ବନ କରେ ସେପରି ଲୋକର ଦଣ୍ଡ ମହାଭାରତ ମତରେ ନିର୍ବାସନ । ଏପରି କଠୋର ଦଣ୍ଡର ଉଦ୍ଦେଶ୍ୟ ପ୍ରଜାବର୍ଗଙ୍କୁ ସୁଖ ଶାନ୍ତି ଓ ନିରାପଦରେ ରଖିବା ।

କେଉଁ ଦୋଷର କି ଦଣ୍ଡ ହେବା ଆବଶ୍ୟକ, ମହାଭାରତରେ ଗୋଟିଏ ଦୀର୍ଘ ତାଲିକା ରହିଛି । ଏପରି ତାଲିକା ଦଣ୍ଡନୀତିମୂଳକ ପରବର୍ତ୍ତୀ ଗ୍ରନ୍ଥରେ ମଧ୍ୟ ଦେଖାଯାଏ ଦୋଷୀର ଆର୍ଥିକ ଓ ସାମାଜିକ ଅବସ୍ଥାକୁ ଧରି ଦଣ୍ଡ ନିରୂପଣ କରିବା ବିଧି ମହାଭାରତରେ କୁହାଯାଇଅଛି । କୌଣସି ଗୋଟିଏ ଦୋଷର ଦଣ୍ଡସ୍ୱରୂପ ଜଣେ ଧନୀ ବ୍ୟକ୍ତିଙ୍କୁ ଗୁରୁତର ଜରିମାନା ଧାର୍ଯ୍ୟ କରାଯାଇପାରେ । ମାତ୍ର ସେହି ଦୋଷ ପାଇଁ ଗରିବଙ୍କୁ ସେହି ଦଣ୍ଡ ଦିଆଯାଇ ନ ପାରେ । କାରଣ ଅଧିକ ଜରିମାନା ଦେବାକୁ ସେ ଅକ୍ଷମ । ତେଣୁ ନିର୍ଦ୍ଧନ ଦୋଷୀ ପକ୍ଷେ ଦଣ୍ଡ ଜରିମାନା ନ ହୋଇ କାରାବାସ ହେବା ଦରକାର । ଦୋଷକୁ ଦେଖି ଦଣ୍ଡ ଧାର୍ଯ୍ୟ କରିବା ବିହିତ ଅଟେ । ଧନୀ ପକ୍ଷେ, କାରାବାସ ଅପେକ୍ଷା ବେତ୍ରାଘାତ କଠିନତର ଦଣ୍ଡ । ବିଚାରାଳୟରେ ଦୋଷୀକୁ ଗାଳିଦେବା ମଧ୍ୟ ଏକପ୍ରକାର ଦଣ୍ଡ, ଯାହା ଉଚ୍ଚକୁଳୀନଙ୍କ ପାଇଁ ବ୍ୟବହାର କରାଯାଇପାରେ । ପ୍ରାଣଦଣ୍ଡ ସର୍ବୋଚ୍ଚ ଓ କଠିନତମ । ଏପରି ଦଣ୍ଡ ବର୍ଣ୍ଣସଙ୍କରକାରୀ, ରାଜଦ୍ରୋହୀ ଓ ନରହନ୍ତାମାନେ ପାଇବାକୁ ଯୋଗ୍ୟ ଅଟନ୍ତି । ଗୃହଦହନ ଅପରାଧୀଙ୍କୁ ମଧ୍ୟ ପ୍ରାଣ ଦଣ୍ଡ ଦିଆ ଯାଉଥିଲା । ପରଦାରାପହାରୀ ମଧ୍ୟ ମୃତ୍ୟୁଦଣ୍ଡ ପାଉଥିଲା । ଯେଉଁ ରମଣୀ ପରପୁରୁଷ ସଙ୍ଗେ ରତି କରୁଥିଲା ତାହାକୁ ହତ୍ୟାକରାଯାଇ ତାହାର ମାଂସକୁ କୁକୁରକୁ ଦିଆ ଯାଉଥିଲା ଓ ପୁରୁଷର ନିର୍ବସ୍ତ୍ର ଶରୀରକୁ ଶୁଷ୍କ ତୃଣରେ ଆଚ୍ଛାଦିତ କରି ଦଗ୍ଧ କରାଯାଉଥିଲା ।

ରାଜା କିମ୍ବା ତାଙ୍କ ବିଚାରପତିମାନଙ୍କୁ ସମାଜର ସବୁ ହାରଗୁହାରି ବିଚାରକରି ନ୍ୟାୟ ଦେବାକୁ ହେଉ ନ ଥିଲା । କାରଣ ଏପରି ଅନେକ ବିଷୟ ଥିଲା ଯାହା ଜାତିଗତ ସଭାରେ ନିଷ୍ପତ୍ତି କରାଯାଉଥିଲା । ପ୍ରତ୍ୟେକ ଗୋଷ୍ଠୀର ପରିଚାଳନ ନିମନ୍ତେ ଧର୍ମଶାସ୍ତ୍ର ଥିଲା । ଅନେକ ଅପରାଧର ପ୍ରାୟଶ୍ଚିତ୍ତ ବିଧାନ ଥିଲା । ଅନେକ ନିୟମ ଅଲିଖିତ ଓ ପାରମ୍ପରିକ ଭାବେ ଚାଲି ଆସୁଥିଲା । ପୁଣି ନୂତନ ଅବସ୍ଥାର ନୂତନ ଆବଶ୍ୟକତା ଅନୁସାରେ ନୂତନ ନିୟମ ପ୍ରଣୟନ କରା ଯାଉଥିଲା । ସେ କାଳର

ସମାଜ ବନ୍ଧନ ଖୁବ୍ ଶକ୍ତ ଥିଲା । ଲୋକମତ, ଲୋକନିନ୍ଦା, ସମାଜରୁ ବାହାର କରିଦେବା ଭୟ ପୁଣି ଲୋକମାନଙ୍କର ଧର୍ମଭୀରୁତା ସାମାଜିକ ନିୟମଗୁଡ଼ିକୁ ଖୁବ୍ ଦୃଢ଼ ରଖି ପାରିଥିଲା । ସମାଜରେ ବ୍ୟକ୍ତିଗତ ଚରିତ୍ରର ସମ୍ୟକ୍ ଉନ୍ନତି ନିମନ୍ତେ ମଧ୍ୟ କେତେକ ବିଧାନ ରହିଥିଲା । ଗୋଟିଏ ଦୃଷ୍ଟାନ୍ତରୁ ଏହା ସ୍ପଷ୍ଟ ହେବ । ମଦ୍ୟପାନ ପାଇଁ ଦଣ୍ଡ ନୀତିରେ କିଛି ଦଣ୍ଡ ନ ଥିଲା; ମାତ୍ର ସମାଜରେ ମଦ୍ୟପାନ ଘୃଣ୍ୟ ହେଉଥିଲା । ମଦ୍ୟ ପାନ କରିବା ଲୋକକୁ ପ୍ରାୟଶ୍ଚିତ କରିବାକୁ ହେଉଥିଲା । ସେ ନିୟମ ଅନୁସାରେ ମଦ୍ୟକୁ ତତାଇ ପାନ କରୁଥିଲା । ଗରମ ଓ ଶୀତଳ ମଦ୍ୟର ରୁଚି ଜାଣିବାକୁ ଲେଖକ ଅକ୍ଷମ । ମାତ୍ର ବୋଧହୁଏ ଗରମ ମଦ୍ୟପାନ ମଦ୍ୟପ ପକ୍ଷେ ରୁଚିହୀନ ଥିବାରୁ ଏପରି ବିଧାନ କରାଯାଇ ଥିଲା । ଏପରି ଅନେକ ସାମାଜିକ ବିଷୟ ସମାଜରେ କେବଳ ନିଷ୍ପତ୍ତି ହୋଇ ଯାଉଥିବାରୁ ବିଚାର ବିଭାଗର ମୂଲ୍ୟବାନ ସମୟ ଅନ୍ୟ ଗୁରୁତର କାର୍ଯ୍ୟରେ ବ୍ୟୟ କରାଯାଉଥିଲା ।

[ ଭଞ୍ଜ ପ୍ରଦୀପ ୧୪ଶ ଭାଗ ୨ୟ ସଂଖ୍ୟା ]



# ଅମ୍ବିରଦେବଙ୍କ ଓରୁଗଣ୍ଡି ଶାସନ

ଶ୍ରୀ ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦ୍ଦେବ, ରାଜା ବାହାଦୁର
M. L. C., F. A. U., M. R. A. S.
ପୁରାତତ୍ତ୍ୱ ବିଶାରଦ, ବିଦ୍ୟାବାଚସ୍ପତି

—ଶାସନର ଲିପି—

୧. ପ୍ରମାଦ ସମ୍ବତ୍ସର ମା
୨. ଘଶୁ ୧୦ ଶୁ ।। ଗଜପତି କ
୩. ପିଲେନ୍ଦ୍ର ମହାରାଯୁ
୪. ଲ କୁମାରୁଣ୍ଡା ଅ
୫. ମ୍ବୀର ଦେବ କୁମ ର ମହା
୬. ପାତ୍ରୁଣ୍ଡ୍ରୁ ବାରଣ୍ଡି
୭. କୋଟା ଗୋନେନୁ

—ସଂଶୋଧିତ ଲିପି—

୧. ପ୍ରମାଦ ସମ୍ବତ୍ସର ମା
୨. ଘଶୁ ୧୦ ଶୁ ।। ଗଜପତି କ
୩. ପିଲେନ୍ଦ୍ର ମହାରାଯୁ
୪. ଲ କୁମାରୁଣ୍ଡ୍ରୁ ଅ
୫. ମ୍ବୀର ଦେବକୁମାର୍ ମହା
୬. ପାତ୍ରୁଣ୍ଡ୍ରୁ ଓରୁଗଣ୍ଡି
୭. କୋଟା ଗୋନେନୁ

ଅର୍ଥ—

'ପ୍ରମାଦ ସମ୍ବତ୍ସର ମାଘ ମାସ ଶୁକ୍ଳପକ୍ଷ ଦଶମୀ ଶୁକ୍ରବାରେ ଗଜପତି କପିଲେନ୍ଦ୍ର ଦେବ ମହାରାଜାଙ୍କ କୁମାର ଅମ୍ବୀର ଦେବକୁମାର ମହାପାତ୍ର ବାରୁଗଣ୍ଡି ଗଡ଼ ଜୟ କଲେ ।'

ଏହି ଶାସନ ପଞ୍ଚଦଶ ଶତାବ୍ଦୀର ଅଟେ । ଏଥିରୁ ଉତ୍କଳସହ ତେଲିଙ୍ଗାନା ରାଜ୍ୟର ସମ୍ବନ୍ଧ କିପରି ଥିଲା, ବୁଝାଯାଏ । ଉତ୍କଳାଧୀଶ୍ୱର ବାମିନୀ ସୁଲତାନଙ୍କୁ ପରାଜୟ କରି ତେଲିଙ୍ଗାନା ରାଜ୍ୟ ମୁସଲମାନମାନଙ୍କ ଦୌରାତ୍ମ୍ୟ କବଳରୁ କିପରି ରକ୍ଷା କରିଥିଲେ, ତାହା ଜଣାଯାଏ । ତେଲିଙ୍ଗାନା ରାଜ୍ୟ ବର୍ତ୍ତମାନ ହାଇଦ୍ରାବାଦ ଷ୍ଟେଟର ପୂର୍ବଭାଗରେ ବିରାଜମାନ । ଉପର୍ଯ୍ୟୁକ୍ତ ଲିପି ତେଲିଙ୍ଗାନା ରାଜ୍ୟର ଓରୁଗାଣ୍ଡି ଗଡ଼ର ପଶ୍ଚିମ ଦ୍ୱାରସ୍ଥ ପ୍ରାକାରର ଭିତର ଦିଗକୁ ଖୋଦିତ ହୋଇଅଛି । ଏହି ଶାସନ ତେଲୁଗୁ ଲିପି ଓ ତେଲୁଗୁ ଭାଷାରେ ଗଦ୍ୟ ଶୈଳୀରେ ଏକ ବାକ୍ୟ ସାତ ପଂକ୍ତିରେ ଖୋଦିତ ହୋଇଅଛି । ଶାସନରେ କେତେଗୋଟି ବ୍ୟାକରଣ ଗତ ଦୋଷ ଥିବାର ଦେଖାଯାଏ । ବୋଧହୁଏ ଖୋଦନକାରୀ ଓଡ଼ିଆଭାଷୀ ହେବାରୁ ତେଲଗୁ ଭାଷାନଭିଜ୍ଞ ଥିବା ପ୍ରଯୁକ୍ତ ଏପରି ଭ୍ରମ ଘଟିଥିବାର ସମ୍ଭାବନା ।

ଭ୍ରମ ଯଥା:—ଚତୁର୍ଥ ପଂକ୍ତିରେ 'କୁମାରୁଣ୍ଡ,' ପରିବର୍ତ୍ତେ 'କୁମାରୁଣ୍ଡା', ଷଷ୍ଠ ପଂକ୍ତିରେ 'ପାତ୍ରୁଣ୍ଡୁ' ପରିବର୍ତ୍ତେ 'ପାତ୍ରୁଣ୍ଡୁ' ବୋଲି ଖୋଦିତ ହୋଇଅଛି; 'ଓରୁଗଣ୍ଡି କଣ୍ଠା' ପରିବର୍ତ୍ତେ 'ବାରଣ୍ଡି କୋଣ୍ଠା' ବୋଲି ଖୋଦିତ ହୋଇଅଛି। ବୋଧହୁଏ ଉଚ୍ଚାରଣ ଭ୍ରମରେ 'ଗ' ଅକ୍ଷର ଛାଡ଼ି ହୋଇ ଯାଇଅଛି। 'ବାରୁଗଣ୍ଡି' ବା 'ଓରୁଗଣ୍ଡି' ହୋଇଥିବ। ବର୍ତ୍ତମାନ ଅପଭ୍ରଂଶ ହୋଇ ଓରୁଙ୍ଗଲ ବା 'ଓରଙ୍ଗଲ' ହୋଇଅଛି।

ଏହି ଶାସନ ବାର୍ହସ୍ପତ୍ୟ ସମ୍ବତ୍ସର ପ୍ରମାଦ, ମାଘ ମାସ, ଶୁକ୍ଳପକ୍ଷ, ଦଶମୀ ଶୁକ୍ରବାର ଦିନ ଓରୁଗଣ୍ଡି ଗଡ଼ରେ ଖୋଦିତ ହୋଇଅଛି। ଏ ଶାସନରେ ଶକାବ୍ଦ ଦିଆଯାଇ ନାହିଁ; କିନ୍ତୁ କପିଳେନ୍ଦ୍ର ଦେବଙ୍କ ସମୟର ଅନ୍ୟାନ୍ୟ ସମସାମୟିକ ଘଟଣାରୁ 'ପ୍ରମାଦ' ସମ୍ବତ୍ସରକୁ କେଉଁ ଶକାବ୍ଦ ହୋଇଥିଲା, ସ୍ଥିର କରାଯାଇପାରେ। ଉତ୍କଳାଧୀଶ୍ୱର ମହାରାଜା କପିଳେନ୍ଦ୍ର ଦେବ ଗଜପତିଙ୍କ ଜନୈକ ଦାକ୍ଷିଣାତ୍ୟ ସଚିବ ଗଣଦେବ ଶକାବ୍ଦ ୧୩୭୬ 'ଯୁବା' ବାର୍ହସ୍ପତ୍ୟ ସମ୍ବତ୍ସରରେ 'କୋଣ୍ଡା ବିଡ଼ୁଗଡ଼'ରେ ଅବସ୍ଥାନ କରି ଶାସନ କରୁଥିବା ସମୟରେ 'ଚବଲି' ନାମକ ଗ୍ରାମର କେତେ ଜଣ ବ୍ରାହ୍ମଣଙ୍କୁ କେତେ ଭୂମିଦାନ କରିଥିଲେ। (ଇଣ୍ଡିୟାନ ଆଣ୍ଟିକ୍ୱାରିର XX ଭାଗର ପୃଷ୍ଠା ୩୭୦—୩୯୩)। ଶକାବ୍ଦ ୧୩୮୨ ବାର୍ହସ୍ପତ୍ୟ ସମ୍ବତ୍ସର 'ବିକ୍ରମରେ' ମହାରାଜା କପିଳେନ୍ଦ୍ର ଦେବ ଶ୍ରୀକୂର୍ମ ଦେବାଳୟକୁ ବିଗ୍ରହ ସହ ଗୋଟିଏ କାଂସ୍ୟ-ମୁଖା ପ୍ରଦାନ କରିଥିଲେ (ଖ୍ରୀ: ୧୮୯୬ ମାନ୍ଦ୍ରାଜ ଏପିଗ୍ରାଫିକାଲ ରିପୋର୍ଟର ପୃଷ୍ଠା ୨୮୪)। ଏତଦ୍‌ବ୍ୟତୀତ ରଘୁବଂଶସମ୍ଭୂତ ପରଶୁରାମ ଦେବଙ୍କ ପୁତ୍ର ବୀରଭଦ୍ର ଦେବ କଳି ଯୁଗାବ୍ଦ ୪୫୬୧ (ଶକାବ୍ଦ ୧୩୮୧) 'ପ୍ରମାଦ' ସମ୍ବତ୍ସର ଉତ୍ତରାୟଣ ଶିଶିର ଋତୁ ମାଘ ମାସ ଶୁକ୍ଳପକ୍ଷ ଦଶମୀ ଶୁକ୍ରବାର ମୃଗଶିରା ନକ୍ଷତ୍ର (ଖ୍ରୀ: ତା ' ରିଖ ଫେବୃୟାରୀ ମାସ, ୧୪୫୯) ରେ 'ଏକଶିଳା ନଗର' ଜୟ କଲାପରି ଓରୁଗଣ୍ଡି ଗଡ଼ରେ ଆଉ ଗୋଟିଏ ଶିଳା ଶାସନ ଖୋଦିତ ହୋଇଅଛି। M. Mss [ 15-4-5. P 106 ] ଏହି ଶାସନ ଏବଂ କୁମାର ଅମ୍ବିର ଦେବ ମହାପାତ୍ରଙ୍କ ଶାସନ ଏକ ଦିନରେ ଖୋଦିତ ହୋଇଥିଲା ପରି ବୋଧ ହୁଏ।

ଉତ୍କଳାଧୀଶ୍ୱର ଗଜପତି କପିଳେନ୍ଦ୍ର ଦେବଙ୍କ ପୁତ୍ର ଅମ୍ବିରଦେବ ମହାପାତ୍ର ଏବଂ ଉପର୍ଯ୍ୟୁକ୍ତ ରଘୁବଂଶ ସମ୍ଭୂତ ପରଶୁରାମଙ୍କ ପୁତ୍ର ବୀରଭଦ୍ର ଦେବଙ୍କ ସହ 'ଏକଶିଳାନଗର' ଜୟ କରି ଗଡ଼ ଆକ୍ରମଣ କଲାପରି ଓରୁଗଣ୍ଡି ଗଡ଼ର ଆଉ ଗୋଟିଏ ପୂର୍ବ ଓ ପଶ୍ଚିମ ଦ୍ୱାରମାନଙ୍କରେ ଏକ ସମୟରେ ଶାସନମାନ ଖୋଦନ କରାଇ ଅଛନ୍ତି [M. Mss 15-4-5. P. 107]। ଅତଏବ କୁମାର ଅମ୍ବିର ଦେବଙ୍କ ଶାସନର 'ପ୍ରମାଦ' ସମ୍ବତ୍ସରକୁ ସମସାମୟିକ ଶକାବ୍ଦ ୧୩୮୧ ହେବ। ସେପରି ହେବା ପକ୍ଷରୁ କୁମାର ଅମ୍ବିରଦେବ ମହାପାତ୍ର ଓରୁଗଣ୍ଡି ଗଡ଼ ବିଜୟର ସମୟ ଶକାବ୍ଦ ୧୩୮୧ ମାଘମାସ ଶୁକ୍ଳପକ୍ଷ ଦଶମୀ ଶୁକ୍ରବାରକୁ ଖ୍ରୀ: ତା ୧ରିଖ ଫେବୃୟାରୀ ମାସ ୧୪୫୯।

ଉତ୍କଳର ଗଙ୍ଗବଂଶୀୟ ଅଧୀଶ୍ୱରମାନଙ୍କର କୃତ୍ରିମଭାବେ ସିଂହାସନ ଆକ୍ରମଣ କରିଥିବା ସୂର୍ଯ୍ୟବଂଶୀୟ ସାମନ୍ତ ରାଜା କପିଳେନ୍ଦ୍ର ଦେବ ଶକାବ୍ଦ ୧୪୩୫ରେ ସିଂହାସନାରୂଢ଼ ହୋଇଥିଲେ। ସେ ଅନେକବାର ଦକ୍ଷିଣଦିଗକୁ ଜୈତ୍ରଯାତ୍ରା କରିଥିଲେ । ମହାରାଜା କପିଳେଶ୍ୱର ଦେବ ଖ୍ରୀ: ୧୪୫୫ ପୂର୍ବେ ପୂର୍ବ ସମୁଦ୍ରତୀରସ୍ଥ ସମସ୍ତ ଆନ୍ଧ୍ର ଦେଶ ଜୟକରି ବିଦ୍ୟାନଗରର ଅଧୀଶ୍ୱର ମଲ୍ଲିକାର୍ଜୁନ ରାୟଙ୍କ ରାଜଧାନୀ ଆକ୍ରମଣ କରି କର ପ୍ରଦାନ କରୁଥିଲେ । ଏ ଦକ୍ଷିଣ ଦିଗକୁ ବିଜୟଯାତ୍ରା କରିବାକୁ ଗିବା ସମୟରେ ବିଜୟବାଡ଼ା (ବେଜବାଡ଼ା)ର 'କନକଗଡ଼'ରେ ଅବସ୍ଥାନ କରୁଥିଲେ । ସେଠାରେ ଏହାଙ୍କର ଅନେକ ଦାକ୍ଷିଣାତ୍ୟ ଅମାତ୍ୟ ଅବସ୍ଥାନ କରୁଥିଲେ । କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ସମୟକୁ ତାଙ୍କ ସମକକ୍ଷ ଇତରେଶ୍ୱର ରାଜ୍ୟାଧିପତିମାନେ ଭାରତରେ କେହି ନ ଥିଲେ ।

ବେଜବାଡ଼ା ଜଙ୍ଗପୂଡ଼ି ଗ୍ରାମର ଶାସନରେ କପିଳେଶ୍ୱର ଦେବଙ୍କ କୁମାର ଅମ୍ବିର ଦେବ 'ପାପ ବିନାଶେଶ୍ୱର' ଶିବଙ୍କୁ 'ଜଙ୍ଗରେଡ୍ଡି ପଲ୍ଲୀ' ଦାନ କରିଥିଲେ [ମାନ୍ଦ୍ରାଜ ଏପିଗ୍ରାଫିକାଲ ରିପୋର୍ଟର ଖ୍ରୀ: ୧୯୧୩ର ୧୪୮ ପୃଷ୍ଠା] । ଏହାଙ୍କର ହମ୍ବିର କୁମାର ଓ ହମ୍ବିର ଦେବ ମହାପାତ୍ର ନାମାନ୍ତର ମଧ୍ୟ ଥିଲା । [ମାନ୍ଦ୍ରାଜ ଏପିଗ୍ରାଫିକାଲ ରିପୋର୍ଟ ଖ୍ରୀ: ୧୯୧୩ର ୧୫୭ ପୃଷ୍ଠା ଓ ଖ୍ରୀ: ୧୯୨୨ର ୮୩ ପୃଷ୍ଠା] । ମହମ୍ମଦୀୟ ଚରିତ୍ର ଲେଖକ ଫେରିସ୍ତା ଏହାଙ୍କୁ 'ଅମ୍ବରାୟ' ବୋଲି ମଧ୍ୟ ଉଲ୍ଲେଖ କରିଅଛନ୍ତି [Briggs' Frishta II.P.487] । ଅମ୍ବର ରାୟ ମହାପାତ୍ର ମହାରାଜା କପିଳେନ୍ଦ୍ର ଦେବଙ୍କ ପଟ୍ଟମହିଷୀଙ୍କ ପୁତ୍ର ନୁହନ୍ତି; କିନ୍ତୁ ମହାରାଜ କପିଳେନ୍ଦ୍ର ଦେବଙ୍କର ଅନ୍ତଃପୁରରେ ଥିବା କୌଣସି ରାଣୀଙ୍କର ପୁତ୍ର ଅଟନ୍ତି । ଏହାଙ୍କୁ କପିଳେନ୍ଦ୍ର ଦେବ ତେଲିଙ୍ଗାନା ପ୍ରଭୃତି ଦକ୍ଷିଣ ରାଜ୍ୟର ପ୍ରତିନିଧି ସ୍ୱରୂପ ରଖିଥିଲେ । କପିଳେନ୍ଦ୍ର ଦେବଙ୍କ ପଟ୍ଟମହିଷୀଙ୍କ କୁମାର ପୁରୁଷୋତ୍ତମ ଦେବ ଉତ୍କଳାଧୀଶ୍ୱର ପ୍ରତାପରୁଦ୍ର ଦେବଙ୍କ 'ଅନନ୍ତବରଂ ଦାନ ଶାସନ'ର ୮ମ, ୯ମ ଓ ୧୧ଶ ଶ୍ଳୋକରେ କୁମାର ଅମ୍ବିର ଓ ଯୁବରାଜ ପୁରୁଷୋତ୍ତମ ଦେବଙ୍କ ସମ୍ବନ୍ଧେ ନିମ୍ନଲିଖିତ ଭାବେ ଉଲ୍ଲେଖ ଅଛି—

'ପ୍ରସହ୍ୟ କର୍ଣ୍ଣାଟ ମହୀପତେଃ ପୁରୀଂ
ନିରୁଦ୍ଧ୍ୟ ବିଦ୍ୟାନଗରୀଂ ଜନୈ ର୍ନଜୈର୍ବଲୈଃ ।
ସମୁନ୍ନତଂ ମାନମିବୋଚ୍ଛ୍ରୟଂ କରଂ,
ସମାଦଦେ କର୍କଶ ଚକ୍ର ବିକ୍ରମଃ । ୮ ।
କୁମାର ହମ୍ବିର ବିଭୂର୍ଯଦାଜ୍ଞୟା
ବିଜିତ୍ୟ କାଞ୍ଚୀନ୍ତ୍ରଦଶଂ ପ୍ରତାପବାନ୍ ।

ଅଶୋଧୟୁଚ୍ଛାତ୍ର ବଣୋଣି ତୋଷିତାଂ
କୃପାଣିକାଂ ଦକ୍ଷିଣ ସାଗରାମୃତ । ୯ ।

× ×

ସୁତୋଽଭବତ୍ତସ୍ୟ ନରେନ୍ଦ୍ର ତେଜସଃ
ପୁରନ୍ଦରଶ୍ରୀ ପୁରୁଷୋତ୍ତମୋ ନୃପଃ ।
ବସୁନ୍ଧରା ଯତ୍ର ବସୁପମେ ଦଧୌ
ମନ୍ଦଧର ସ୍ତେମ୍ନି ପତିବ୍ରତା ବ୍ରଧଂ । ୧୧ ।'

ଅମ୍ବିର ଦେବ ବଡ଼ ପ୍ରତାପୀ ଓ ବଲବାନ ଥିଲେ । ବାମୁନି ରାଜ୍ୟର ସୁଲତାନ ଅଲାଉଦ୍ଦିନ ମହାମୁଦଙ୍କ ପ୍ରଧାନ ସରଦାର ସଞ୍ଜାରୁ ଖାନ ତେଲଙ୍ଗାନା ଦେଶରେ ଯୁଦ୍ଧରେ ପରାଜିତ ହେବା ବ୍ୟକ୍ତିଙ୍କୁ ବନ୍ଦୀକରି ସୁଲତାନଙ୍କ ନିକଟକୁ ପଠାଉ ଥିଲେ । ସୁଲତାନ ସେମାନଙ୍କୁ ମହମ୍ମଦୀୟ ମତରେ ଦୀକ୍ଷିତ କରାଉଥିବା ସମ୍ବାଦ ଶ୍ରବଣ କରି ଉତ୍କଳାଧୀଶ୍ୱର କପିଳେନ୍ଦ୍ର ଦେବ ବାମୁନି ସୁଲତାନଙ୍କୁ ତେଲଙ୍ଗାନା ରାଜ୍ୟରୁ ବିତାଡ଼ିତ କରିବା ନିଶ୍ଚୟ କରି ବାହାରିଲେ [ଇଣ୍ଡିୟାନ ଏଣ୍ଟିକ୍ୱେରି XX VIII ଖଣ୍ଡ, ପୃଷ୍ଠା 237] । ଖ୍ରୀ: ୧୪୫୭ରେ ସୁଲତାନ ହୁମାୟୁନ ସା କେତେକ ଅମୀର ସେନା ନାୟକ ସହ ୨୦୦୦୦ ଅଶ୍ୱାରୋହୀ, ୪୦ ହସ୍ତୀ ଓ ଅସଂଖ୍ୟ ପଦାତିସହ ଖ୍ୱାଜାଜହାନଙ୍କ ନେତୃତ୍ୱରେ 'ଦେବରକୋଣ୍ଡା' ଦୁର୍ଗ ନିକଟରେ କପିଳେନ୍ଦ୍ର ଦେବ ମହାରାଜାଙ୍କ ଅପାର ବାହିନୀ ଓ ୨୦୦ ଗଜ ସହ କୁମାର ଅମ୍ବିର ରାୟଙ୍କ ନେତୃତ୍ୱରେ ଯୁଦ୍ଧ ସଂଘଟିତ ହୋଇଥିଲା । ଅଭେଦ୍ୟ ବାମୁନି ଦୁର୍ଗ ଦେବରକୋଣ୍ଡା ଗଡ଼ରେ ନିଜେ ସୁଲତାନ ହୁମାୟୁନ ସାହା ଏହି ଦୁର୍ଗ ରକ୍ଷାର୍ଥ ଉପସ୍ଥିତ ଥିଲେ । ବହୁ ଦିନ ଧରି ଯୁଦ୍ଧ ଚାଲିଲା । ହୁମାୟୁନ ସାହା ଶେଷକୁ ପରାସ୍ତ ହୋଇ ଦୁର୍ଗ ଛାଡ଼ି ଚାଲିଗଲେ । କୁମାର ଅମ୍ବିର ଦେବ ଯବନମାନଙ୍କୁ 'କମ୍ମୁମେଟ୍ଟ' ଠାରେ ହରାଇଥିବା ବିଷୟ ନିମ୍ନଲିଖିତ ପ୍ରାଚୀନ ତେଲୁଗୁ ପଦ୍ୟରୁ ସ୍ପଷ୍ଟ ଜଣାଯାଏ ।

"ଯବନୁଲ ଗେଲ୍ଚିଡ଼େ ସୁମ୍ମରାୟୁଲୁ
କୃତ୍ତା ନେନ୍ଦେନା କାମ୍ମମୁ ମେଟା ଦାସ୍ଥାଲୁ ।"

ଯବନ ଶତ୍ରୁମାନଙ୍କୁ ସେ ବଦର ପର୍ଯ୍ୟନ୍ତ ତଡ଼ିନେଲେ । ସେହି ଅନୁଧାବନରେ ଅମ୍ବିର ରାୟ ବଦର ପର୍ଯ୍ୟନ୍ତ ସମସ୍ତ ରାଜ୍ୟ ଧ୍ୱଂସ କରିଥିଲେ । ଖ୍ରୀ: ୧୨୪୦ରେ ବଦର ଏଥିପୂର୍ବେ ଉତ୍କଳାଧୀଶ୍ୱର ଲାଙ୍ଗୁଡ଼ା ନରସିଂହ ଦେବଙ୍କ ଦ୍ୱାରା ପରାଭୂତ ହୋଇ ଉତ୍କଳାଧୀଶ୍ୱରଙ୍କ ଅଧୀନରେ ଥିଲା; କିନ୍ତୁ ପରବର୍ତ୍ତୀ ଗଙ୍ଗବଂଶୀୟ ରାଜାମାନଙ୍କ ରାଜତ୍ୱ ସମୟରେ ଉତ୍କଳ ରାଷ୍ଟ୍ର ଶକ୍ତିହୀନ ହୋଇଯିବାରୁ ବଦର ବାହାମୁଣୀ ରାଜ୍ୟର ଅନ୍ତର୍ଭୁକ୍ତ ହୋଇଯାଇଥିଲା । ତତ୍ପରେ ଦେବରକୋଣ୍ଡା ଗଡ଼ରେ

ସୈନ୍ୟସାମନ୍ତ ସାଜସଜ୍ଜା କରି ଖ୍ରୀ: ୧୪୫୧ରେ ଓରୁଟେଣ୍ଡି ଗଡ଼ ଆକ୍ରମଣ କରିଥିଲେ । ନିମ୍ନଲିଖିତ ତେଲୁଗୁ ଗ୍ରନ୍ଥ ପଦ୍ୟ ତାର ପ୍ରମାଣ—

"କାଟା କାମ୍ଭୁଲେପାଲ ଝାଜାବାଡ଼ା ବେଜାବାଡ଼ା ମଦିବାଣ୍ଡାରଲ୍ଲ୍ ସ୍ଥୋରୁବାଲ୍ଲ

× × ×

ଇଟି ଗାଜାଗଜ୍ ଶୌରିଏମ୍ଭ ଲେଲ୍ଲ୍ ବ୍ଭ୍ଡ଼ା
କୋଲଦମିରେନା ଦେବାସ୍ତ କୋଣ୍ଡା କୋଣ୍ଡା,
ନାକୁ କୋର୍କାଣ୍ଡି ସିଂହାମ୍ଭ ନଙ୍ଗିଲ ବରୁଦ୍
ଢଶାଲ ମୁଲୁ ସୃପୁ ଦାମେସ୍ତ ଢମ୍ମାଭୁପା ।"

ମହାରାଜା କପିଳେନ୍ଦ୍ର ଦେବଙ୍କ ଅଧୀନରେ ସୂର୍ଯ୍ୟବଂଶ ସମ୍ଭୂତ ଷଣ୍ଢଦେବ ମହାପାତ୍ରଙ୍କ ପୁତ୍ର ହମ୍ବିର ଦେବ ବୋଲି ଅନ୍ୟ ଜଣେ ସେନାଧକ୍ଷ ସିଂହାଚଳଠାରେ ଥିଲାପରି ଜଣାଯାଏ । ଏ ଶକାବ୍ଦ ୧୩୮୧ ମିଥୁନ ମାସ ଶୁକ୍ଳପକ୍ଷ, ଦଶମୀ, ରବିବାର ଦିନ [ଖ୍ରୀ. ୧୫୫୯] ସିଂହାଚଳସ୍ଥ ନୃସିଂହନାଥ ଦେବଙ୍କ ସନ୍ନିଧାନରେ ନିତ୍ୟ ବୀଣାବାଦନ କରିବାକୁ ନିର୍ଣ୍ଣୟ କରାଇଥିଲେ । ଏ ବ୍ୟକ୍ତି କୁମାର ଅମ୍ବିର ମହାପାତ୍ରଙ୍କଠାରୁ ସ୍ୱତନ୍ତ୍ର ଅଟନ୍ତି । ଯୁଦ୍ଧପରେ ତେଲିଙ୍ଗାନାର ପ୍ରତିନିଧି ସିଂହାସନ ସକାଶେ ସେନାପତି ମଙ୍ଗଳରାୟ ଓ କୁମାର ଅମ୍ବିର ଦେବ ମହାପାତ୍ରଙ୍କ ମଧ୍ୟରେ ମନାନ୍ତର ହୋଇ ପରସ୍ପର ମଧ୍ୟରେ ଯୁଦ୍ଧ ସଙ୍ଘଟିତ ହୋଇଥିଲା । ଶେଷକୁ ଉତ୍କଳାଧୀଶ୍ୱର କପିଳେନ୍ଦ୍ର ଦେବ କୁମାର ଅମ୍ବିର ମହାପାତ୍ରଙ୍କୁ ତେଲିଙ୍ଗାନା ସିଂହାସନ ପ୍ରଦାନ କରିଥିଲେ । କୁମାର ଅମ୍ବିର ଦେବ ମହାପାତ୍ରଙ୍କର କପିଳେଶ୍ୱର ଦେବ ନାମକ ପୁତ୍ର ଥିଲେ । ଏ ଦକ୍ଷିଣ କପିଳେଶ୍ୱର ନାମରେ ଅଭିହିତ ହୋଇଥିଲେ । ଏ ଖ୍ରୀ: ୧୪୫୯ରେ କୋଣ୍ଡାବିଡ଼ୁ ଓ କୋଣ୍ଡାପଲ୍ଲୀରେ ଉତ୍କଳାଧୀଶ୍ୱର କପିଳେନ୍ଦ୍ର ଦେବ ମହାରାଜାଙ୍କ ଅଧୀନରେ ନିଜ ପିତାଙ୍କ ତତ୍ତ୍ୱାବଧାନରେ ରାଜତ୍ୱ କରୁଥିଲେ । କୁମାର ଅମ୍ବିର ଦେବ ମହାପାତ୍ରଙ୍କ ତଦନନ୍ତର ତାହାଙ୍କ ପୁତ୍ର କୁମାର କପିଳେଶ୍ୱର ଦେବ ମହାପାତ୍ର କୋଣ୍ଡାବିଡ଼ୁ, କୋଣ୍ଡାପଲ୍ଲି, ଆଦାଙ୍କି, ବିନୁକୋଣ୍ଡା, ଦଣ୍ଡପାଡ଼ୁ, ପାଡ଼ାଇବିଡ଼ୁ ପ୍ରଭୃତି ତେଲିଙ୍ଗାନା ରାଜ୍ୟର ଗଡ଼ମାନଙ୍କର ଶାସକ ରୂପେ ରହି ଶାସନ କରୁଥିଲେ ଏବଂ ନିଜ ପିତାଙ୍କ ନାମରେ 'ଅମ୍ବିର ଭୋଗ' ଶକାବ୍ଦ ୧୩୮୬ [ଖ୍ରୀ:୧୪୬୪] 'ତାରଣ' ସମ୍ବତ୍ସର ମିଥୁନ ମାସ ତୃତୀୟା ଗୁରୁବାର ଦିନ ଦେଇଥିଲେ ବୋଲି 'ମୁଳୁରୁ ଶାସନ'ରୁ ଜଣାଯାଏ [ମାନ୍ଦ୍ରାଜ ଏପିଗ୍ରାଫିକାଲ ରିପୋର୍ଟ, ପୃଷ୍ଠା ୧୦୬, ପାରା ୪୭] ।

# ଯୌବନ

ସ୍ୱର୍ଗତ ଶଶିଭୂଷଣ ରାୟ

ବସନ୍ତ ସମାଗମରେ ତରୁଲତା ଯେପରି ନୂତନ ଜୀବନ ଲାଭକରନ୍ତି, ସେହିପରି ମନୁଷ୍ୟ ଯୌବନ ସୀମାରେ ପଦାର୍ପଣ କଲେ ଅଭିନବ ଶ୍ରୀ ଓ ଶକ୍ତି ସମନ୍ୱିତ ହୋଇଥାଏ। ଜୀବନର ସ୍ରୋତ ଗୋଟିଏ ନୂତନ ନାଳରେ ପ୍ରବାହିତ ହୋଇଥାଏ, ଯେପରି ଗୋଟିଏ ଗିରି-ନିର୍ଝରଣୀ ମହାନଦୀ ସହିତ ମିଳିତ ହେଲ। ବାଲ୍ୟ ଜୀବନର ପ୍ରବାହ ଅତି ଧୀରେ ଧୀରେ ଓ ଅଲକ୍ଷିତ ଭାବରେ ବହୁଥିଲା, ହଠାତ୍ ଯୌବନ ସଙ୍ଗମକୁ ଆସି ତରଙ୍ଗାକୁଳିତ ଚଞ୍ଚଳ ଚରଣରେ ମହାସାଗର ଅଭିମୁଖରେ ଧାବମାନ ହେଲା। ଏହି ସଙ୍ଗମରେ ଉପସ୍ଥିତ ହେଲେ ମନରେ ଆନନ୍ଦ, ଭୟ ଓ ବିସ୍ମୟ ମିଶ୍ରିତ ଗୋଟିଏ ଅନନୁଭୂତପୂର୍ବ ଭାବର ଉଦୟ ହୁଏ। ଯୌବନରେ ବାଲ୍ୟର ପରିଣତି ବାସ୍ତବିକ ଏତେ ବିସ୍ମୟକର ଯେ ମନେହୁଏ ଏହି ଆଶ୍ଚର୍ଯ୍ୟ ପରିବର୍ତ୍ତନ କୌଣସି ସୁନିପୁଣ ଐନ୍ଦ୍ରଜାଲିକର ବେଣୁଯଷ୍ଟି ସଞ୍ଚାଳନରେ ସମାଧିତ। ମହାକବି କାଳିଦାସ ଗୋଟିଏ ମାତ୍ର ଶ୍ଳୋକରେ ନବୋଦିତ ଯୌବନର କି ସୁନ୍ଦର ବର୍ଣ୍ଣନା କରିଅଛନ୍ତି:—

"ଅସମ୍ଭୃତଂ ମଣ୍ଡନମଙ୍ଗଯଷ୍ଟେରନାସବାଖ୍ୟଂ କରଣଂ ମଦସ୍ୟ
କାମସ୍ୟପୁଷ୍ପ ବ୍ୟତିରିକ୍ତମସ୍ତ୍ରଂ ବାଲ୍ୟାତ୍ ପରଂ ସାଥବୟଃ ପ୍ରପେଦେ।"

ଯୌବନରେ ଦେହରେ ଯେଉଁ ଶୋଭା ହୁଏ ତାହା ଅଯତ୍ନସିଦ୍ଧ, ତାହା ମଣିମାଣିକ୍ୟ ସ୍ୱର୍ଣ୍ଣ-ରୌପ୍ୟାଦି ନିର୍ମିତ ଅଳଙ୍କାର ଭଳି ନାନାସ୍ଥାନରୁ ଆହୃତ ନୁହେ। ମଦ୍ୟପାନ ବ୍ୟତୀତ ଯୌବନରେ ଏକପ୍ରକାର ମତ୍ତତା ଜନ୍ମେହୁଏ। ଯୌବନଜନିତ ସୌନ୍ଦର୍ଯ୍ୟ ସହଜରେ ପ୍ରଣୟାକର୍ଷଣ କରିଥାଏ। ଯୌବନରେ ଯେପରି ଦୈହିକ ସୌନ୍ଦର୍ଯ୍ୟର ବିକାଶ ହୁଏ ମାନସିକ ପରିବର୍ତ୍ତନ ମଧ୍ୟ ତଦପେକ୍ଷା କୌଣସି ଅଂଶରେ ନିକୃଷ୍ଟ ନୁହେ। ବସନ୍ତ ଯେପରି କୁସୁମ କୁଳର ସୁପ୍ତ ସୌରଭକୁ ପୁଷ୍ପ ଗର୍ଭରୁ ଜାଗ୍ରତ କରାଏ, ସେହିପରି ଯୌବନ ମଧ୍ୟ ମାନବ ହୃଦୟ ନିହିତ ବିଚିତ୍ର ଭାବନାଚୟକୁ ପ୍ରସ୍ଫୁଟିତ କିମ୍ବା ଜାଗ୍ରତ କରାଏ। ଫଳତଃ ବିଧାତା ମାନବକୁ ବିନା ପ୍ରାର୍ଥନାରେ ଯେଉଁ ସମସ୍ତ ଅମୂଲ୍ୟ ବର ଦଅନ୍ତି ତନ୍ମଧ୍ୟରୁ ଯୌବନ ସର୍ବଶ୍ରେଷ୍ଠ। ଯୌବନହିଁ ମାନବ-ଜୀବନର ସାରଭାଗ। ମନୁଷ୍ୟ ବାଲ୍ୟାବସ୍ଥାରେ ଯେପରି ଉଦ୍‌ଗ୍ରୀବ ହୋଇ ଯୌବନର ପ୍ରତୀକ୍ଷା କରେ, ଯୌବନରେ ପ୍ରୌଢ଼ତ୍ୱ କିମ୍ବା ବାର୍ଦ୍ଧକ୍ୟ ଲାଭ ସକାଶେ କଅ କେବେ ସେଭଳି ଉତ୍ସୁକ ହୁଏ? ମଧୁମୟ ଯୌବନ ଚିରକାଳ ରହିଥାଉ ଏହା ସମସ୍ତଙ୍କର ଏକାନ୍ତ ବାସନା; କିନ୍ତୁ କାହାର ସାଧ୍ୟ ନାହିଁ ଯେ ଗମନୋନ୍ମୁଖ ଯୌବନକୁ ଧରିକି ପାଇଁ ସୁଦ୍ଧା

ଧର ରଖିପାରିବ । ଯୌବନ ଗ୍ରଳଗଲେ ମଧ୍ୟ ଯେଉଁ ପରିମାଣରେ ତାହାର ସ୍ମୃତି ଓ ଲୁପ୍ତାବଶେଷ ସଂରକ୍ଷିତ ହୁଏ, ପରବର୍ତ୍ତୀ ଜୀବନର ଅଧିକାଂଶ ତାହା ଉପରେ ନିର୍ଭର କରିଥାଏ । ଯେବେ କୌଣସି ବୃଦ୍ଧଙ୍କୁ ତାହାର ଜୀବନର କୁସୁମକାଳ କଥା ପଚ୍ରରିବ, ତାହାହେଲେ ଦେଖିବ ଯୌବନ ସ୍ମୃତିର କି ଆଶ୍ଚର୍ଯ୍ୟ ସଞ୍ଜୀବନୀ ଶକ୍ତି । ନିଜର ଯୌବନ-କାହାଣୀ କହୁଁ କହୁଁ ବୃଦ୍ଧର ଦୀପ୍ତିହୀନ ଚକ୍ଷୁରେ ଜ୍ୟୋତି ଦେଖାଦେବ । ଶୁଷ୍କ ଅଧର ପ୍ରାନ୍ତରେ ହାସ୍ୟର ବିଦ୍ୟୁତ୍ ଖେଳିବ ଏବଂ ନିର୍ଜୀବ ଧମନୀରେ ଶୋଣିତ ପ୍ରବାହ ସ୍ପନ୍ଦିତ ହେବ । ଜଣେ ତତ୍ତ୍ୱଦର୍ଶୀ ପଣ୍ଡିତ ଥରେ କହିଥିଲେ 'ସେକାଳ' ଓ 'ଏକାଳ'ର ଯେତେବେଳେ ତୁଳନାରେ ସମାଲୋଚନା ହୁଏ ସେତେବେଳେ ଲୋକେ ଯେ 'ସେକାଳର' ପ୍ରଶଂସା କରନ୍ତି, ବୃଦ୍ଧମାନେ ହିଁ ତାହାର ମୂଳକାରଣ । 'ସେକାଳ' ବୃଦ୍ଧର ଯୌବନର କାଳ ଏବଂ 'ଏକାଳ' ବୃଦ୍ଧର ଅବନତିର କାଳ । ସୁତରାଂ 'ସେକାଳର' ସ୍ମୃତି ତାହାକୁ ବଡ଼ ଭଲ ବୋଧହୁଏ ଏବଂ ବୃଦ୍ଧ ମୁଖରେ 'ସେକାଳର' ନିରବଚ୍ଛିନ୍ନ ସୁଖ୍ୟାତି ଶୁଣି ସେକାଳର ସର୍ବତୋଭାବରେ ଅନଭିଜ୍ଞ ଏକାଳର ଲୋକ ମଧ୍ୟ ତହିଁରେ ହିଁ ଭରନ୍ତି । ଏହିପରି 'ସେକାଳର' ପ୍ରଶଂସା ଆବହମାନକାଳରୁ ଚ୍ଳି ଆସୁଅଛି ।

ଯୌବନ କାହାର ଜୀବନରେ ଥରେ ବ୍ୟତୀତ ଦୁଇଥର ଆସେ ନାହିଁ । ଯୌବନରୂପ ମାହେନ୍ଦ୍ରଯୋଗର ପ୍ରତ୍ୟେକ ମୁହୂର୍ତ୍ତ ଉପରେ ଭାବୀ ଜୀବନର ସାରବତ୍ତା ନିର୍ଭର କରେ । ଏହା ସମସ୍ତଙ୍କର ସ୍ମରଣ ରଖିବା କର୍ତ୍ତବ୍ୟ ।

ଜୀବନର ସରସ ବସନ୍ତରେ ନିତାନ୍ତ ଅରସିକ ଲୋକ ମଧ୍ୟ କିଯ୍ତ୍-ପରିମାଣରେ କବି ହୋଇ ଉଠେ । ତରୁଣର ଚକ୍ଷୁକୁ ସଂସାରର ସମସ୍ତ ବସ୍ତୁହିଁ ସୁନ୍ଦର ଓ କାବ୍ୟମୟ ଦିଶେ । ଜଣେ ସୂକ୍ଷ୍ମଦର୍ଶୀ ସମାଲୋଚକ କହିଥିଲେ ଯେ ଅନ୍ତର୍ଜଗତ ଓ ବହିର୍ଜଗତର ପରସ୍ପର ଘାତ-ପ୍ରତିଘାତରେ କାବ୍ୟର ଜନ୍ମ । ବାହ୍ୟ ପ୍ରକୃତିର ସୌନ୍ଦର୍ଯ୍ୟର କୌଣସି ପରିବର୍ତ୍ତନ ନ ଘଟିଲେ ମଧ୍ୟ ଆମ୍ଭମାନଙ୍କ ମାନସିକ ଏବଂ ଦୈହିକ ଅବସ୍ଥା ଭେଦରେ ଆମ୍ଭେମାନେ ତହିଁରେ କେତେ ବିଭିନ୍ନ ଭାବ ଆରୋପ କରିଥାଉଁ । ଯୌବନର ଅଭିନବ ଉଦ୍ୟମ, ଆଶା ଓ ସ୍ଫୂର୍ତ୍ତି ମିଳିତ ହୋଇ ଯେଉଁ ଅପୂର୍ବ ସ୍ପର୍ଶମଣିର ସୃଷ୍ଟି କରେ ତାହାର ସ୍ପର୍ଶରେ ସମସ୍ତ ସଂସାର କାଞ୍ଚନ-କାନ୍ତି ଧାରଣ କରିଥାଏ । ଜଣେ କବି କହି-ଅଛନ୍ତି, 'ଆଶା ଜାଗ୍ରତର ସ୍ୱପ୍ନ' । ଯେତେବେଳେ ଆୟୁର ଚହବିଲ ପରିପୂର୍ଣ୍ଣ ଥାଏ ଏବଂ ଦୈହିକ ଓ ମାନସିକ ଶକ୍ତିର କୌଣସି ଅପ୍ରତୁଳ ନ ଥାଏ ସେତେବେଳେ କୁହୁକିନୀ ଆଶା ଜୀବନକୁ ସ୍ୱପ୍ନମୟ କରିଦିଏ ।

ନବୀନ ଯୌବନରେ ଯେଉଁ ପ୍ରେମର ଉଦୟ ହୁଏ, ତାହାର ଅସ୍ତଗମନୋନ୍ମୁଖ କିରଣଚ୍ଛଟାରେ ଜୀବନ-ସନ୍ଧ୍ୟା ମଧ୍ୟ ଅନୁରଞ୍ଜିତ ହୁଏ । ବୃଦ୍ଧ-ବୃଦ୍ଧା ଯେତେବେଳେ

ପରସ୍ପରର ହାତ ଧରି ମୃତ୍ୟୁ ପଥରେ ଅଗ୍ରସର ହେଉ ଥାଆନ୍ତି ସେତେବେଳେ ମଧ୍ୟ ସେମାନଙ୍କର ସେହି ନବ ଅନୁରାଗର ସ୍ମୃତି ଗୋଟିଏ ଦୃଢ଼ଗ୍ରନ୍ଥି ରୂପେ ସେମାନଙ୍କର ହୃଦୟ ଶୃଙ୍ଖଳାର ବନ୍ଧନକୁ ଦୃଢ଼ତର କରିଥାଏ ।

ଯୌବନର ବନ୍ଧୁତ୍ୱ ମଧ୍ୟ କି ବିଚିତ୍ର ଓ ମନୋହର ! ବୃଦ୍ଧର ବର୍ଷ ଉତ୍ତରୁ ଚକ୍ଷୁରେ ପ୍ରଚକ୍ଷୁ ଦେଇ ନୂତନ ବନ୍ଧୁର ଅନ୍ୱେଷଣ ବିଡ଼ମ୍ବନା ମାତ୍ର । ଯୌବନ ବନ୍ଧୁ ସ୍ୱରୂପ ବନ୍ଧୁ କେଉଁଠାରୁ ମିଳିବ ? ସେ ସରଳତା, ସେ ହୃଦୟତା ଓ ସ୍ନେହଶୀଳତା, ସେ ଅକୃତ୍ରିମ ସହାନୁଭୂତି ଓ ଅପରିସୀମ ଅନୁରାଗ ଯୌବନ ସହିତ ବିଲୀନ ହୋଇଥାଏ । ଯୌବନ ଶେଷରେ ଏତିକି ବୁଝିବାକୁ ହେବ, ମନୁଷ୍ୟ ଯେପରି ଏକାକୀ ଆସି ଏକାକୀ ଚାଲିଯାଏ, ସେହିପରି ତାହାକୁ ନିଃସଙ୍ଗ ନିଃଶବ୍ଦରେ ଜୀବନର ଶେଷ ମାର୍ଗଟିକୁ ଅତିବାହିତ କରିବାକୁ ହେବ ।

ଯୌବନ ସୁଖର ପସରା ମୁଣ୍ଡରେ ବହନ କରି ଅବତୀର୍ଣ୍ଣ ହୋଇଥାଏ । ଏହି ହେତୁରୁ ଯୌବନରେ ସୁଖଭୋଗ କଷ୍ଟସାଧ୍ୟ ନୁହେ, ସୁଖର ମୂଳମନ୍ତ୍ର ଯୁବାର ହୃଦୟରେ ନିହିତ ରହିଥାଏ ବୋଲି ଏହି ନୀଳ ଆକାଶ, ଏହି ଶସ୍ୟ ଶ୍ୟାମଳା ବସୁନ୍ଧରା, ଏହି କୁସୁମ ଗନ୍ଧବାହୀ ସମୀରଣ, ଯାହା ସର୍ବସାଧାରଣରେ ନିର୍ବିଶେଷରେ ଉପଭୋଗ୍ୟ, ଯୁବକକୁ ସ୍ୱର୍ଗ ସୁଖରେ ସୁଖୀ କରେ । ସୁଖଭୋଗ କରିବା ପାଇଁ ତାହାକୁ କୌଣସି ପ୍ରକାର ବିଶେଷ ଆୟୋଜନ କରିବାକୁ ହୁଏନାହିଁ । ଅନେକ କଷ୍ଟକୁ ସେ କଷ୍ଟ ବୋଲି ମନେ କରେ ନାହିଁ, ବରଂ ମଧୁମକ୍ଷିକା ଯେପରି ତିକ୍ତ ସ୍ୱାଦ ଉଦ୍ଭିଦରୁ ମଧ୍ୟ ମଧୁ ସଂଗ୍ରହ କରେ ସେହିପରି ତରୁଣ ମଧ୍ୟ ଅନେକ ସମୟରେ କଷ୍ଟରୁ ଆମୋଦ ଲାଭ କରିଥାଏ । ଯୌବନରେ ମନର ସ୍ଥିତିସ୍ଥାପକତା ଗୁଣ ଏତେ ଅଧିକ ପରିମାଣରେ ଥାଏ ଯେ, ମନ ସହଜରେ ସ୍ତବ୍ଧ ହୋଇଯାଏ ନାହିଁ । ଗୋଟିଏ ଦ୍ୱାର ରୁଦ୍ଧ ଦେଖିଲେ ଯୁବା ଭଗ୍ନୋତ୍ସାହ ହୁଏନାହିଁ । ତାହା ସକାଶେ ଶତଦ୍ୱାର ଉନ୍ମୁକ୍ତ । ଦୁଃଖର ଅଶ୍ରୁ ଯେତେ-ବେଳେ ଯୁବକର ଗଣ୍ଡ ଦେଇ ବହେ, ସେତେବେଳେ ତାହା ତାହାର ଗଣ୍ଡସ୍ଥ ଲାବଣ୍ୟ କୁସୁମକୁ ଧୌତ କରିଦିଏ; ମାତ୍ର ଏକାବେଳକେ ବିନଷ୍ଟ କରେ ନାହିଁ । ଯୁବକର ବାହ୍ୟର ଶିଳ୍ପ ଅପରିପକ୍ୱ ହେଲେହେଁ, ତାହାର କାଞ୍ଚା ସୁନା ଭଳି ମୁଖ ଲାବଣ୍ୟରେ ଜ୍ୱଳନ୍ତ ଉତ୍ସାହ ଓ ଜୀବନ୍ତ ସ୍ଫୂର୍ତ୍ତି ବିଦ୍ୟମାନ ।

ବୃଦ୍ଧମାନେ ଯେ ଏକ ସମୟରେ ଯୁବକ ଥିଲେ ଏହା ସେମାନେ ଅନେକ ସମୟରେ ବିସ୍ମୃତ ହୋଇ ଥାଆନ୍ତି । ସେମାନେ ବର୍ତ୍ତମାନ ଯେପରି ସ୍ଫୂର୍ତ୍ତିହୀନ, ଗଜଗମ୍ଭୀର, ସ୍ଥିତିଶୀଳ, ଆମୋଦ ବିମୁଖ, ଶ୍ରମକାତର, ନିରୁତ୍ସାହ ଓ ଶାନ୍ତିପ୍ରିୟ, ସେମାନେ ପ୍ରତ୍ୟାଶା କରନ୍ତି ତରୁଣମାନେ ସେହିପରି ହେବେ; କିନ୍ତୁ ଏହା ବିଷମ ଭ୍ରମ ।

ବୃଦ୍ଧର ବେଶ ତରୁଣଙ୍କୁ ମାନବଟି କି ? ବୃଦ୍ଧର ବେଶ ବୃଦ୍ଧଙ୍କୁ ଶୋଭା ପାଇଥାଏ । ତରୁଣର ବେଶ ତରୁଣଙ୍କୁ ମାନଥାଏ । ତରୁଣର ଜୀବନ କର୍ମଶୀଳ, ସୁତରାଂ ତାହାର ତଦୁପଯୋଗୀ ଗୁଣ ଥିବା ଆବଶ୍ୟକ । ଯୌବନରେ କର୍ମ ନ କଲେ ବାର୍ଦ୍ଧକ୍ୟରେ କର୍ମରୁ ଅବସର ନେବାର ଅଧିକାର କିପରି ହେବ ? ଯୌବନରେ ଯେଉଁ ସମସ୍ତ ଉତ୍କଟ ମନୋବୃତ୍ତିର ଉଦୟ ହୁଏ ତାହା ନିର୍ମୂଳ କଲେ କିଣ ହେବ ? ଚୂଲ୍ଲୀରୁ ଅଗ୍ନି ଲିଭାଇ ଦେଲେ ରନ୍ଧନ କାର୍ଯ୍ୟର କେଉଁ ସୁବିଧା ହେବ ? ସୁନିପୁଣ ପାଚକ ଯେପରି ଅଗ୍ନିର ସାହାଯ୍ୟରେ ନାନାବିଧ ଉପାଦେୟ ଖାଦ୍ୟ ସାମଗ୍ରୀ ପାକ କରେ, କିନ୍ତୁ ପ୍ରତ୍ୟେକ ଭୋଜ ଦ୍ରବ୍ୟ ପ୍ରସ୍ତୁତ କରିବା ସକାଶେ ଯେତେଟିକି ଉତ୍ତାପର ପ୍ରୟୋଜନ ତଦ୍ ବିଷୟରେ ବିଶେଷ ଲକ୍ଷ୍ୟ ରଖିଥାଏ, ସେହିପରି ଯୁବକର ମନୋବୃତ୍ତି ସମୂହକୁ ଉନ୍ମୂଳିତ ନ କରି ସତ୍ ମାର୍ଗରେ ଚାଳନ କରିବାକୁ ହେବ; ବେଗଗାମୀ ଅଶ୍ୱର ଗୋଡ଼ ଭାଙ୍ଗି ଦେଲେ ଲଭ ନାହିଁ, ତାହାକୁ ରଶ୍ମି ସଂଯତ କରି ଏପରି ଭାବରେ ଚଳାଇବାକୁ ହେବ ଯେ ଯହିଁରେ ସେ ବିପଥରେ ନ ଯାଏ, ଅଥଚ ତାହାର ଅଭିଳଷିତ ବେଗର ହ୍ରାସ ନହୁଏ । ଯେଉଁ ସହଜ ସଂସ୍କାର ବଶତଃ ତରୁଣ ଏତେ ଲାଳାୟିତ ହୁଏ ତାହା ଯେପରି ନିଷ୍ଫଳ ନ ହୁଏ । ସୁଖ ଅବହେଳାର ବସ୍ତୁ ନୁହେଁ । ସଂସାରରେ ଦୁଃଖର ମଧ୍ୟ ଅପ୍ରତୁଳ ନାହିଁ । ଯୌବନ ହିଁ ସୁଖର ସମୟ । ଯୌବନର ହାଟରେ ସୁଖ କିଣି ନ ପାରିଲେ ପ୍ରୌଢ଼ ବୟସର ଭଙ୍ଗା ହାଟରେ କେଉଁ ସୁଖ ମିଳିବ ? ଯୌବନରେ ପ୍ରଚୁର ସୁଖ ଆହରଣ କରି ପ୍ରୌଢ଼ ବୟସର ସମ୍ବଳ କରିବା ଉଚିତ ।

ଜଣେ ସୁପଣ୍ଡିତ କହିଅଛନ୍ତି ଯେବେ କେହି କିଞ୍ଚିତ୍ ଦୀର୍ଘକାଳ ପାଇଁ କୌଣସି ସୁଖ ସମ୍ଭୋଗ କରିପାରେ ତାହାହେଲେ ତାହା ତାହାର ଚିର ଜୀବନର ସାଥି ହେବ । ଏହି ମଧୁମୟ ଯୌବନରେ ସୁଖ-ବୀଣାର ତାର ସପ୍ତମରେ ଚଢ଼ାଇବାର ପ୍ରୟାସ କର । ଏହି ସୁନ୍ଦର ଜଗତକୁ ଏଭଳି ଭୋଗ ଦଖଲ କରିବ ଯେପରି ଗୋଟିଏ ଆଲୋକ ରଶ୍ମି, ଗୋଟିଏ ପବନୋଚ୍ଛ୍ୱାସ, ଗୋଟିଏ ବୃକ୍ଷ ପତ୍ରର କମ୍ପନ ସୁଦ୍ଧା ବୃଥା ନ ଯାଇପାରେ । କିନ୍ତୁ ସାବଧାନ, ଯେପରି ସୁଖକୁ ଯୌବନତରୀର କର୍ଣ୍ଣଧାର କରି ଭବିଷ୍ୟଜ୍ଜୀବନରେ ଜଳାଞ୍ଜଳି ଦେବନାହିଁ । ଏହା ହେଲେ ଅଚିରରେ ଅତଳ ଜଳରେ ବୁଡ଼ିଯିବାକୁ ହେବ । ସାବଧାନ, ଯେପରି ଉନ୍ମତ୍ତ ଭ୍ରମର ଭଳି କେତକୀ ବନରେ ମଧୁ ଆହରଣ କରିବାକୁ ଯାଇ ଛିନ୍ନପକ୍ଷ ନ ହୁଅ । ସାବଧାନ, ଯେପରି ସୁଧା ଭ୍ରମରେ ହଳାହଳ ପାନ ନ କର । ଯେଉଁ ଆମୋଦ ସର୍ବତୋଭାବରେ ନୀତି ସଙ୍ଗତ ଓ ବିଶୁଦ୍ଧ ଜ୍ଞାନାନୁମୋଦିତ ସେହି ଆମୋଦ ହିଁ ପ୍ରକୃତ ଆମୋଦ, ଯେଉଁ ଆମୋଦରେ ଶରୀର ଓ ମନ କଳୁଷିତ ହୁଏ, ଯେଉଁ ଆମୋଦ ସାଧୁତାବିଗର୍ହିତ ଓ ନୀତିବିରୁଦ୍ଧ, ଯେଉଁ ଆମୋଦ ସ୍ୱାସ୍ଥ୍ୟନାଶ କରେ ଓ ଅଧଃପତନର ମାର୍ଗ ଫିଟାଇ ଦିଏ, ଯେଉଁ ଆମୋଦରେ

ମତ୍ତ ହୋଇ ମନୁଷ୍ୟ ଯୌବନରେ ହସୁ ହସୁ ଅନୁତାପର ବୀଜ ବପନ କରେ ଏବଂ ବୃଦ୍ଧ ବୟସରେ କାନ୍ଦୁ କାନ୍ଦୁ ତାହାର ଫଳ ଭୋଗକରେ ସେ ଆମୋଦ ଆମୋଦ ନୁହେଁ ।

ଯୌବନର ଅପବ୍ୟବହାର କଲେ ସମସ୍ତ ଜୀବନରେ ତାହାର କ୍ଷତି ପୂରଣ ହେବନାହିଁ । ତାଳ ଭଙ୍ଗି ଗଲେ ଅତି ମଧୁର ସଙ୍ଗୀତ ମଧ୍ୟ ଯେପରି ଶ୍ରୁତି କଠୋର ହୁଏ, ସେହିପରି ବୃଥା କାଳକ୍ଷେପରେ ଜୀବନ ସଙ୍ଗୀତର ମଧ୍ୟ ତାଳ ଭଙ୍ଗିଯାଏ ଏବଂ ସେତେବେଳେ ତାହା କୌଣସି କାର୍ଯ୍ୟର ହୁଏ ନାହିଁ । କର୍ମ କ୍ଷେତ୍ରରେ, ଜ୍ଞାନୋପାର୍ଜନରେ, ଧର୍ମସାଧନରେ, ଯେ କୌଣସି ବିଷୟରେ ଉତ୍କର୍ଷ ଲାଭ କରିବାକୁ ହେଲେ ବିଶେଷ ଯତ୍ନକରି ସିଦ୍ଧି ଲାଭ କରିବାକୁ ହେବ । କବି କହନ୍ତି—

"ନ ସଦ୍‌ଗୁଣାନ ଯୋ ବିଭର୍ତ୍ତି ଯୌବନେ<br>
ନ ବାର୍ଦ୍ଧକ୍ୟେ ତେନ ସୁଖଂ ହି ଲଭ୍ୟତେ;<br>
ମଧୌ ନ ଧରେ ମୁକୁଳାଣି ଯସ୍ତରୁଃ<br>
ସକିଂ ନିଦାଘେ ପରିଶୋଭତେ ଫଳୈଃ ।"

ଯେଉଁ ବ୍ୟକ୍ତି ଯୌବନରେ ସଦ୍‌ଗୁଣଶାଳୀ ନ ହୁଏ, ସେ ବାର୍ଦ୍ଧକ୍ୟରେ ସୁଖଲାଭ କରି ନ ପାରେ । ଯେଉଁ ବୃକ୍ଷରେ ବସନ୍ତ କାଳରେ ମୁକୁଳୋଦ୍‌ଗମ ହୁଏ ନାହିଁ ସେ କି କେବେ ଗ୍ରୀଷ୍ମ କାଳରେ ଫଳଶୋଭିତ ହୁଏ ?

ମାନବ ଜୀବନରେ ଯାହାକିଛି ମହତ୍ତ୍ୱ ଓ ପ୍ରଶଂସନୀୟ ତାହାର ମୂଳପତ୍ତନ ଯୌବନକାଳରେ ଯେପରି ସହଜ ହୁଏ ଏଭଳି ଆଉ କୌଣସି କାଳରେ ହୋଇ ନ ଥାଏ । ଆମ୍ଭମାନଙ୍କ ପ୍ରାଚୀନ ଶାସ୍ତ୍ରକାରମାନେ କହିଅଛନ୍ତି, "ଯୁବୈବ ଧର୍ମଶୀଳଃସ୍ୟାତ୍‌" ଅର୍ଥାତ୍ ଯୌବନକାଳରେ ହିଁ ଧର୍ମଶୀଳ ହେବ । ଜ୍ଞାନପ୍ରବୀର ଇମାର୍ସନ କହିଥିଲେ, "କର୍ତ୍ତବ୍ୟ ବୋଧ ଯେତେବେଳେ ଯୁବକକୁ କହେ ତୁମ୍ଭକୁ ଏହି କର୍ମ କରିବାକୁ ହେବ, ସେତେବେଳେ ସେ କାର୍ଯ୍ୟ ଯେତେ କଠିନ ହୋଇପଛକେ ଯୁବକ କହିବେ, ମୁଁ ପାରିବି !" ଉଦ୍ୟମଶୀଳ ଯୁବକ ଅଭିଧାନରେ 'ଅକ୍ଷମ' ଶବ୍ଦଟି ବୋଧହୁଏ ନାହିଁ । ମନୁଷ୍ୟ ଯୌବନରେ ଯେପରି ଉଦାରଚରିତ, ସହୃଦୟ ଓ ମୁକ୍ତହସ୍ତ ହୁଏ ଏବଂ ଲୋକଙ୍କୁ ଯେତେ ସହଜରେ ବିଶ୍ୱାସ କରେ, ଅଧିକ ବୟସରେ ପ୍ରାୟ ତାହା ରହେନାହିଁ । ଯୁବକର ମନରେ ଅତି ସହଜରେ ଉନ୍ନତ ଭାବର ଉଦୟ ହୋଇଥାଏ ।

# ଶିକ୍ଷା

ଅଧ୍ୟାପକ ଶ୍ରୀ ନାରାୟଣ ମହାପାତ୍ର ଶର୍ମା

ଜଗତ୍‌ରେ ବସ୍ତୁର ପ୍ରକୃତତତ୍ତ୍ୱ ଜାଣିବା ହେଉଛି ଶିକ୍ଷା ଏବଂ ସେହି ଶିକ୍ଷାର ପ୍ରକୃତ ଶିକ୍ଷକ ହେଉଛି ନିଜର ହୃଦୟ । ବାହାରର ଶିକ୍ଷକ ଏହି ଭିତର ଶିକ୍ଷକକୁ କେବଳ ଜାଗ୍ରତ କରାଇଦିଏ । ଭୌତିକ ଏବଂ ଆଧ୍ୟାତ୍ମିକ, ସକଳ ପ୍ରକାର ବିଜ୍ଞାନର ଖଣି ହେଉଛି ନିଜର ମନ । ତାହା କେବଳ ସୁପ୍ତ ଅବସ୍ଥାରେ ହୃଦୟରେ ଥାଏ । ବାହାରର ଶିକ୍ଷକ ତାକୁ ଜାଗ୍ରତ କରାଇଦେଲେ ସେ ପୂର୍ଣ୍ଣତ୍ୱକୁ ପ୍ରାପ୍ତ ହୁଏ । ଅମୁକଙ୍କ-ଠାରୁ ଶିଖିଲେ ବୋଲି ଯାହା କୁହାଯାଉଛି ତାର ଅର୍ଥ ନୁହେଁ ଯେ, ତାଙ୍କଠାରେ ସେ ଜ୍ଞାନସମ୍ପତ୍ତି ନଥିଲା, ସେ ଅନ୍ୟଠାରୁ ଧାର ବା ଖରିଦ କଲେ; କିନ୍ତୁ ତାଙ୍କର ସୁପ୍ତ ଜ୍ଞାନକୁ ବାହାରର ଶିକ୍ଷକ ଜାଗ୍ରତ କରାଇ ଦେଲେ—ଯେପରି କ୍ଷୁଦ୍ର ବଟବୀଜରେ ବିଶାଳ ବଟବୃକ୍ଷ ସୂକ୍ଷ୍ମ ଅବସ୍ଥାରେ ଥିଲା ଏବଂ ବାହାରର ପାଣିପବନ ଓ ଆଲୋକର ସାହାଯ୍ୟ ପାଇ ତାହା ବିକାଶ ବା ପୂର୍ଣ୍ଣତ୍ୱକୁ ପ୍ରାପ୍ତ ହେଲା । କେହି ଜଣେ ଭାତହାଣ୍ଡିର ଢାଙ୍କୁଣି ବାଷ୍ପରେ ଉଠୁଥିବା ପଡ଼ୁଥିବା ଦେଖି ବାଷ୍ପୀୟ ଇଞ୍ଜିନ୍ ତିଆରି କଲେ ବା ଅନ୍ୟ କେହି ଗଛରୁ ପତ୍ର ପଡ଼ୁଥିବାର ଓ ଫିଙ୍ଗିବା ବଲ ତଳକୁ ଖସି ଆସୁଥିବାର ଦେଖି ମାଧ୍ୟାକର୍ଷଣ ଶକ୍ତି ଆବିଷ୍କାର କଲେ । ଏଠାରେ ମଧ୍ୟ ସେହି ଏକ କଥା—ତାଙ୍କୁ ସେ ବିଷୟରେ କେହି ଅନ୍ୟ ଲୋକ ଶିକ୍ଷା ଦେଇ ନଥିଲା; କିନ୍ତୁ ତାଙ୍କର ଅନ୍ତରର ଶିକ୍ଷକହିଁ ଏଠାରେ ତାଙ୍କ ହୃଦୟରେ ସୂକ୍ଷ୍ମ ଅବସ୍ଥାରେ ଥିବା ବିଜ୍ଞାନକୁ ଆକାରରେ ପ୍ରକାଶ ମାତ୍ର କରାଇଥିଲା । ଜଗତରେ ଯେତେ ପ୍ରକାର ଜ୍ଞାନ ଆଜି ପର୍ଯ୍ୟନ୍ତ ଆବିଷ୍କାର ହୋଇ ସାରିଲାଣି, ବା ଏବେ ହେଉଛି, ଏହା କେବଳ ବିଜ୍ଞାନର ଶେଷ ସୀମା ନୁହେଁ । ପ୍ରକୃତି-ରହସ୍ୟ ଅନନ୍ତ; ଲୋକ ଯେତିକି ଯେତିକି ଅନୁସନ୍ଧିତ୍ସୁ ହେବ, ସେତେ ନୂଆ ନୂଆ ତଥ୍ୟ ଆବିଷ୍କାର କରି ପାରିବ । ଆଉ ତାର ଚରମ ସୀମା କିଏ ତା ବି ନିରୂପଣ କରି କେହି କହି ପାରିବ ନାହିଁ । କେବଳ ଏତିକି ଅନୁମାନ କରାଯାଇପାରେ ଯେ, ଆମର ପ୍ରାଚୀନ ଋଷି ମୁନିମାନେ ଯେଉଁ ପ୍ରଳୟ କଥା ବର୍ଣ୍ଣନା କରିଛନ୍ତି, ତାହା ଯଦି ସତ୍ୟ ହୋଇଥାଏ, ତାହା ହେଲେ ସେଇ ବୋଧହୁଏ ସ୍ଥାର ଶେଷ ଯବନିକା ।

ସମସ୍ତ ଥିଲା ଯେଉଁଦିନ ଲୋକେ ପ୍ରକୃତି-ରହସ୍ୟ ଉଦ୍‌ଘାଟନର ଅପକାରିତା ବୁଝିପାରି ଈଶ୍ୱରଙ୍କ ରହସ୍ୟ ଜାଣିବାପାଇଁ ଚେଷ୍ଟା କରୁଥିଲେ । ଏଣୁ ସେହି ସମୟରେ ଆଧ୍ୟାତ୍ମିକ ବିଜ୍ଞାନ ବହୁତ ଉନ୍ନତିଲାଭ କରିଥିଲା । ବର୍ତ୍ତମାନ ସେହି ସମସ୍ତ ବିଲ୍‌କୁଲ୍ ବଦଳି ଯାଇଛି । ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କର କରାଳ ସର୍ବଧ୍ୱଂସୀ କମାଣ ଆଗରେ ଆଧ୍ୟାତ୍ମିକ ବିଜ୍ଞାନ ଆଉ ଗୁଡି ପଡେଇବାକୁ ସାହସ କରୁନି । ସର୍ବନିୟନ୍ତାଙ୍କ ଇଚ୍ଛାରେ ଏସବୁ ଉତ୍‌ଥାନ ପତନ ହେଉଛି । ଏହା ସଂସରଣଶୀଳ (ଗତିଶୀଳ) ସଂସାରର ଧର୍ମ । ଏହାକୁ ଲୋକ ଇଚ୍ଛାକରି ବାରଣ କରି ପାରିବ ନାହିଁ । ସେହି କ୍ରୀଡ଼ାରସ ଯେତେବେଳେ ବଦଳିବ, ସେତେବେଳେ ପୁଣି ଲୋକ ଆଧ୍ୟାତ୍ମିକ ଦିଗକୁ ଦୃଷ୍ଟି ଫେରାଇବ ।

ଲୋକେ ଭୌତିକ ବିଜ୍ଞାନର ଅପକାରିତା ବୁଝିଲେଣି । ନିକଟ ଭବିଷ୍ୟତରେ ବୋଧହୁଏ ଏହା ପରିବର୍ତ୍ତନ ହୋଇଯିବ । କେବଳ ଯେଉଁମାନେ ପରମାଣୁ ରହସ୍ୟ-ବେଦୀ, ସେହିମାନଙ୍କର ଜ୍ଞାନକଣ୍ଡୂତି ନିବାରଣ ହୋଇନି; କିନ୍ତୁ ତଦ୍‌ଭିନ୍ନ ଶାନ୍ତିକାମୀ ସମସ୍ତ ବିଜ୍ଞାନୀମାନେ ଜଗତକୁ ଧ୍ୱଂସମୁଖରୁ ରକ୍ଷା କରିବାପାଇଁ ପରମାଣୁ ଶକ୍ତି ନିୟନ୍ତ୍ରଣ କରିବାକୁ ବ୍ୟାକୁଳ ହୋଇ ଉଠିଲେଣି । ଲୋକ ଏହି ଯେଉଁ ଜ୍ଞାନ ବିଜ୍ଞାନର ବାଣିଜ୍ୟ ଚଳାଇଛି, ସେ ବିଷୟରେ ପ୍ରକୃତ ଶିକ୍ଷକ ହେଉଛି ଲୋକର ଆତ୍ମା, ଆଉ ସାହାଯ୍ୟ-କାରୀ ଶିକ୍ଷକ ହେଉଛି ବାହାର ପ୍ରକୃତି । ଏଠାରେ ଶ୍ରୀମଦ୍‌ଭାଗବତୋକ୍ତ ଅବଧୂତ ସନ୍ନ୍ୟାସୀଙ୍କର ଆଖ୍ୟାୟିକାରୁ କେତୋଟି କଥା କୁହାଯାଇ ପାରେ । ପ୍ରସିଦ୍ଧ ଯଦୁ ମହାରାଜା ଦିନେ ଜଣେ ଅବଧୂତ ସନ୍ନ୍ୟାସୀଙ୍କ ପାଖରେ ଉପସ୍ଥିତ ହୋଇ ପଚାରିଲେ, "ଭଗବନ୍, ଆପଣ ସର୍ବ ପ୍ରକାର ଆସକ୍ତି ପରିତ୍ୟାଗପୂର୍ବକ ସଦାନନ୍ଦ ରସରେ ଯେ ସବୁବେଳେ ନିମଗ୍ନ ଅଛନ୍ତି, ଏ ଶିକ୍ଷା କାହାଠାରୁ ଆପଣ ପାଇଲେ ?" ତାର ଉତ୍ତରରେ ସନ୍ନ୍ୟାସୀ ନିଜର ଶିକ୍ଷାପ୍ରଦ ଗୁରୁମାନଙ୍କର ନାମୋଲ୍ଲେଖପୂର୍ବକ କହିଛନ୍ତି :—

ସନ୍ତି ମେ ଗୁରବୋ ରାଜନ୍ ବହବୋ ବୁଦ୍ଧ୍ୟୁପାଶ୍ରିତାଃ ।
ଯତୋ ବୁଦ୍ଧିମୁପାଦାୟ ମୁକ୍ତୋଽଟାମୀହ ତାନ୍ ଶୃଣୁ ॥
ପୃଥିବୀ ବାୟୁରାକାଶ ମା ପୋଽଗ୍ନିଶ୍ଚନ୍ଦ୍ରମା ରବିଃ ।
କପୋତୋଽଜଗରଃ ସିନ୍ଧୁଃ ପତଙ୍ଗୋ ମଧୁକୃଦ୍ ଗଜଃ ॥
ମଧୁହା ହରିଣୋ ମୀନଃ ପିଙ୍ଗଳା କୁରରୋଽର୍ଭକଃ ।
କୁମାରୀ ଶରକୃତ୍ ସର୍ପଋର୍ଣ୍ଣନାଭିଃ ସୁପେଶକୃତ୍ ॥
ଏତେ ମେ ଗୁରବୋ ରାଜନ୍ ଚତୁର୍ବିଂଶତିରାଶ୍ରିତାଃ ।
ଶିକ୍ଷାବୃତ୍ତିଭିରେତେଷା ମନ୍ୱଶିକ୍ଷମିହାତ୍ମନଃ ॥

[ଭାଗବତ ୧୧ । ୭ । ୩୨-୩୫]

ଏ ବିଷୟଟି ସେଥିରେ ବିଶଦଭାବେ ବର୍ଣ୍ଣିତ ହୋଇଛି । ତାର ସାର ମର୍ମ ଏହି ଯେ—ପୃଥିବୀ ଯେପରି ଅବିଚଳିତ ଭାବେ ସର୍ବପ୍ରକାର ଉତ୍ପୀଡ଼ନ ସହ୍ୟ କରି ଅପକାରୀଙ୍କୁ କ୍ଷମା କରେ ଏବଂ ପୃଥିବୀର ପରିଣାମ ପର୍ବତ ଓ ତଜ୍ଜାତ ନଦୀ, ବୃକ୍ଷ, ଲତା ପ୍ରଭୃତି ଯେପରି ନିଃସ୍ୱାର୍ଥଭାବରେ ପରୋପକାର କରୁଛନ୍ତି, ବୁଦ୍ଧିମାନ୍ ମନୁଷ୍ୟ ସେହିପରି ପରପୀଡ଼ନ ସହ୍ୟ କରି କ୍ଷମା କରିବ ଓ ନିଃସ୍ୱାର୍ଥଭାବେ ପରର ଉପକାର କରିବ ।

ବାୟୁ ଯେପରି ଭଲମନ୍ଦ ସବୁ ପଦାର୍ଥ ସହିତ ମିଶ୍ରିତ ହେଲେ ବି କାହାରି ଦୋଷ ଗୁଣ ଗ୍ରହଣ ନ କରି ସ୍ୱ ସ୍ୱରୂପରେ ଠିକ୍ ଥାଏ, ମନୁଷ୍ୟ ସେପରି ଭଲମନ୍ଦ ସକଳ ପ୍ରାଣୀଙ୍କର ସେବା କରି ମଧ୍ୟ କାହାରି ଦୋଷ ଗୁଣରେ ଲିପ୍ତ ହେବା ଉଚିତ ନୁହେଁ । ଆକାଶ ଯେପରି ସମଦର୍ଶୀ ଓ ନିର୍ଲିପ୍ତ, ବିଦ୍ୱାନ୍ ସେପରି ଆଚଣ୍ଡାଳ ସମସ୍ତଙ୍କଠାରେ ସମାନ ଦୃଷ୍ଟି ଦେବ ଓ ଅତ୍ୟାସକ୍ତି ପରିହାର କରିବ । ଜଳ ଯେପରି ସ୍ୱଚ୍ଛ, ଶୀତଳ ଏବଂ ତୃପ୍ତିଦାୟକ; ଲୋକ ସେପରି ସ୍ୱଚ୍ଛ ହୃଦୟ, ଶାନ୍ତସ୍ୱଭାବ ଓ ସାଧାରଣର ଆନନ୍ଦବର୍ଦ୍ଧକ ହେବା ଉଚିତ ।

ଏହିପରି ଅଗ୍ନିଠାରୁ ଯଥୋପପନ୍ନଭୋକ୍ତୃତା ଓ ନିଷ୍ପାପ ଭାବ, ଚନ୍ଦ୍ରଙ୍କଠାରୁ ତାଙ୍କର କଳା କ୍ଷୟବୃଦ୍ଧିର ସଦୃଶ ଅନାତ୍ମ ଦେହର କ୍ଷୟ ଓ ବୃଦ୍ଧି, ରବିଙ୍କଠାରୁ— ସେ ଯେପରି ଏକ ହେଲେ ବି ଜଳ ତୈଳ ଦର୍ପଣରେ ପ୍ରତିବିମ୍ବିତ ହେଲେ ନାନା ଭାବରେ ପ୍ରତୀତ ହୁଅନ୍ତି ସେପରି ଆତ୍ମା ଏକ ହେଲେହେଁ ଉପାଧିଭେଦରେ ଭିନ୍ନ ଭିନ୍ନ ପ୍ରତୀତ ହେବା; କପୋତଠାରୁ ଅତି ସ୍ନେହର ଦୋଷ (କପୋତ କପୋତୀ ଦୁଇଟି ଅତି ସ୍ନେହରେ ଥାନ୍ତି । କାଳକ୍ରମେ ତାଙ୍କର କେତୋଟି ଛୁଆ ହେଲି । ତାଙ୍କୁ ଅତି ସ୍ନେହରେ ସେମାନେ ପାଳୁଥାନ୍ତି । ଦିନେ ସେମାନେ ଚରି ଯାଇଛନ୍ତି, ଗୋଟିଏ ବ୍ୟାଧ ଆସି ଛୁଆଗୁଡ଼ିକୁ ଜାଲ ପକାଇ ଧରିଲା । ସେ ସମୟରେ ସେମାନେ ଆସି ଏ ଘଟଣା ଦେଖି ଅତି ସ୍ନେହ ହେତୁ କପୋତୀ ସ୍ୱୟଂ ବ୍ୟାକୁଳ ହୋଇଯାଇ ବ୍ୟାଧକୁ ଧରାଦେଇଥିଲା ଏବଂ କପୋତ ପୁତ୍ରଦାର ଶୋକରେ ମରିଥିଲା ।), ଅଜଗରଠାରୁ ଦୀର୍ଘକାଳ ଅନାହାରରେ ବି ଜୀବନଧାରଣ ସାମର୍ଥ୍ୟ, ସମୁଦ୍ରଠାରୁ ଗାମ୍ଭୀର୍ଯ୍ୟ ଓ ବର୍ଷା ଏବଂ ଗ୍ରୀଷ୍ମରେ ସମଜଳ ପରି ସମ୍ପଦ ଓ ବିପଦରେ ଅବିଚଳିତ ଭାବ, ପତଙ୍ଗଠାରୁ ସୌନ୍ଦର୍ଯ୍ୟରେ ମୁଗ୍ଧ ହେବାର ଅପକାରିତା, ମଧୁକରଠାରୁ ସାରଗ୍ରାହିତା ଓ ସଞ୍ଚୟର ଅପକାରିତା, ହସ୍ତୀଠାରୁ ସ୍ତ୍ରୀସଙ୍ଗର ଅପକାରିତା, ମଧୁମକ୍ଷିକାଠାରୁ ଦାନଭୋଗହୀନ ଧନର ପରଭୋଗ୍ୟତା, ମୃଗଠାରୁ ନୃତ୍ୟଗୀତାଦି ଅନୁରାଗର ଅନିଷ୍ଟକାରିତା, ମାଛଠାରୁ ଜିହ୍ୱାଲାଳସାର ଅପକାରିତା, ପିଙ୍ଗଳା ନାମ୍ନୀ ବେଶ୍ୟାଠାରୁ ବୈରାଗ୍ୟ ପରମସୁଖ ଏବଂ ଆଶା ପରମ ଦୁଃଖ, କୁରର ପକ୍ଷୀଠାରୁ ଦ୍ରବ୍ୟ ପରିଗ୍ରହ ତ୍ୟାଗ, ବାଳକଠାରୁ ଚିନ୍ତାଶୂନ୍ୟ ଓ ସଦା

ପ୍ରଫୁଲ୍ଲତା, କୁମାରୀଠାରୁ ବନ୍ଧୁ ସଙ୍ଗେ କଳହାଦି ଦୋଷ ( ଗୋଟିଏ ବ୍ରାହ୍ମଣଘରେ ସୁନ୍ଦରୀ କନ୍ୟାଟିଏ ଥାଏ । ଦିନକରେ ତାର ବିଭା ପାଇଁ ଚାରିପାଞ୍ଚଜଣ ଲୋକ ଆସି ପହଞ୍ଚିଲେ । ଗୃହସ୍ୱାମୀ ତାଙ୍କ ସହ କଥାବାର୍ତ୍ତାରେ ଲାଗିଲେ । ଘରେ ଚାଉଳ ନ ଥିବାରୁ ମା ଝିଅକୁ କହିଲେ ତୁ ଏ ଧାନତକ ବେଗି କୁଟି ଦେ । ତହୁଁ ଝିଅ ତାକୁ ରୋଳରେ ଭର୍ତ୍ତିକରି ମୂଷଳ ଧରି କୁଟିବାକୁ ଆରମ୍ଭ କରନ୍ତେ, ହାତର କାଚଗୁଡ଼ିକ ରୁଣୁଝୁଣୁ ବାଜିଲା । ତେଣୁ ଲଜ୍ଜିତା ହୋଇ ସେ ଅଧେ କାଚ କାଢ଼ି ଦେଲା । ପୁଣି ବାଜିବାକୁ ଆରମ୍ଭ କରନ୍ତେ ସଙ୍ଗଦୋଷରୁ ଏପରି ଶବ୍ଦ ହେଉଛି ଭାବି ପଟେ ପଟେ ରଖି ବାକି ସବୁ କାଢ଼ି ଦେଲା ।), ଶରନିର୍ମାତାଠାରୁ ଏକାଗ୍ରତା, ସର୍ପଠାରୁ ଗୃହ ନିର୍ମାଣେ ଆସକ୍ତିଦୋଷ, ଉର୍ଣ୍ଣନାଭଠାରୁ ଅଦ୍ୱିତୀୟ ବ୍ରହ୍ମର ସୃଷ୍ଟି ଓ ସଂହାର-ସାମର୍ଥ୍ୟ ଏବଂ କୀଟ-ପୋକଠାରୁ ମୃତ୍ୟୁ ସମୟରେ ଭଗବାନଙ୍କଠାରେ ଚିତ୍ତ ସମର୍ପଣରୁ ମୁକ୍ତିଲାଭ (ଭ୍ରମର ବଳାତ୍କାରରେ ଅନ୍ୟ ପୋକକୁ ଆଣି ନିଜ ଘରେ ରଖେ । ସେ ପୋକ ଭୟରେ ଭ୍ରମରକୁ ଚିନ୍ତି ଚିନ୍ତି ମରେ ଏବଂ ପୁଣି ସେହି ଦେହରେ ଭ୍ରମର ସାଦୃଶ୍ୟ ଧରି ବାହାରେ । ସେପରି ପ୍ରାଣୀ ସ୍ନେହ, ଦ୍ୱେଷ ବା ଭୟରୁ ଯାର ରୂପ ଧ୍ୟାନ କରି ମରେ ପୁଣି ସେହି ଶରୀରକୁ ପାଏ । ଅତଏବ ଭଗବାନଙ୍କୁ ମରଣ ସମୟେ ଧ୍ୟାନ କଲେ ନିଶ୍ଚୟ ସାରୂପ୍ୟ ମୁକ୍ତି ପାଇବା ) । ପୃଥିବୀଠାରୁ କୀଟପୋକ ପର୍ଯ୍ୟନ୍ତ ଏ ଚବିଶଟିଯାକ, ପ୍ରତ୍ୟେକ ଲୋକର ଅଳ୍ପାଧିକ ପରିମାଣରେ ଶିକ୍ଷକ ।

କେବଳ ଏହି ଚବିଶଟି କାହିଁକି, ସୁଖ, ଦୁଃଖ, ମୋହାତ୍ମକ ଜାଗତିକ ସମସ୍ତ ବସ୍ତୁରୁ କିଛି ନା କିଛି ଶିକ୍ଷଣୀୟ ଅଛି । ଯାହାର ଦୃଷ୍ଟିଭଙ୍ଗୀ ଯେପରି ସେ ସେପରି ସାର ଗ୍ରହଣ କରୁଅଛି । ଏକ ବସ୍ତୁ ଯାହାକୁ ମିଳୁଛି ତା ପ୍ରତି ସୁଖଦାୟକ, ଯିଏ ତାର ବିରୋଧୀ ତା ପ୍ରତି ଦୁଃଖଦାୟକ ଏବଂ ଯେ ଚେଷ୍ଟା କରି ମଧ୍ୟ ନ ପାଉଛି, ତା ପ୍ରତି ମୋହଦାୟକ । ଇନ୍ଦ୍ରିୟବଶବର୍ତ୍ତିତା ହେତୁ ଏସବୁ ଘଟେ । ପ୍ରକାରାନ୍ତରେ ଏହି ଇନ୍ଦ୍ରିୟବଶବର୍ତ୍ତିତା ହେଉଛି ସ୍ୱାର୍ଥପରତା । ସ୍ୱାର୍ଥପରତା ହେଉଛି ନିଜେ ଭଲ ଖାଇବା, ଭଲ ପିନ୍ଧିବା, ଭଲ ଦେଖିବା, ଶୁଙ୍ଘିବା, ଶୁଣିବା ପ୍ରଭୃତି । ଏ ସବୁଥିରୁ ମନକୁ ନିବୃତ୍ତ କରାଇ ପାରିଲେ ଦୃଷ୍ଟିକୋଣ ବଦଳିଯିବ ଏବଂ ସେତିକି ବେଳେ ଲୋକ ବସ୍ତୁର ପ୍ରକୃତ ତତ୍ତ୍ୱ ଜାଣିବାକୁ ସମର୍ଥ ହୋଇ ପାରିବ ।

ପ୍ରତ୍ୟେକ ଲୋକର ହୃଦୟରେ ଜ୍ଞାନର ଅସଂଖ୍ୟ ଭଣ୍ଡାର ଅଛି । କେବଳ ଚିନ୍ତାର ତାରତମ୍ୟକୁ ନେଇ କେଉଁଠାରେ ତାର ବିକାଶ ହେଉଛି, କେଉଁଠାରେ ବା ମିଳାଇ ଯାଉଛି । ଯେତେବେଳେ ଆବରଣ ଅପସାରିତ ହୋଇ ଯାଇଛି ସେତେବେଳେ ଆମେ କହୁଚେ, ଆମେ ଶିଖିଲୁ । ଆବରଣ ଅପସାରଣ ଅନୁପାତରେ ଜ୍ଞାନର ବିକାଶ ହୁଏ । ଯାହାଠାରୁ ଏ ଆବରଣ ଯେତେ ଯାଇଛି ସେ ସେତେ ଜ୍ଞାନୀ । ଯାହାଠାରୁ

ଏ ଆବରଣ ସମ୍ପୂର୍ଣ୍ଣ ଦୂରୀଭୂତ ହୋଇଛି ସେ ସର୍ବଜ୍ଞ । ଦୁଇଖଣ୍ଡ ପ୍ରସ୍ତରର ସଂଘର୍ଷରୁ ଯେପରି ଅଗ୍ନି ଜାତ ହୁଏ, ମନୁଷ୍ୟର ମନ ସେହିପରି ବହିର୍ଜଗତର ସଂସ୍ପର୍ଶରେ ଆସିଲେ ଆପେ ଜ୍ଞାନୋଦୟ ହୁଏ । ଏହା ପ୍ରତ୍ୟକ୍ଷ ସିଦ୍ଧ ଯେ ଯିଏ ଯେତେ ଗିରି, ନଦୀ, ବନ, ପର୍ବତ, ପଲ୍ଲୀ ନଗରର ସଂସ୍ପର୍ଶରେ ଆସିଛି ସେ ସେତେ ପରିମାଣରେ ଜ୍ଞାନୀ । ଶୁଣାଅଛି ଯେ ପ୍ରସିଦ୍ଧ କାଦମ୍ବରୀ ଉପନ୍ୟାସର ଲେଖକ ବାଣଭଟ୍ଟ କେବଳ ନାନାସ୍ଥାନ ପରିଭ୍ରମଣ କରି ଏତେ ବଡ଼ ଜ୍ଞାନୀ ହୋଇଥିଲେ । ସମସ୍ତ ଜ୍ଞାନ ଓ ଶକ୍ତି ଅନ୍ତରରେ ସୁପ୍ତ ଅବସ୍ଥାରେ ଥାଏ । ଯାହାକୁ ଆମେ ଶକ୍ତି ବା ପ୍ରାକୃତିକ ରହସ୍ୟ କହୁଁ ତାହା ଆମର ଅନ୍ତରରେ ଅଛି । ମାନବର ଆତ୍ମାରୁହିଁ ସକଳ ବିଦ୍ୟାର ଉତ୍ପତ୍ତି । ଅନନ୍ତ କାଳରୁ ଯେ ଜ୍ଞାନସମୁଦ୍ର ଅନ୍ତର୍ନିହିତ ଅଛି ତାକୁ ଆବିଷ୍କାର ବା ପ୍ରକାଶ କରିବା ହେଉଛି ଜ୍ଞାନଲାଭ ।

ଜଗତରେ କେହି କାହାକୁ ଶିକ୍ଷା ଦିଏ ନାହିଁ ବା କେହି କାହାଦ୍ୱାରା ଶିକ୍ଷିତ ହୁଏ ନାହିଁ । ଆମ ପ୍ରତ୍ୟେକଙ୍କୁ ନିଜେହିଁ ଶିକ୍ଷିତ ହେବାକୁ ହେବ । ବାହାର ଶିକ୍ଷକ କେବଳ ପରାମର୍ଶ ଦିଏ । ବାହାର ଶିକ୍ଷକ ଭିତର ଶିକ୍ଷକକୁ ଜାଗ୍ରତ କରାଇ ଜ୍ଞାନର ବିକାଶ କରାଏ ।

[ଝଙ୍କାର ୨ୟ ବର୍ଷ, ୧ମ ସଂଖ୍ୟା]



# ଆକସ୍ମିକତା ଓ ଆବିଷ୍କାର

ଡକ୍ଟର ବିଦ୍ୟାଧର ପାଢ଼ୀ

ସନ୍ଧ୍ୟାବେଳ । ପ୍ରଖର ଉଜ୍ଜ୍ୱଳ ଆଲୋକ ଲିଭି ଲିଭି ଆସେ । ସ୍ନିଗ୍ଧ ସ୍ୱପ୍ନିଳ ଅନ୍ଧକାର ବିଛେଇ ହୋଇଯାଏ । ଡିବିରି ଦୀପ ଜଳିଉଠେ । ଦୁର୍ବାର କର୍ମଠ ଶିଶୁର କାୟିକ ଖେଳ ସୀମା ସଙ୍କୁଚିତ ହୁଏ; କିନ୍ତୁ ତା'ର କଳ୍ପନା-ବହ୍ନି ଦୀପ୍ତ ହୁଏ । ଠାକୁରମା ଗପଗଢ଼ା ପକ୍ଷୀରାଜ ଘୋଡ଼ାରେ ଚଢ଼ି ସେ ପରୀରାଇଜକୁ ଉଡ଼ିଯାଏ । ସେ ଦେଶରେ ସବୁ ଅସମ୍ଭବ ସମ୍ଭବ ହୁଏ । ସେଠି ପୂର୍ବାପର ସମ୍ପର୍କ ନ ଥାଏ । ସେ ଦେଶରେ ହୀରାର ଧାର ବୁନ୍ଦେ ତ ମହୁରେ ଘର ହୁଏ । ସେହି କୁହୁକ ରାଜ୍ୟରେ କେବଳ ଗୋଟିଏ ନିୟମ ଶାସନ କରେ । ତାହା ହେଉଛି ଆକସ୍ମିକତା । ଐନ୍ଦ୍ରଜାଲିକ ଆକସ୍ମିକତାର ସିଦ୍ଧିରେ ଅନ୍ୟ ସବୁ ନିୟମ ବିଲୟ.ଲଭ କରେ । କଳଙ୍କିଲଗା ପୁରୁଣା ଦୀପ ମାଜିଲେ ବେତାଳ ବାହାରେ । ଗାଈଆଳ ପିଲା ମୁଣ୍ଡରେ ପାଟହାତୀ ସୁନା କଳସ ଢାଳେ । ତାପରେ ରୂପ-କଥା ବଢ଼େ—ଆକସ୍ମିକତା ରଙ୍ଗପୁଷ୍ଟ ହୁଏ ।

କାଉଁରୀ ରାଇଜରେ ଆକସ୍ମିକତା ଅପ୍ରତିଦ୍ୱନ୍ଦ୍ୱୀ ଭାବେ ରାଜୁତି କରେ । ହେଲେ ଗ୍ରାସାଚ୍ଛାଦନ-ସର୍ବସ୍ୱ ବାସ୍ତବ ଚଳଣିରେ ମଧ୍ୟ ଆକସ୍ମିକତାର ପ୍ରଭାବ ନଗଣ୍ୟ ନୁହେଁ । ଆବହମାନକାଳରୁ ମଣିଷ ଆକସ୍ମିକ ଭାବେ ନାନାବିଧ ଶକ୍ତିଭଣ୍ଡାର ଆବିଷ୍କାର କରିଛି ଏବଂ ଆବିଷ୍କୃତ ଶକ୍ତିକୁ ନୂଆ ନୂଆ ଉପାୟରେ ନିୟୋଜିତ କରି ଆରଣ୍ୟ ପ୍ରକୃତିକୁ କବଳିତ କରିଛି । ତେଣୁ ମଣିଷ ହୋଇଛି ଶ୍ରେଷ୍ଠ ଜୀବ । ତାର ସଭ୍ୟତା ଉତ୍ତରୋତ୍ତର ବୃଦ୍ଧିଲଭ କରିଛି । ତାର ସୁଖ, ସ୍ୱାଚ୍ଛନ୍ଦ୍ୟ, ସମ୍ଭୋଗ ସର୍ବତୋଭାବେ ବଢ଼ିଛି । ଆକସ୍ମିକତାର ସଦୁପଯୋଗ କରି ମଣିଷ ପଶୁତ୍ୱରୁ ଉଠି ଦେବତ୍ୱ ଲଭ କରିଛି ।

ମାନବ ସମାଜ ବିକାଶର ପ୍ରାତଃକାଳରେ ଅସଭ୍ୟ ମାନବ ଯେ ନିଆଁ, ଉତ୍ତୋଳକ ( lever ) ଓ ଚକ ଆଦିର କୌଶଳ ନିଶ୍ଚୟ ଆକସ୍ମିକ ଭାବେ ଶିଖିଥିବ ଏଥିରେ ସନ୍ଦେହ ନାହିଁ । ଶିକାର ଖୋଜୁଁ ଖୋଜୁଁ ସେ ନିଆଁର ସନ୍ଧାନ ପାଇଥିବ ଏବଂ ପରେ ଦୈବାତ୍ କେବେ ପଥରକୁ ପଥର ଦେହରେ ପିଟି ବା କାଠକୁ କାଠ

ଦେହରେ ଘଷି ସେ ନିଆଁ ବାହାର କରିବା ଶିଖିଥିବ । ସେହିପରି ହୁଏତ ପଥର ଗୁପା ତୋଳୁଁ ତୋଳୁଁ ଲିଭର ଯନ୍ତ୍ରକଥା ଜାଣିଥିବ ଏବଂ ଶିକାରକୁ ଘୋଷାରି ଘୋଷାରି ନେଇଁ ନେଇଁ ଚକ ଆବିଷ୍କାର କରିଥିବ । କ୍ଷୁଧାର୍ତ୍ତ ମାନବ ଅକସ୍ମାତ୍ ଅର୍ଦ୍ଧଦଗ୍ଧ ମାଂସ ବା ଫଳ ଖାଇବାକୁ ବାଧ୍ୟ ହୋଇ ରନ୍ଧନ କୌଶଳ ଆୟତ୍ତ କରିଥିବ । ଶୋଷ ମେଣ୍ଟାଇବାକୁ ହ୍ରଦକୂଳକୁ ଯାଇଁ ଯାଇଁ କେଉଁଠି ମାଟିରୁ ପାତ୍ର ଗଢ଼ିବା ଧାରଣା ପାଇଥିବ । ଯାଯାବର ଶିକାରୀ-ମାନବ ଆହତ ମୃଗ-ପଶୁର ଅସହାୟ ଶିଶୁକୁ ଅକସ୍ମାତ୍ ଜୀବନ୍ତ ଅବସ୍ଥାରେ ପାଇ ପଶୁପାଳନ ଶିଖିଥିଲା ଏବଂ ପରିତ୍ୟକ୍ତ ପୁରାତନ ପଶୁଚାରଣ ଭୂମିକୁ ଫେରି କୃଷିର ଉପାଦେୟତା ଉପଲବ୍ଧି କରିଥିଲା । ବୀର ଯୁବକ ଶିକାର ଖୋଜିଁ ଖୋଜୁଁ ଦୂର ପାର୍ବତ୍ୟ ଅଞ୍ଚଳକୁ ଚାଲିଯାଇଥିଲା । ରାତ୍ରିର ଅନ୍ଧକାର ଏବଂ ଶୀତରୁ ଆତ୍ମରକ୍ଷା କରିବା ନିମିତ୍ତ ପଥର ଚଟାଣ ଉପରେ ଶୁଖିଲା ଡାଳପତ୍ର ଏବଂ ଘାସ ଗଦା କରି ଅଗ୍ନି ଉତ୍ସବ ଆରମ୍ଭ କରିଥିଲା; କିନ୍ତୁ କି ଆଶ୍ଚର୍ଯ୍ୟ ! ନିଆଁ ତଳେ ପଥର ଯେ ତରଳି ବୋହି ଯାଉଛି । ସେହି ଆକସ୍ମିକ ଘଟଣାରୁ ଧାତୁ ଆବିଷ୍କୃତ ହୋଇଥିଲା । ତାପରେ ମଣିଷ ପଥର ଛାଡ଼ି ଧାତୁରେ ତାର ହତିଆର ଗଠନ କରି-ଥିଲା । ଆକସ୍ମିକ ଆବିଷ୍କାର ପରେ ଆକସ୍ମିକ ଆବିଷ୍କାର ମଣିଷର ଶକ୍ତି ବଢ଼ାଇଲା । ସେ କେବଳ ବାହୁ ବଳ ଉପରେ ନିର୍ଭର ନ କରି କଳବଳ ଆୟତ୍ତ କରି ଅପରାଜେୟ ବୀର ବୋଲାଇଲା ।

ଆଦିବାସୀ ଗୋଷ୍ଠୀମାନଙ୍କରେ ପ୍ରଚଳିତ ଜନଶ୍ରୁତି ଏବଂ ଲୋକକଥା ଅନୁଧ୍ୟାନ କଲେ କେତେ ବୀରତ୍ୱ କାହାଣୀ ଶୁଣିବାକୁ ମିଳେ । ସେଗୁଡ଼ିକରେ ପୂର୍ବପୁରୁଷରେ କେହି କେହି ବୀର କିପରି ଆକସ୍ମିକ ଭାବେ ବିବିଧ କଳକୌଶଳ ଆବିଷ୍କାର କରିଥିଲେ, ତାହା ସଙ୍କେତରେ ପ୍ରକାଶ ପାଇଥାଏ । ସେହି ଗଳ୍ପମାନଙ୍କ ମଧ୍ୟରୁ ଏଠାରେ ମାତ୍ର ଦୁଇଟିର ଅବତାରଣା କରାଯାଉଛି ।

ଭୂମଧ୍ୟସାଗର-ବକ୍ଷରେ ନାବିକମାନେ ପଣ୍ୟଭରା ପୋତ ବାହି ବାହି ଯାଉଁ ଯାଉଁ ସନ୍ଧ୍ୟା ହେଲା । ରାତ୍ରିରେ ବିଶ୍ରାମ କରିବା ଉଦ୍ଦେଶ୍ୟରେ ନାବିକମାନେ କୂଳରେ ପୋତ ବାନ୍ଧିଲେ ଏବଂ ସାଗର-ବେଳାର ବାଲୁକାପ୍ରାନ୍ତର ଉପରେ ଖାଦ୍ୟ ରାନ୍ଧିବା ଆୟୋଜନ କଲେ । ଚିକ୍କଣ ସୂକ୍ଷ୍ମ ବାଲିରେ ଚୂଲିଗଢ଼ି ହେଲା ନାହିଁ । ଝିଙ୍କା କରି-ବାକୁ ନିକଟରେ ମଧ୍ୟ ପଥର ନାହିଁ । କେହି ଜଣେ ବୁଦ୍ଧିମାନ୍ ନାବିକ ନାଆରୁ ଶୋଡ଼ା ମୁଣ୍ଡା କାଢ଼ି ଝିଙ୍କା କରିଥିଲା । ନିଆଁ ଲାଗିଲା, ରନ୍ଧା ହେଲା; କିନ୍ତୁ କ୍ଳାନ୍ତ କ୍ଷୁଧିତ ନାବିକମାନେ ଚୂଲି ଭିତରର କୁହୁକ ଦେଖି ଖାଇବା ଶୋଇବା ଭୁଲିଗଲେ । ଇଏ କଣ ? ଚୂଲି ଭିତରେ ପାଣି ପରି ସ୍ୱଚ୍ଛ ତରଳ ଢଳ ଢଳ ଦ୍ରବ୍ୟ । ଆକସ୍ମିକତାର ଆବିର୍ଭାବ—ନାବିକମାନେ ଯୋଗେଇ କରୁଁ କରୁଁ କାଚର ସନ୍ଧାନ ପାଇଲେ ।

ଉତ୍ତର ଆମେରିକା କଥା । ଗୋରା ଲୋକେ ସେଠି ପହଞ୍ଚିବାର ପୂର୍ବ କଥା । ଗୋଟିଏ ଆଦିବାସୀ ବାଳିକାର ଘର "ବହୁ-ରଙ୍ଗି-ପାଣି" ନାମକ ଝରଣା କୂଳରେ । ଝରଣା ପାଣି ଉପରେ ଇନ୍ଦ୍ରଧନୁର ରଙ୍ଗ କିଣି ଅଶେଷ ବର୍ଣ୍ଣ ବୈଭବ ବାଳିକାଟିକୁ ମୁଗ୍ଧ କରେ । ଆତ୍ମ-ବିଭୋର ହୋଇ ସେ କେତେ କାଳ ତାର କୂଳରେ କଟାଏ । ବାଳିକାଟିର ଇଚ୍ଛା, କପଡ଼ ସେ ସେହି ବର୍ଣ୍ଣବୈଚିତ୍ର୍ୟକୁ ବାନ୍ଧି ରଖନ୍ତା । ଥରେ ସେ କଣ କଲା ନା, ନିଜ ଦେହରେ ଘୋଡ଼େଇ ହୋଇଥିବା ସାଦା କମ୍ବଳ ଖଣ୍ଡିକୁ ସେହି ବହୁ-ରଙ୍ଗି-ପାଣି ଉପରେ ଭସେଇ ଧରିଲା । ସେ ଭାବିଥିଲା, ସାଦା କମ୍ବଳଖଣ୍ଡିକ ତାର ରଙ୍ଗରେ ଉଜ୍ଜଳ ହୋଇଯିବ । କେତେବେଳେକେ ଆଶାନ୍ୱିତା ବାଳିକାଟି କମ୍ବଳ ଖଣ୍ଡିକ ଟେକି ଧରିଲା । ମନ ଭାଙ୍ଗିଗଲା । କମ୍ବଳଖଣ୍ଡିକରେ ଲେଶମାତ୍ର ରଙ୍ଗ ଲାଗି ନାହିଁ । କମ୍ବଳ-ଖଣ୍ଡିକ ଭିଜିଛି, ଭାରି ହୋଇଛି ଓ ବାସୁଛି; ଚପୁଡ଼ିଲାବେଳକୁ ହାତ ସଲ ସଲ ହେଉଛି । ଅଥଚ କମ୍ବଳରେ ଟୋପେ ବି ପାଣି ନାହିଁ । ଅଶୁଣା ଅଦେଖା କଥା । ଝିଅଟି କାବା ହୋଇଗଲା । ଦଉଡ଼ିଯାଇ ପୁରୁଖା ଲୋକଙ୍କୁ କହିଲା । ସେମାନଙ୍କୁ ବି ଏହା ନୂଆ କଥା । ଝିଅଟି କମ୍ବଳ ରଙ୍ଗେଇବାକୁ ଯାଇ ଅଗ୍ରନିକ ଭାବେ ଆବିଷ୍କାର କଲା ପେଟ୍ରୋଲ ।

ଏ ସବୁ ଇତିହାସ ଲେଖା ହେବାର ଆଗ କଥା । ତେଣୁ କିଏ କଲା, କେବେ କଲା, ତାର ଠିକଣା ନାହିଁ । ମଣିଷର ସୁଖ ସୁବିଧାପାଇଁ ସେହି ଅଜଣା ଲୋକଙ୍କ କରଣୀ ଅତୁଳନୀୟ । ତେବେ ଇତିହାସର ପୃଷ୍ଠାଗୁଡ଼ିକ ମଧ୍ୟ ସେହିପରି ଅସଂଖ୍ୟ ଆକସ୍ମିକ ଆବିଷ୍କାର ବର୍ଣ୍ଣନାରେ ପୁଷ୍ଟିଲ ।

ଐତିହାସିକ ଯୁଗ ମଧ୍ୟରେ କଲମ୍ବସଙ୍କ ଆମେରିକା ଆବିଷ୍କାର ସର୍ବାପେକ୍ଷା ଅଧିକ ଚମକପ୍ରଦ ଏବଂ ବିସ୍ମୟକର । ସ୍ପେନ ଦେଶରୁ ବାହାରି ପଶ୍ଚିମାଭିମୁଖେ ଯାଇ ପୂର୍ବ-ଭାରତୀୟ ଦ୍ୱୀପପୁଞ୍ଜକୁ ଏକ ଦ୍ୱିତୀୟ ପଥ ଠିକଣା କରିବା ମାନସରେ ସେ ଜାହାଜ ଛାଡ଼ିଥିଲେ । ଅତ୍ୟନ୍ତ ଆକସ୍ମିକ ଭାବେ ସେ ଏକ ଅଶ୍ରୁତପୂର୍ବ ପଶ୍ଚିମଗୋଲକ ଆବିଷ୍କାର କଲେ । ମଜା କଥା ଯେ, ସେ ତାଙ୍କ ନୂଆ ଆବିଷ୍କାର ସମ୍ପର୍କରେ ଆଦୌ ଅବହିତ ନଥିଲେ । ତାଙ୍କ କଳ୍ପନାରେ ଯେ କୌଣସି ତ୍ରୁଟି ହୋଇଛି ଏ ସମ୍ବନ୍ଧରେ ତାଙ୍କର ତିଳେ ହେଲେ ସନ୍ଦେହ ନ ଥିଲା । ଲକ୍ଷ୍ୟ ପୂରଣ ହୋଇଛି ବୋଲି ସେ ସୁନିଶ୍ଚିତ ଥିଲେ । ଅଥଚ ପ୍ରକୃତରେ କେଉଁ ପଥରେ ଗଲେ, କେଉଁଠି ପହଞ୍ଚିଲେ ଏବଂ କେଉଁଠୁ ଫେରିଲେ ସେ ସମ୍ବନ୍ଧରେ ସେ ସମ୍ପୂର୍ଣ୍ଣ ଅନ୍ଧକାରରେ ଥିଲେ । ତଥାପି ସେହି ଆକସ୍ମିକ ଆବିଷ୍କାର ଅନ୍ୟାନ୍ୟ ଆବିଷ୍କାରକମାନଙ୍କ ସାହସ ବଢ଼େଇ ଦେଇଥିଲା । ଆଜିସି କଡ଼ା ନିଶ୍ଚିତ ପରାଜୟକୁ ବିପୁଳ-ବିଜୟରେ ପରିଣତ କରିଥିଲା ।

ବୈଜ୍ଞାନିକ ଗବେଷଣା ଏବଂ ଆବିଷ୍କାରରେ ମଧ୍ୟ ଏତାଦୃଶ ଆକସ୍ମିକତାର ସଦୁପଯୋଗ ଦେଖିବାକୁ ମିଳେ । ବୈଦ୍ୟୁତିକ ଶକ୍ତିର ବିକାଶକ୍ଷେତ୍ରରେ ଏହାର ଯଥେଷ୍ଟ ପ୍ରମାଣ ବିଦ୍ୟମାନ । ୧୭୯୧ ଖ୍ରୀଷ୍ଟାବ୍ଦରେ ଇଟାଲୀୟ ପ୍ରାଣୀ ବୈଜ୍ଞାନିକ ଗାଲ୍‌ଭାନି ଗବେଷଣାଗାରରେ ଥରେ ଏକ ଅଭିନବ ପ୍ରକ୍ରିୟା ନିମିତ୍ତ ତମ୍ବା ଅଙ୍କୁଶରେ ବେଙ୍ଗ ମୁଣ୍ଡକୁ ଫୋଡ଼ି ଲୌହ ଧାରଣୀରୁ ଝୁଲାଇ ରଖିଥିଲେ । ପବନରେ ବେଙ୍ଗଟି ଦୋହଲୁଥିଲା । ଝୁଲି ଝୁଲି ଯେତେବେଳେ ବେଙ୍ଗର ଗୋଡ଼ଟି ଲୁହା ଖୁଣ୍ଟିରେ ବାଜି ଯାଉଥିଲା ସେତେବେଳେ ବେଙ୍ଗଟି ଛଟପଟ ହେଉଥିଲା । ଗାଲ୍‌ଭାନି ନିଜ କାମ ଛାଡ଼ି ବେଙ୍ଗ ଗୋଡ଼ ଛାଟିବା ଲକ୍ଷ୍ୟ କଲେ । ତତ୍ପରେ ଅନ୍ୟାନ୍ୟ ପରୀକ୍ଷଣରୁ ସେ ସ୍ଥିର କଲେ ଯେ ଜାନ୍ତବ ବିଦ୍ୟୁତ୍ ଏହାର କାରଣ । ତାଙ୍କର ଦେଶର ଜଣେ ସମସାମୟିକ ବୈଜ୍ଞାନିକ ଭୋଲ୍‌ଟା ଏ କଥାକୁ ପ୍ରଥମେ ବିଶ୍ୱାସ କଲେ ନାହିଁ । ସେ ପୁଣି ନିଜେ ପରୀକ୍ଷଣ କରି ଦେଖିଲେ ! ଫଳରେ ବୈଦ୍ୟୁତିକ-କୋଷ ଆବିଷ୍କୃତ ହେଲା ୧୮୦୦ ମସିହାରେ । ଭିନ୍ନ ଭିନ୍ନ ଦୁଇ ଖଣ୍ଡ ଧାତୁକୁ କୌଣସି ଜଳୀୟ ଦ୍ରବ୍ୟରେ ବୁଡ଼ାଇ ରଖିଲେ ଯେ ଅଖଣ୍ଡ ବିଦ୍ୟୁତ୍ ପ୍ରବାହ ବହେ ତାହା ଜଣାଗଲା—ଚଳବିଦ୍ୟୁତ୍‌ର ଆରମ୍ଭ ହେଲା ଏବଂ ତା ସହିତ ଆରମ୍ଭ ହେଲା ଏକ ନୂତନ ଯୁଗ ।

ବିଦ୍ୟୁତ୍ ସନ୍ଦର୍ଭରେ ଓଏରଷ୍ଟେଡ୍ (Oersted) ଙ୍କ ଆବିଷ୍କାର କଥା କହିଲେ ଅସଙ୍ଗତ ହେବ ନାହିଁ । ଓଏରଷ୍ଟେଡ୍ ୧୮୨୦ ଖ୍ରୀଷ୍ଟାବ୍ଦରେ ଏକ ପରୀକ୍ଷା ପ୍ରଦର୍ଶନ ( Demonstration ) ବେଳେ ଅତି ଆକସ୍ମିକ ଭାବେ ବିଦ୍ୟୁତ୍‌ବାହୀ ତାରଟିଏ କମ୍ପାସର ଚୁମ୍ବକ କଣ୍ଟା ଉପରେ ସମାନ୍ତରାଳ କରି ଧରିଥିଲେ; କିନ୍ତୁ ହେଲା କଣ ? ନିମିଷକେ ଦିଗନିର୍ଣ୍ଣୟ ଯନ୍ତ୍ରର ଚୁମ୍ବକ କଣ୍ଟାଟି ଚଟ୍‌କରି ବୁଲିଗଲା ଏବଂ ବିଦ୍ୟୁତ୍ ତାର ସଙ୍ଗେ ସମକୋଣ କରି ରହିଲା । ବକ୍ତା ଶ୍ରୋତା ସମସ୍ତେ ଅବାକ୍ ! ଏଇ ଆକସ୍ମିକ ଘଟଣାଟି ଚୁମ୍ବକ ଶକ୍ତି ଓ ବିଦ୍ୟୁତ୍ ଶକ୍ତିର ସମ୍ପର୍କ ସୁପ୍ରତିଷ୍ଠ କରି-ଦେଲା । ତାପରେ ଫାରାଡେଙ୍କ ଡାଇନାମୋ ଅନ୍ୟ ଏକ ଆକସ୍ମିକ ଘଟଣାରୁ ପ୍ରସ୍ତୁତ ହୋଇଥିଲା ।

ପଦାର୍ଥବିଜ୍ଞାନର ପ୍ରୟୋଗ ଫଳରେ ରେଡ଼ିଓ, ଟେଲିଭିଜନ୍ ଆଦି ଯେତେ ଯେତେ ବିସ୍ମୟକର ଉଦ୍ଭାବନ ଆମ ସଭ୍ୟତାକୁ ପରିପୁଷ୍ଟ କରିଛି ସେ ସବୁ ପଛରେ ଅନେକ ଆକସ୍ମିକ ଆବିଷ୍କାର ଲୁଚି ରହିଛି । ଯେଉଁ ଆଣବିକ ଶକ୍ତି ସହସ୍ର ସୂର୍ଯ୍ୟର ପ୍ରଖରତା ଏବଂ ପ୍ରଚଣ୍ଡତାକୁ ଧକ୍‌କା ଦେଉଛି ତା ମୂଳରେ ମଧ୍ୟ ଆକସ୍ମିକତା ବିଦ୍ୟମାନ । ରଞ୍ଜନ ୧୮୯୫ରେ ଆକସ୍ମିକ ଭାବେ ରଞ୍ଜନରଶ୍ମି ଆବିଷ୍କାର କରିବା ପରେ ଫ୍ରାନ୍ସର ବୈଜ୍ଞାନିକ ବେକେରେଲ୍ ପ୍ରତିଜ୍ୟୋତି ସମ୍ବନ୍ଧରେ ଗବେଷଣା କରୁ-ଥିଲେ । କେତେକ ପଦାର୍ଥକୁ ସୂର୍ଯ୍ୟ କିରଣରେ ରଖିଲେ ସେଥିରୁ କେତେକ ଅଭିନବ

ଜ୍ୟୋତି ବହିର୍ଗତ ହୁଏ । ପିଚ୍‌ବ୍ଲେଣ୍ଡ ନାମକ ୟୁରାନିୟମ ପଥରରେ ସେପରି ହୁଏ ଭାବି ବେକେରେଲ୍ ପରୀକ୍ଷଣ କରୁଥିଲେ । ସେଥି ନିମିତ୍ତ ଫଟୋ ଫିଲ୍ମକୁ କାଗଜରେ ଗୁଡ଼େଇ ତା ଉପରେ ପିଚ୍‌ବ୍ଲେଣ୍ଡ ରଖି ଖରାରେ ଥୋଇଥିଲେ । ଦୈବଯୋଗକୁ ଦୁଇ-ଦିନ କାଳ ଝଡ଼ିପାଗ ହେଲା । ସୂର୍ଯ୍ୟଙ୍କ ଦେଖା ମିଳିଲା ନାହିଁ । ଦୁଇଦିନ ପରେ ବିରକ୍ତ ହୋଇ ବେକେରେଲ୍ ଫଟୋ ଫିଲ୍ମଟି ଧୋଇଲେ । ଆଶ୍ଚର୍ଯ୍ୟ କଥା ! ସେ ଫଟୋରେ ପଥରର ଉଜ୍ଜ୍ୱଳ ଛବି ପାଇଲେ । ସେଇ ଘଟଣାରୁ ତେଜସ୍କ୍ରିୟତା ( Radioactivity ) ଆବିଷ୍କୃତ ହେଲା ଏବଂ ପରେ କ୍ୟୁରୀଦମ୍ପତି ରେଡ଼ିୟମ୍ ଆବିଷ୍କାର କରିଥିଲେ ।

କେବଳ ପଦାର୍ଥ ବିଜ୍ଞାନରେ ଯେ ଆକସ୍ମିକତା ସୁଯୋଗ ଓ ସୁଫଳ ଆଣିଛି ତାହା ନୁହେଁ, ଜ୍ୟୋତିର୍ବିଜ୍ଞାନରେ ମଧ୍ୟ ଏହି ଆକସ୍ମିକତା ଅଚିନ୍ତନୀୟ ସାଫଲ୍ୟ ଆଣି ଦେଇଛି । ଜ୍ୟୋତିର୍ବିଜ୍ଞାନର ସର୍ବପ୍ରଧାନ ଉପକରଣ ହେଉଛି ଦୂରବୀକ୍ଷଣ ଯନ୍ତ୍ର । ସେହି ଯନ୍ତ୍ରଟିର ଆବିଷ୍କାର ପୂର୍ଣ୍ଣତଃ ଏକ ଆକସ୍ମିକ ଘଟଣା । ପ୍ରାୟ ତିନିଶହ ପଚାଶ ବର୍ଷ ତଳର କଥା । ୟୁରୋପର ଜଣେ ସିଦ୍ଧହସ୍ତ କାରିଗରଙ୍କ ଦୋକାନ । କାରିଗର ଚଷମାକାଚ ଗଢ଼ିବାରେ ପ୍ରବୀଣ । ଆଖିର ତ୍ରୁଟି ଅନୁସାରେ କାହାର ଉତ୍ତଳ କାଚ ଦରକାର ତ କାହାର ଅବତଳ କାଚ ଦରକାର । ତେଣୁ କାରିଗର ଉଭୟ ପ୍ରକାର କାଚ ପ୍ରସ୍ତୁତ କରେ । ଦିନେ ତା'ର ପୁଅ ଉଭୟ ପ୍ରକାର କାଚରୁ ଖଣ୍ଡିଏ ଖଣ୍ଡିଏ ଧରି ଖେଳୁଥିଲା । ଦୈବାତ୍ ସେ କାଚ ଦୁଇ ଖଣ୍ଡକୁ ଆଗପଛ କରି ଆଖି ସିଧାରେ ଧରି ରଖିଲା । ଦେଖିଲା ଯେ ବହୁ ଦୂରସ୍ଥ ଗୀର୍ଜାର ଚୂଡ଼ା ଅତି ନିକଟରେ ଦେଖାଯାଉଛି । ବାପାକୁ ସେ ସେହି କଥା କହିଲା । କାରିଗର ବି ଏ କଥା ଦେଖି ଆନନ୍ଦିତ ଓ ବିସ୍ମିତ ହେଲା । ସେ ଖଣ୍ଡିଏ ନଳୀ ମଧ୍ୟରେ କାଚ ଦୁଇ ଖଣ୍ଡ ସଜେଇ ଖଞ୍ଜି ଦେଲା । ସେହି ହେଲା ପ୍ରଥମ ଦୂରବୀକ୍ଷଣ ଯନ୍ତ୍ର । ପିଲା ଖେଳରୁ ଉତ୍ପନ୍ନ ଯନ୍ତ୍ରଟି ନିକଟରେ ଆମେ ଯେ କେତେ ଋଣୀ ତାହା ସ୍ଥିର କରିବା ନିଶ୍ଚୟ ଅସମ୍ଭବ କଥା ।

ରସାୟନ ବିଜ୍ଞାନରୁ ଗୋଟିଏ ମାତ୍ର ଦୃଷ୍ଟାନ୍ତ ସମ୍ବନ୍ଧରେ ଏଠାରେ ଆଲୋଚନା କରିବା । ୧୮୫୬ ମସିହା; ବିଲାତରେ ପର୍କିନ (Perkin) ସାହେବ ଗବେଷଣାରେ ଲାଗିଥାନ୍ତି । ମେଲେରିଆର ଅବ୍ୟର୍ଥ ଔଷଧ କୁଇନାଇନ୍ ଦକ୍ଷିଣ ଆମେରିକାର ଏକ ଜଙ୍ଗଲବୃକ୍ଷ ସିନ୍‌କୋନା ଛେଲିରୁ ବାହାର କରାଯାଉଥାଏ ଏବଂ ତାର ମୂଲ୍ୟ ଅତ୍ୟନ୍ତ ମହାର୍ଘ ହୋଇଥାଏ । ପର୍କିନଙ୍କ ଇଚ୍ଛା ଯେ କୃତ୍ରିମ ଉପାୟରେ ଗବେଷଣାଗାରରେ କୁଇନାଇନ୍ ପ୍ରସ୍ତୁତ କରିବେ । ପଥର କୋଇଲା ପୋଡ଼ିଲେ ଯେଉଁ ରାଳ ବାହାରେ ସେହି ରାଳର ରାସାୟନିକ ଗଠନରେ କୁଇନାଇନ୍ ଗଠନର କେତେକ ସାମ୍ୟ ଅଛି ।

ତେଣୁ ପର୍କିନ୍ ଗାଳକୁ ରସାୟନ-ପଦ୍ଧତିରେ ବଦଳାଇ କୁଇନାଇନ୍ ବାହାର କରିବାରେ ନିରନ୍ତର ଲାଗିଥାନ୍ତି । ଏଇ ଅବସରରେ ଥରେ ସେ କିଛି ଆନିଲିନ୍ ତେଲ ଖଣ୍ଡିଏ ଟେଷ୍ଟ ଟିଉବ୍‌ରେ ଗରମ କଲେ । କାଳେ ବା କୁଇନାଇନ ବାହାରିବ ! କିନ୍ତୁ ତାହା ହେଲନାହିଁ । ଆନିଲିନ୍ ତେଲ ଉତ୍ତପ୍ତ ହେବାରୁ ଏକ କଦର୍ଯ୍ୟ କଳାଦ୍ରବ୍ୟ ବାହାରିଲା । ମନ ଭାଙ୍ଗିଗଲା । ଟେଷ୍ଟ ଟିଉବଟି ସଫା କରିବାକୁ ପର୍କିନ ଟିକିଏ ସୁରାସାର ଢାଳିଲେ । କି ଆଶ୍ଚର୍ଯ୍ୟ କଥା ! ଏକ ଅଦ୍ଭୁତ ଦ୍ରବ୍ୟ ମନୋହର ଜବାରଙ୍ଗ ବାହାରି ପଡ଼ିଲା, କୁଇନାଇନ୍ କଥା ଭୁଲି ପର୍କିନ୍ ରଙ୍ଗ ଖେଳରେ ମାତିଲେ । ସେହି ଆକସ୍ମିକ ଘଟଣାରୁ ସର୍ବ ପ୍ରଥମ କୃତ୍ରିମ ରଙ୍ଗର ସୃଷ୍ଟି ହେଲା । ତାପରେ ଶହ ଶହ ପ୍ରକାର କୃତ୍ରିମ ଚମତ୍କାର ରଙ୍ଗ ପ୍ରସ୍ତୁତ କରାଗଲା ଏବଂ ଆମର ବ୍ୟବହାର୍ଯ୍ୟ ଦ୍ରବ୍ୟମାନଙ୍କୁ ଅନାୟାସରେ ଓ ଅଳ୍ପ-ବ୍ୟୟରେ ସୁରଞ୍ଜିତ କରାଯାଇ ପାରିଲା ।

ଭୌତିକବିଜ୍ଞାନରେ ଯେପରି ଜୀବବିଜ୍ଞାନରେ ମଧ୍ୟ ସେହିପରି ଆକସ୍ମିକତାର ଯାଦୁକାଠି ବୁଲେଇ ନିମିଷକରେ ସୁଲକ୍ଷଣ ସୌଭାଗ୍ୟ ଆଣି ଦେଇଛି । ନଈର ମୋଡ଼ ଭାଙ୍ଗିଲେ ଯେପରି ଅପୂର୍ବ ସୁନ୍ଦର ଦୃଶ୍ୟରାଜି ଆଖି ଆଗରେ ଝଲସି ଉଠେ, ଠିକ୍ ସେହିପରି ଏକୈକ ଆକସ୍ମିକତା ନୂତନ ତଥ୍ୟ ଓ ତତ୍ତ୍ୱଦ୍ୱାର ବିଜ୍ଞାନକୁ ସମୃଦ୍ଧ କରିଛି । ଜୀବ ବିଜ୍ଞାନର ସେହି ଭଳିର ମୁହୂର୍ତ୍ତଗୁଡ଼ିକରୁ କେବଳ କେଇଟି ମାତ୍ର ଏଠାରେ ଉପସ୍ଥାପିତ କରାଯାଉଛି ।

କ୍ଲଡ଼ ବର୍ନାର୍ଡ (Claude Bernard)ଙ୍କ ଦୃଢ଼ୀଭୂତ ଧାରଣା ଥିଲା ଯେ ଶରୀରର ସ୍ନାୟୁ ତନ୍ତୁରେ ଗୋଟିଏ ଆବେଗ ( impulse ) ଅତିକ୍ରମ କରିଗଲାବେଳେ ରାସାୟନିକ ପରିବର୍ତ୍ତନ ସଂଘଟିତ ହୁଏ ଏବଂ ଫଳରେ ଉତ୍ତାପ ନିର୍ଗତ ହୁଏ । ଗତ ଶତାବ୍ଦୀର ମଧ୍ୟ ଭାଗରେ ଏକ ଅଭିଜ୍ଞତା ଉପଲକ୍ଷ୍ୟରେ ବର୍ନାର୍ଡ଼ ଗୋଟିଏ ଠେକୁଆର କାନରେ ଉଷ୍ଣତା ମାପି କାନକୁ ଆବେଗ ବୋହି ନେଉଥିବା ସ୍ନାୟୁ ତନ୍ତୁଟି ଛିନ୍ନ କରିଦେଲେ । ତାଙ୍କ ଧାରଣା ଅନୁସାରେ ସେହି କାନଟିର ଉଷ୍ଣତା ଅନ୍ୟ କାନର ଉଷ୍ଣତା ଅପେକ୍ଷା ଊଣା ହେବା କଥା; କିନ୍ତୁ ଅତ୍ୟନ୍ତ ବିସ୍ମୟର କଥା ଯେ ଛିନ୍ନ କାନଟିର ଉଷ୍ଣତା ଖୁବ୍ ବଢ଼ିଗଲା । ସେହି ଆକସ୍ମିକ ଘଟଣାରୁ ଜଣା ପଡ଼ିଲା ଯେ ଶରୀରର ପ୍ରତ୍ୟେକ ଅଂଶକୁ ପ୍ରବାହିତ ହେଉଥିବା ରକ୍ତ ସଞ୍ଚାଳନ ସ୍ନାୟୁମାନଙ୍କଦ୍ୱାରା ସର୍ବଦା ପ୍ରଭାବିତ ହେଉଥାଏ, ତେଣୁ ସ୍ନାୟୁତନ୍ତୁଟି ଛିନ୍ନ କରିଦେଲେ ଅଧିକ ଶୋଣିତ ଅଙ୍ଗଟିରେ ପ୍ଲାବିତ ହୋଇ ଉଷ୍ଣତା ବଢ଼ାଇ ଦିଏ ।

ଫରାସୀ ଶରୀରବିଜ୍ଞାନଗବେଷକ ଚାର୍ଲସ୍ ରିଚେଟ୍‌ଙ୍କ ସାଫଲ୍ୟରେ ମଧ୍ୟ ଆକସ୍ମିକତାର ମୁଦ୍ରା ସୁସ୍ପଷ୍ଟ । ଅଣ୍ଡା, ପଶମ, ଫୁଲ, ପରାଗ ଆଦି ଅତି ସାଧାରଣ ଦ୍ରବ୍ୟ ସଂସ୍ରବରେ ଆସିଲେ କେତେକ ବ୍ୟକ୍ତି ବ୍ୟାଧିଗ୍ରସ୍ତ ହୋଇପଡ଼ନ୍ତି । ସମୟେ ସମୟେ

ତାହା ମାରାତ୍ମକ ହୋଇ ପଡ଼େ । କିନ୍ତୁ ଏହାର କାରଣ ଜଣା ନ ଥିଲା କି ଏ ବିଷୟରେ କୌଣସି ଅଧ୍ୟୟନ ନ ଥିଲା । ରିଚେଟ୍ ଏକ ବିଷାକ୍ତ ସାମୁଦ୍ରିକ ପ୍ରାଣୀ ସମ୍ବନ୍ଧରେ ଗବେଷଣା କରୁ କରୁ ସେହି ଜୀବର ବିଷର ତୀବ୍ରତା ମାପିବାକୁ ମନସ୍ଥ କରି ମୂଷାମାନଙ୍କୁ କେତେ ମାତ୍ରାର ବିଷ ଖୁଆଇ ଦେଲେ । ମୂଷାମାନେ ଗରଳ ଜ୍ୱାଳା ସହି ବଞ୍ଚିଗଲେ । ପରେ ପୁଣି ସେହି ମୂଷାମାନଙ୍କୁ ଦ୍ୱିତୀୟ ଥରେ ସେ ପୂର୍ବ ମାତ୍ରାର ଦଶ ଭାଗରୁ ଏକ ଭାଗ ମାତ୍ର ବିଷ ଖୁଆଇ ଦେଲେ । ମୂଷାଗୁଡ଼ିକ ସବୁ ମରିଗଲେ । ଯେଉଁ ମୂଷା ଦଶଗୁଣ ବିଷ ଖାଇ ହଜମ କରି ଦେଇଥିଲେ, ସେମାନେ ଏକ ଗୁଣ ବିଷରେ ଢଳି ପଡ଼ିଲେ କିପରି ? ରିଚେଟ୍ ବି ବିଶ୍ୱାସ କରି ପାରିଲେ ନାହିଁ । ପୁନର୍ବାର ସେ ସେହି ପରୀକ୍ଷଣ କଲେ । ଫଳରେ ଆଲେର୍ଜି ( Allergy ) ସମ୍ବନ୍ଧରେ ସର୍ବପ୍ରଥମ ମୌଳିକ ତତ୍ତ୍ୱ ଆବିଷ୍କୃତ ହେଲା ଏବଂ ଆରୋପିତ ସ୍ପର୍ଶ କାତରତା (induced sensilization) ଯେ ସମ୍ଭବ ତାହା ପ୍ରମାଣିତ ହେଲା

ଏକ ଘଟଣାରେ ରିଚେଟ ବ୍ୟାଧି ବର୍ଦ୍ଧିବାର କାରଣ ଯେପରି ଆକସ୍ମିକ ଭାବେ ଆବିଷ୍କାର କଲେ ଅନ୍ୟ ଘଟଣାରେ ପାଷ୍ଟୁର ସେହିପରି ଆକସ୍ମିକ ଭାବେ ସଂକ୍ରାମକ ରୋଗ-ରୋଧକ ଉପାୟ ଆବିଷ୍କାର କରିଥିଲେ । ଏକଦା ସେ କେତେଗୁଡ଼ିଏ କୁକୁଡ଼ାଙ୍କ ଶରୀରରେ ରୋଗ ରୋପଣ କରି ମାରିବାକୁ ଗଲେ; କିନ୍ତୁ ଯୋଗକୁ ଭୁଲରେ ସେ ଏକ ପରିତ୍ୟକ୍ତ ପୁରାତନ ପୋଷକ-ପାତ୍ରରୁ ରୋଗଦାୟକ ବା ରୋଗଦ ( g.ven ) ନେଇ ରୋପଣ ନିମନ୍ତେ ସମାଧାନ କଲେ କୁକୁଡ଼ାଗୁଡ଼ିକ ସାମାନ୍ୟ ରୋଗରେ ପଡ଼ିଲେ, ମାତ୍ର ମୁକୁଳି ଗଲେ । ଏହାପରେ ପୁଣି ଥରେ ରୋଗ ରୋପଣ ଅଭିଜ୍ଞତାରେ ନୂଆ କୁକୁଡ଼ା ଅଭାବରୁ ସେହି ରୋଗମୁକ୍ତ କୁକୁଡ଼ାଙ୍କୁ ବ୍ୟବହାର କରାଗଲା । ଉତ୍କଟ ରୋଗ-ଦାୟକ ବୀଜ ତାଙ୍କ ଦେହରେ ରୋପଣ କରାଗଲା; କିନ୍ତୁ ତାଙ୍କୁ ରୋଗ ଆଦୌ ବାଧିଲା ନାହିଁ । ଏହି ଘଟଣା ପରେ ପାଷ୍ଟୁରଙ୍କ ଆଖିରୁ ଅନ୍ଧପୁଟୁଳୀ ଖୋଲିଗଲା । ଏହି ଉପାୟ ଅବଲମ୍ବନ କରି ସେ କଣ୍ଟଅଳାଢ ରୋଗରୁ ମେଣ୍ଢାମାନଙ୍କୁ ଏବଂ ଜଳାତଙ୍କ ରୋଗରୁ ମଣିଷକୁ ରକ୍ଷା କରି ପାରିଥିଲେ । ତାପରେ ଅନ୍ୟାନ୍ୟ ଅନେକ ସଂକ୍ରାମକ ରୋଗ ବିରୁଦ୍ଧରେ ରୋଗରୋଧକ ଶକ୍ତି ସଂଗ୍ରହ କରିବା ପଥ ସୁଗମ ହେଲା ।

ଅନ୍ୟ ଏକ ଆକସ୍ମିକ ପର୍ଯ୍ୟବେକ୍ଷଣ ଯୋଗୁଁ ଇନ୍ସୁଲିନ୍ ଆବିଷ୍କୃତ ହୋଇଥିଲା ଏବଂ ତଦ୍ଦ୍ୱାରା ହଜାର ହଜାର ବହୁମୂତ୍ର ରୋଗୀଙ୍କ ସୁସ୍ଥ କରି ଜୀବନର ସୀମା ବହୁ-ପରିମାଣରେ ବଢ଼େଇ ଦେଇ ହେଲା । ଭନ୍ ମେରିଙ୍ଗ୍ ଏବଂ ମିଙ୍କୋସ୍କି ଜୀର୍ଣ୍ଣ ପ୍ରକ୍ରିୟାରେ ଅଗ୍ନ୍ୟାଶୟର ପ୍ରଭାବ ସମ୍ବନ୍ଧରେ ଗବେଷଣା କରୁଥିଲେ । କେତେଗୁଡ଼ିଏ କୁକୁରଙ୍କ ଉଦରରୁ ସେହି ଅଙ୍ଗଟି କାଟି ନେଇ ସେମାନେ କଣ ହେବ ଲକ୍ଷ୍ୟ କରୁଥିଲେ । ଭାଗ୍ୟକୁ ଜଣେ ସାହାଯ୍ୟକାରୀ ଲକ୍ଷ୍ୟ କଲେ ଯେ ଅସଂଖ୍ୟ ମାଛି ସେହି ପଶୁଙ୍କ ମୂତ୍ର ପାର୍ଶ୍ୱରେ ଭଣ ଭଣ ହେଉଛନ୍ତି । ଗବେଷକ ଦୁଇଜଣ ଏହି ତଥ୍ୟଟିକୁ

ଅନୁଧ୍ୟାନ କରି ଜାଣିଲେ ଯେ ଅଗ୍ନ୍ୟାଶୟ୍ଯବିହୀନ ପଶୁଙ୍କ ମୂତ୍ରରେ ଶର୍କରା ଭରି ରହିଛି । ଏହିପରି ଆକସ୍ମିକ ଭାବେ ବହୁମୂତ୍ର ବ୍ୟାଧିର ମୂଳ ଧରା ପଡ଼ିଲା ଏବଂ ତା'ର ନିରାକରଣ ସହଜ ହେଲା ।

ଅନ୍ୟ ଏକ ଆକସ୍ମିକ ଘଟଣାରୁ ଫ୍ଲେମିଂ ବହୁବିଧ ଦୁର୍ଦ୍ଧର୍ଷ ରୋଗ ନାଶକାରୀ ଜୀବାଣୁ ବିଷ ( Antibiotic ) ପେନ୍‌ସିଲିନ୍ ଆବିଷ୍କାର କରିଥିଲେ । ସେ ପୋଷ-ପାତ୍ରରେ ରୋଗଜୀବାଣୁମାନଙ୍କୁ ବଢ଼ାଉଥିଲେ । ଦୈବାତ୍ ଥରେ ସେହିପରି ଗୋଟିଏ ପୋଷପାତ୍ରରେ ପେନ୍‌ସିଲିୟମ୍ ନାମକ ଏକ ଫିମ୍ପିର ରେଣୁ ପଡ଼ି ଯାଇଥିଲା । ପେନ୍‌ସିଲିୟମ୍ ବଢ଼ିଲା ଏବଂ ରୋଗଦ ବୀଜାଣୁ ଗୁଡ଼ିକ ମାରି ଦେଲା । ଏଥିରୁ ଫ୍ଲେମିଂ ସଂକେତ ପାଇ ପ୍ରମାଣ କଲେ ଯେ ପେନ୍‌ସିଲିୟମ୍ ଫିମ୍ପି ଦେହରୁ ଏକ ପ୍ରକାର ବିଷ ନିର୍ଗତ ହୁଏ ଏବଂ ତାହା ଅନ୍ୟାନ୍ୟ ବହୁ ପ୍ରକାର ବୀଜାଣୁଙ୍କୁ ମାରିଦିଏ । ପେନ୍‌ସିଲିନ୍ ଓ ତଜ୍ଜାତୀୟ ଅନ୍ୟାନ୍ୟ ଜୀବାଣୁ ବିଷ ଯେ ଅଧୁନା ଆମର କେତେ ପ୍ରୟୋଜନ ତାହା ବଖାଣି କହିବା ନିଷ୍ପ୍ରୟୋଜନ ।

ଉଲ୍ଲିଖିତ ଦୃଷ୍ଟାନ୍ତମାନଙ୍କରୁ ପ୍ରତୀୟମାନ ହେବ ଯେ ବିଜ୍ଞାନର ଆବିଷ୍କାର ମୁଖ୍ୟତଃ ଏକ ଏକ ଆକସ୍ମିକ ବ୍ୟାପାର; କିନ୍ତୁ ପ୍ରକୃତରେ ସବୁ କ୍ଷେତ୍ରରେ ଏପରି ବିଚାର ସତ୍ୟର ଅପଳାପ ମାତ୍ର । ବିଜ୍ଞାନ-ଆକାଶର ଅସଂଖ୍ୟ ଆବିଷ୍କାର-ତାରା ମଧ୍ୟରେ ଆକସ୍ମିକ ଆବିଷ୍କାରଗୁଡ଼ିକ ଗୋଟିଏ ଗୋଟିଏ ଉଲ୍‌କା ମାତ୍ର ।

ଏହି ପ୍ରବନ୍ଧର ପ୍ରଥମ ଭାଗରେ ଉଲ୍ଲେଖ କରାଯାଇଛି ଯେ ସବୁ କାଳରେ ଏବଂ ସବୁ କ୍ଷେତ୍ରରେ ଆକସ୍ମିକ ଘଟଣା ଆଶା କରାଯାଏ । ତେବେ ସେହି ଆକସ୍ମିକତାରୁ ଲାଭ ଉଠେଇବା ସବୁବେଳେ ସମ୍ଭବ ହୁଏ ନାହିଁ । ଆକସ୍ମିକତାକୁ କାର୍ଯ୍ୟକାରୀ କରିବା ବା ସଦୁପଯୋଗ କରିବା ନିମିତ୍ତ ବିପୁଳ ଅନୁଭୂତି, ଗଭୀର ପ୍ରଜ୍ଞା ଏବଂ ଉଦାର ମନୋଭାବ ଆବଶ୍ୟକ ।

ବୁଢ଼ୀମା କାହାଣୀରେ ଅଛି ଯେ ପାର୍ବତୀଙ୍କ ସାନୁନୟ ଅନୁରୋଧରେ ସଦାଶିବ ମହେଶ ଜଣେ ଦୁଃସ୍ଥ ଦରିଦ୍ର ଭିକ୍ଷୁକ ପଥରେ ଏକ ରତ୍ନଭଣ୍ଡାର ଥୋଇ ଦେଲେ । ମାତ୍ର ଦୁର୍ଭାଗ୍ୟବଶତଃ ଭିକ୍ଷୁକ ତାହା ଆବିଷ୍କାର କରିପାରିଲା ନାହିଁ । ରତ୍ନଭଣ୍ଡାର ଥିବା ସ୍ଥାନରେ ସେ ଆଖି ବୁଜି ଦେଇ ଅନ୍ଧର ଅଭିନୟ କରି ଶିଖିବାକୁ ଇଚ୍ଛା କଲା । ସଦା ଜାଗ୍ରତ ନ ରହିଲେ ଆକସ୍ମିକ ସୁଯୋଗକୁ ହରାଇବାକୁ ହୋଇଥାଏ ।

ଆର୍କେମେଡ଼ିସ୍ ସନ୍ତରଣ କରୁ କରୁ ଆପେକ୍ଷିକ ଗୁରୁତ୍ୱ ତତ୍ତ୍ୱ ତାଙ୍କ ମନକୁ ଆଲୋଡ଼ିତ କରିଥିଲା । ସେ ଆର୍ଦ୍ର ଓ ଉଲଗ୍ନ ଅବସ୍ଥାରେ ସମସ୍ତ ପରିବେଶକୁ ଭୁଲି ଉନ୍ମାଦ ପରି ଧାଇଁ ଆସିଥିଲେ ସେହି ସମସ୍ୟାର ବିଶଦ ସମାଧାନ ନିମିତ୍ତ । ସେଉ ବୃକ୍ଷମୂଳରେ ବସି ନଉଟନ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଆତ୍ମବିସ୍ମୃତ ଥିଲେ । ଗଛରୁ

ଗୋଟିଏ ପାଚିଲା ସେଉ ସାମନାରେ ଖସି ପଡ଼ିଲା । ନିଉଟନଙ୍କ ମାନସିକ ଶାନ୍ତ ସରୋବରରେ ତରଙ୍ଗ ଖେଳିଲା । ସେ ମହାକାଶୀୟ ମାଧ୍ୟାକର୍ଷଣ ଶକ୍ତି ଆବିଷ୍କାର କଲେ । ତରୁଣ ଗାଲିଲିଓ ଚିରାଚରିତ ପ୍ରଥାରେ ମନ୍ଦିରକୁ ଯାଇଥିଲେ ଉପାସନା ନିମିତ୍ତ; କିନ୍ତୁ ମନ୍ଦିର ମଧ୍ୟରେ ଦୋଳାୟିତ ଗୋଟିଏ ଆଲୋକ ଝାଡ଼ ତାଙ୍କର ଲକ୍ଷ୍ୟ ବଦଳାଇ ଦେଲା । ସେହି ବିଷୟରେ ସେ ମନୋନିବେଶ କଲେ ଏବଂ ଦୋଳକ ତଥ୍ୟ ଧରା ପଡ଼ିଲା । ଫଳରେ ଅଖଣ୍ଡ କାଳର ପରିମାପ ସମ୍ଭବ ହେଲା ।

ସାମାନ୍ୟ ବା ତୁଚ୍ଛ ଘଟଣାଗୁଡ଼ିକରୁ ମହାନ୍ ତତ୍ତ୍ୱ ସମ୍ଭବପର ହୋଇଛି । ଏକଥା ଭାବିଲେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଲାଗେ ଯେ ସେହି ତତ୍ତ୍ୱ ବା ସତ୍ୟଗୁଡ଼ିକ ତା ଆଗରୁ କାହିଁକି ଲୋକେ ବାହାର ନ କଲେ । ଆଦିମକାଳରୁ ମନୁଷ୍ୟ ଜଳରେ ସନ୍ତରଣ କରିଆସିଛି । ଗଛରୁ ପତ୍ର, ଫୁଲ, ଫଳ ଝଡ଼ିଛି ଏବଂ ଭଙ୍ଗା ପଥର ଖଣ୍ଡ ଭୂଇଁଆଡ଼କୁ ଟାଣି ହୋଇ ଆସିଛି । ମନ୍ଦିରରେ ଝୁଲୁଥିବା ଝାଡ଼ ତ ଲକ୍ଷ ଲକ୍ଷ ଲୋକେ ଦେଖିଥିଲେ । ପୁଣି ନିଆଁ ଓ ମାଟି ପାତ୍ରର ବ୍ୟବହାର ଜଣାଯିବା ଦିନଠୁଁ ଅଗଣିତ ଲୋକ ବାଷ୍ପର ରୂପ ଉପଲବ୍ଧି କରିଥିବେ । ତେବେ ସେ ସବୁର ପ୍ରୟୋଗ ହେଲାନାହିଁ କିପରି ? ନ ହେବାର ଏକମାତ୍ର କାରଣ ମାନସିକ ପ୍ରସ୍ତୁତିର ଅଭାବ । ସେତେବେଳେ ସେ ସବୁର ସଙ୍କେତ କଳନା କରିବାକୁ ଲୋକଙ୍କର ସମ୍ବଳ ନ ଥିଲା । ତେଣୁ କେବଳ ଆକସ୍ମିକତା ଆବିଷ୍କାର କରେନାହିଁ; ଅର୍ଥାତ୍ କୌଣସି ଆବିଷ୍କାର କେବଳ ଆକସ୍ମିକ ନୁହେଁ । ପ୍ରତ୍ୟେକ ଆବିଷ୍କାରର ମୂଳରେ ଥାଏ ମହାନୁଭବ, ପ୍ରଜ୍ଞାଶୀଳ, ଧୀରତ୍ୱ ଏବଂ ଏକାଗ୍ରତା ।

କେବଳ ଆବିଷ୍କାର ଯଥେଷ୍ଟ ନୁହେଁ । ଆବିଷ୍କାରକୁ ଉପଯୁକ୍ତ ଲୋକ କଲ୍ୟାଣକର ପ୍ରୟୋଗରେ ଲଗାଇବା ପାଇଁ ଅକ୍ଳାନ୍ତ ଓ ଅସୀମ ପରିଶ୍ରମ ଏବଂ ଦୃଢ଼ ପ୍ରତିଜ୍ଞ ଅଧ୍ୟବସାୟୀର ସଂକଳ୍ପ ଲୋଡ଼ା । କଲମ୍ବସ୍‌ଙ୍କ ଆବିଷ୍କାର ପରେ ପଶ୍ଚିମ ଗୋଲାର୍ଦ୍ଧର ବିକାଶ କିମ୍ବା ଓ୍ୱାଟ୍‌ଙ୍କ ଆବିଷ୍କାର ପରେ ବାଷ୍ପୀୟ ଯାନର ବିକାଶ କଥା ପର୍ଯ୍ୟାଲୋଚନା କଲେ ଏହା ସ୍ପଷ୍ଟ ଜଣାପଡ଼େ । ଆବିଷ୍କାର ସାମାଜିକ ବିପ୍ଳବ ଆଣିବା ପଛରେ ଅଜସ୍ର ହର୍ଷ, ବିଷାଦ, ଜୟ, ପରାଜୟ ଲୁଚି ରହିଥାଏ ।

ବୃକ୍ଷର ବୀଜ ଚାରିଆଡ଼େ ବୁଣି ହୋଇ ପଡ଼େ । ଯେଉଁଠି ପାଗଯୋଗ ମିଳେ, କେବଳ ସେଇଠି ବୀଜରୁ ଅଙ୍କୁର ଉଦ୍‌ଗମ ହୁଏ । ସ୍ୱରା ଗଛ ବଢ଼େଇବାପାଇଁ ପୁଣି ଉପଯୁକ୍ତ କ୍ଷେତ୍ର, କର୍ଷଣ କେତେ ଯତ୍ନ ଓ ଉପାଦାନ ପ୍ରୟୋଜନ । ତେବେ ଯାଇ ଲାଭପ୍ରଦ ଫୁଲ ବା ଫଳ ଉଦ୍ୟାନ ଗଠିତ ହୁଏ । ଠିକ୍ ସେହିପରି ବିଜ୍ଞାନର ଆବିଷ୍କାର ବୀଜ ସ୍ୱରୂପ ମାତ୍ର । ବିନା ଆଶ୍ରୟରେ ଏହା ବଢ଼ିପାରେ ନାହିଁ ।



# ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟ

ଶ୍ରୀ ରବୀନ୍ଦ୍ରନାଥ କାନୁନ୍‌ଗୋ

'ବ୍ୟକ୍ତିତ୍ୱ'ର ଅର୍ଥ ଯେପରି ସାଧାରଣ ଲୋକ ପାଇଁ କେବଳ ବାହ୍ୟ ଶାରୀରିକ ଗଠନକୁ ବୁଝାଏ, ସେହିପରି ସ୍ୱାସ୍ଥ୍ୟରକ୍ଷା କହିଲେ ସେ ବୁଝେ କେବଳ ଶାରୀରିକ ସ୍ୱାସ୍ଥ୍ୟର ଯତ୍ନ ନେବା । ତା ପାଇଁ ସୁସ୍ଥତା ବା ଅସୁସ୍ଥତା ଏ ଦୁଇଟି ଶବ୍ଦ କେବଳ ଶରୀର ପ୍ରତି ପ୍ରଯୁଜ୍ୟ ହୋଇପାରେ । କିନ୍ତୁ ମନୁଷ୍ୟ କେବଳ କେତେକ ଶାରୀରିକ ଅଙ୍ଗର ସମଷ୍ଟି ନୁହେଁ ବା ବ୍ୟକ୍ତିତ୍ୱ କହିଲେ କେବଳ କେତେକ ଶାରୀରିକ ପ୍ରକ୍ରିୟାକୁ ବୁଝାଏ ନାହିଁ । ବ୍ୟକ୍ତିତ୍ୱ ଶରୀର ଓ ମନ ଉଭୟର ଏକ ସମନ୍ୱୟ । ଏହା ଶାରୀରିକ ଓ ମାନସିକ ପ୍ରକ୍ରିୟାର ଏକ ସଂଗଠନ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ଶରୀର ଓ ମନ ଉଭୟ ପରସ୍ପରଠାରୁ ପୃଥକ୍ । ପ୍ରକୃତରେ ବ୍ୟକ୍ତିତ୍ୱ ମଧ୍ୟରେ ଶରୀର ଓ ମନ ଦୁହେଁ ଅବିଚ୍ଛିନ୍ନ । ଏକ ବିନା ଅନ୍ୟକୁ ନେଇ ବ୍ୟକ୍ତିତ୍ୱର ସ୍ଥିତି ଅସମ୍ଭବ । କାରଣ ମନ ବିନା ଶରୀର ନିର୍ଜୀବ ଓ ଶରୀର ବିନା ମନ ଏକ ଅବାସ୍ତବ କଳ୍ପନା ମାତ୍ର । ତେଣୁ ପ୍ରତ୍ୟେକ ଲୋକଠାରେ ଏକ ସୁସ୍ଥ ବ୍ୟକ୍ତିତ୍ୱର ବିକାଶ ଦୃଷ୍ଟିରୁ ଶାରୀରିକ ସୁସ୍ଥତା ଯେତିକି ଆବଶ୍ୟକ, ମାନସିକ ସୁସ୍ଥତା ମଧ୍ୟ ସେତିକି ଆବଶ୍ୟକ । ସେଥିପାଇଁ ଶରୀର ଓ ମନ ଉଭୟର ଯତ୍ନ ପାଇଁ ସମସ୍ତ ନିୟମାବଳୀ ସ୍ୱାସ୍ଥ୍ୟରକ୍ଷାର ଅନ୍ତର୍ଗତ ହେବା ବିଧେୟ ।

ତେବେ ମାନସିକ ସ୍ୱାସ୍ଥ୍ୟ କହିଲେ କଣ ବୁଝାଏ ଓ ଏହା ଶାରୀରିକ ସ୍ୱାସ୍ଥ୍ୟଠାରୁ କିପରି ଭିନ୍ନ ? ମନୁଷ୍ୟର କି ପ୍ରକାର ଅବସ୍ଥାକୁ ମାନସିକ ଅସୁସ୍ଥତା କୁହାଯାଇ ପାରେ ? ପ୍ରତ୍ୟେକ ଲୋକ ସେମାନଙ୍କର ଜୀବଦ୍ଦଶା ମଧ୍ୟରେ ଯେପରି ବିଭିନ୍ନ ଶାରୀରିକ ଅସୁସ୍ଥତା ଭୋଗ କରିଥାନ୍ତି, ସେହିପରି ମାନସିକ ଅସୁସ୍ଥତା ମଧ୍ୟ ଅନୁଭବ କରିଥାନ୍ତି । ଉଦାହରଣ ସ୍ୱରୂପ ସାମାନ୍ୟ ଥଣ୍ଡା, କାଶ, ଝାଡ଼ା, ବାନ୍ତି, ଜ୍ୱର ପ୍ରଭୃତି ଯେପରି ଶାରୀରିକ ଅସୁସ୍ଥତାର ସୂଚନା ଦିଏ, ସେହିପରି ବିଭିନ୍ନ ପ୍ରକାର ମାନସିକ ଦ୍ୱନ୍ଦ୍ୱ, ଆବେଗ, ବିଶୃଙ୍ଖଳା, ହତାଶା, ନୈରାଶ୍ୟ, ବ୍ୟସ୍ତତା ଇତ୍ୟାଦି ମାନସିକ ଅସୁସ୍ଥତାର ଲକ୍ଷଣ । ସ୍ୱାସ୍ଥ୍ୟରକ୍ଷାର ନିୟମ ନ ମାନି ଏ ପ୍ରକାର ସାମାନ୍ୟ ଦୈହିକ ବା ମାନସିକ ଅସୁସ୍ଥତାର ଅବହେଳା କଲେ ଏହା କ୍ରମଶଃ ଉତ୍କଟ ଦୈହିକ ବା ମାନସିକ ବ୍ୟାଧିରେ ପରିଣତ ହେବାର ଯଥେଷ୍ଟ ସମ୍ଭାବନା ଅଛି । ଅନେକ ସ୍ଥଳରେ ମାନସିକ ବ୍ୟାଧି ଦୈହିକ ବ୍ୟାଧିଠାରୁ ଗୁରୁତର, କାରଣ ଏହା ବ୍ୟକ୍ତିତ୍ୱକୁ ସମ୍ପୂର୍ଣ୍ଣ ଭାବେ ବିକୃତ କରିଦେଇଥାଏ । ଏହି ଦୃଷ୍ଟିରୁ ମାନସିକ ସ୍ୱାସ୍ଥ୍ୟରକ୍ଷାର ପ୍ରୟୋଜନୀୟତା ସହଜରେ ଉପଲବ୍ଧି କରାଯାଇ ପାରିବ ।

ଯେଉଁ ଲୋକ ଶାରୀରିକ ସ୍ୱାସ୍ଥ୍ୟରକ୍ଷାର ନିୟମ ମାନି ନିଜର ଶରୀରକୁ ସୁସ୍ଥ ସବଳ କରିଥାଏ ସେ ଯେପରି ବିଭିନ୍ନ ଶାରୀରିକ ରୋଗ ଓ ଯନ୍ତ୍ରଣାର ପ୍ରତିରୋଧ କରିପାରେ, ସେହିପରି ଯାହାର ମନ ସୁସ୍ଥ, ସେ ଘର-ଜୀବନର ବିଭିନ୍ନ ସମସ୍ୟା, ଦ୍ୱନ୍ଦ, ବିଫଳତା ପ୍ରଭୃତିର ସମ୍ମୁଖୀନ ହେଲେ ସୁଦ୍ଧା ସେଥିରେ ବିଚଳିତ ନ ହୋଇ ଗଠନମୂଳକ କର୍ମପନ୍ଥାର ଅନୁସରଣ ଦ୍ୱାରା ତା ଜୀବନରେ ନିତ୍ୟ ସୁଖଶାନ୍ତି ଉପଭୋଗକରେ । ଯେଉଁ ଲୋକଙ୍କର ଦେହ ଓ ମନ ଉଭୟ ସୁସ୍ଥ ତାହାରିଠାରେହିଁ କେବଳ ସୁସ୍ଥ ବ୍ୟକ୍ତିତ୍ୱର ବିକାଶ ସମ୍ଭବ । ଅନେକ ଲୋକ ଭାବନ୍ତି ଯେ ଶରୀର ସୁସ୍ଥଥିଲେ ମନ ଆପେ ଆପେ ସୁସ୍ଥ ହୋଇଯିବ ଓ ଅସୁସ୍ଥ ଶରୀରରେ ଶତ ଚେଷ୍ଟା ସତ୍ତ୍ୱେ ମାନସିକ ସୁସ୍ଥତା ଉପଭୋଗ କରାଯାଇ ପାରିବ ନାହିଁ । କାରଣ ଯାହା ମାନସିକ ତାହା ଶାରୀରିକ ପ୍ରକ୍ରିୟାର ଚେତନା ମାତ୍ର । ଅବଶ୍ୟ ଏହା ସତ ଯେ, ବ୍ୟକ୍ତିତ୍ୱରେ ଶରୀର ଓ ମନ ଉଭୟଙ୍କୁ ପୃଥକ୍ କରାଯାଇ ନ ପାରେ ଏବଂ ଏହି ଦୃଷ୍ଟିରୁ ଶାରୀରିକ ସ୍ୱାସ୍ଥ୍ୟ ସୁସ୍ଥ ମନ ଗଠନ କରିବାରେ ସାହାଯ୍ୟ କରିଥାଏ । କିନ୍ତୁ ଏହାବୋଲି ସୁସ୍ଥଶରୀର ଯେ ସୁସ୍ଥମନର ଏକମାତ୍ର ପରିମାପକ ବା ସୁସ୍ଥମନ ଶାରୀରିକ ସୁସ୍ଥତା ଉପରେ ସମ୍ପୂର୍ଣ୍ଣ ଭାବରେ ନିର୍ଭର କରେ ତାହା କହିବା ଠିକ୍ ନୁହେଁ ।

ପ୍ରତ୍ୟେକ ଲୋକର ବ୍ୟକ୍ତିତ୍ୱ ଅଛି କିନ୍ତୁ ପ୍ରତ୍ୟେକ ହୁଏତ ମାନସିକ ସ୍ୱାସ୍ଥ୍ୟର ଅଧିକାରୀ ହୋଇ ନ ପାରନ୍ତି । ସେହିପରି ଅନେକ ଲୋକ ଶାରୀରିକ ସୁସ୍ଥତା ଉପଭୋଗ କରୁଥିଲେ ମଧ୍ୟ ସବୁଦା ମାନସିକ ଅଶାନ୍ତିରେ ଜୀବନ କାଟୁଥାନ୍ତି । ଏକ ଅପରାଧୀର ଦୃଷ୍ଟାନ୍ତ ନିଆଯାଉ । ତାର ଶରୀର ସୁସ୍ଥ ଓ ସବଳ । ସେ ଶାରୀରିକ ସ୍ୱାସ୍ଥ୍ୟରକ୍ଷାର ନିୟମ ମାନି ଚଳେ । ତାର ବ୍ୟକ୍ତିତ୍ୱ ଅଛି କିନ୍ତୁ ତାହା ସୁସ୍ଥ ନୁହେଁ, ରୋଗଗ୍ରସ୍ତ । କାରଣ ତାଠାରେ ସୁସ୍ଥ ମନର ଅଭାବ ପରିଲକ୍ଷିତ ହୁଏ । ସେ ନାନାଦି ଅସାଧୁ ଉପାୟରେ ଜୀବିକା ନିର୍ବାହ କରେ । ନିଜର ସ୍ୱାର୍ଥ ଓ ବିଭିନ୍ନ ପାଶବିକ ପ୍ରବୃତ୍ତିର ଚରିତାର୍ଥ ପାଇଁ ସେ ନିଜକୁ ସମସ୍ତ ମାନବିକ ଓ ସାମାଜିକ ମୂଲ୍ୟବୋଧ ଠାରୁ ଦୂରରେ ରଖିଥାଏ । ସେ ସାମାଜିକ ରୀତିନୀତି ଓ ଶୃଙ୍ଖଳାର ବାହାରେ । ଏପରି ଲୋକର ଶରୀର ସୁସ୍ଥ ଥାଇପାରେ କିନ୍ତୁ ମନ ରୁଗ୍ଣ ଓ ବିକାରଗ୍ରସ୍ତ ।

ଏଥିରୁ ସହଜରେ ଅନୁମାନ କରାଯାଇ ପାରିବ ଯେ, ମାନସିକ ସ୍ୱାସ୍ଥ୍ୟ ଅନେକାଂଶରେ ଶାରୀରିକ ସ୍ୱାସ୍ଥ୍ୟ ଉପରେ ନିର୍ଭର କରୁଥିଲେ ମଧ୍ୟ ଶାରୀରିକ ସ୍ୱାସ୍ଥ୍ୟଠାରୁ ଏହା ଭିନ୍ନ । ସୁସ୍ଥ ମନର ରୂପରେଖ ନିର୍ଦ୍ଧାରଣ କରିବାକୁ ଗଲାବେଳେ ଏହାର ଦୁଇଟି ବିଶେଷପ୍ରତି ଲକ୍ଷ୍ୟ ରଖିବାକୁ ହେବ । ତାହା ହେଉଛି ବ୍ୟକ୍ତିଗତ ଜୀବନର ମାନସିକ ସ୍ୱାସ୍ଥ୍ୟ ଓ ସାମାଜିକ ଜୀବନର ମାନସିକ ସ୍ୱାସ୍ଥ୍ୟ । ଯେଉଁ ଲୋକ ନିଜର ପ୍ରକୃତିଗତ ପ୍ରବୃତ୍ତି ଗୁଡ଼ିକୁ ନେଇ ଭୌତିକ ଜଗତର ବିଭିନ୍ନ ନୂତନ ପରିସ୍ଥିତି ସହ ଖାପ

ଯାଇ ପାରେ ସେ ବ୍ୟକ୍ତିଗତ ଜୀବନରେ ସୁସ୍ଥ ମନର ଅଧିକାରୀ ହୋଇଥାଏ, କିନ୍ତୁ ସାମାଜିକ ଜୀବନର ସୁଖଶାନ୍ତି ପାଇଁ ତାର ସାମାଜିକ ଜୀବନରେ ସହଯୋଗ ଆବଶ୍ୟକ । ଏଥିପାଇଁ ତାର ସମସ୍ତ କାର୍ଯ୍ୟକଳାପ ସାମାଜିକ ଓ ମାନବିକତା ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ହେବା ଦରକାର । ବ୍ୟକ୍ତିଗତ ଓ ସାମାଜିକଜୀବନର ମାନସିକ ସ୍ୱାସ୍ଥ୍ୟ ପୃଥକ୍ ଭାବରେ ଉପଭୋଗ କରାଯାଇ ପାରେ; କିନ୍ତୁ ଗୋଟିକର ଅଭାବରେ ବ୍ୟକ୍ତିତ୍ୱର ପୂର୍ଣ୍ଣବିକାଶ ବାଧାପ୍ରାପ୍ତ ହୋଇଥାଏ । ଉଦାହରଣ ସ୍ୱରୂପ କୌଣସି ଏକ ଅପରାଧୀ ତାର ସମସ୍ତ ଶକ୍ତି ସାମର୍ଥ୍ୟ, ଦୃଢ଼ ଆତ୍ମପ୍ରତ୍ୟୟ, ବ୍ୟକ୍ତିଗତ ମନୋଭାବ ପାଇଁ ତାର ବ୍ୟକ୍ତିଗତ ଜୀବନରେ ସମସ୍ତ ସୁଖଶାନ୍ତି ପାଇପାରେ, ତଥାପି ସାମାଜିକ ଜୀବନ ତା ପାଇଁ ବିଷମୟ । ତେଣୁ ସେ ସୁସ୍ଥ ମନର ଅଧିକାରୀ ବୋଲି କୁହାଯାଇ ପାରିବ ନାହିଁ । ସେହିପରି କୌଣସି ପରମୁଖାପେକ୍ଷୀ ବ୍ୟକ୍ତି ହୁଏତ ତାର ସାମାଜିକ ଜୀବନରେ ଅନ୍ୟମାନଙ୍କର ସ୍ନେହ, ଶ୍ରଦ୍ଧା ଓ ସେବା ଶୁଶ୍ରୂଷା ପାଇଁ ସୁଖଶାନ୍ତି ବୋଧ କରିପାରେ; କିନ୍ତୁ ତାର ନିଜର ଆତ୍ମନିର୍ଭରଶୀଳତା ଓ ଆତ୍ମବିଶ୍ୱାସ ଅଭାବରୁ ତାର ମନ ବିକାରଗ୍ରସ୍ତ ଓ ଦୁର୍ବଳ ହୋଇଥାଏ । ତାର ଅପାରଗତା ଓ ବ୍ୟକ୍ତିଗତ ଜୀବନରେ ଅଶାନ୍ତି ଯୋଗୁଁ ସେ ଅନ୍ୟମାନଙ୍କ ଚକ୍ଷୁରେ ଦୟାର ପାତ୍ର ହୋଇଥାଏ । ଏପରି ଲୋକର ମନ ସୁସ୍ଥ ବୋଲି କିପରି କୁହାଯାଇ ପାରିବ ?

ତେଣୁ ମନୁଷ୍ୟ ଜୀବନରେ ଶାରୀରିକ ଓ ମାନସିକ ବିକାଶର ପୂର୍ଣ୍ଣତାପ୍ରାପ୍ତି ନିମିତ୍ତ ଶାରୀରିକ ଓ ମାନସିକ ଉଭୟ ସ୍ୱାସ୍ଥ୍ୟରକ୍ଷାର ଗୁରୁତ୍ୱ ଉପଲବ୍ଧି କରାଯାଏ । ମନୁଷ୍ୟ ବ୍ୟକ୍ତିତ୍ୱକୁ ବଳିଷ୍ଠ ଓ ସୁସ୍ଥସବଳ କରି ଗଢ଼ିବା ହିଁ ଉଭୟଙ୍କର ଲକ୍ଷ୍ୟ । ଆଜିକାଲି ହୁଏତ ଶାରୀରିକ ସ୍ୱାସ୍ଥ୍ୟରକ୍ଷାର ମନୁଷ୍ୟ ଉପରେ ଯେଉଁ ଗଠନକାରୀ ପ୍ରଭାବ ଅଛି, ସେ ସମ୍ବନ୍ଧରେ କାହାର ସନ୍ଦେହ କରିବାର କିଛି ନାହିଁ । ପ୍ରତ୍ୟେକ ଶିକ୍ଷିତ ଲୋକ, ଏପରିକି କେତେକ ଅଶିକ୍ଷିତ ଲୋକ ମଧ୍ୟ ଭଲଭାବେ ଜାଣନ୍ତି ଯେ ନିୟମିତ ବ୍ୟାୟାମ ଓ ବିଶ୍ରାମ, ପୁଷ୍ଟିକର ଖାଦ୍ୟ ପାନୀୟ ସେବନ, ମୁକ୍ତବାୟୁ, ସୂର୍ଯ୍ୟାଲୋକ ଓ ପରିଷ୍କାର ପରିଚ୍ଛନ୍ନ ବାତାବରଣ ମଧ୍ୟରେ ଅବସ୍ଥାନ, ବିଭିନ୍ନ ରୋଗର ପ୍ରତିଷେଧକ ଗ୍ରହଣ ଇତ୍ୟାଦି ଶାରୀରିକ ସ୍ୱାସ୍ଥ୍ୟରକ୍ଷାର ନିୟମମାନ ପାଳନ କରିବା ଦ୍ୱାରା ଦୈହିକ ରୋଗରୁ ମୁକ୍ତି ଓ ଶାରୀରିକ ସୁଖଶାନ୍ତି ମିଳିଥାଏ । ସ୍କୁଲ କଲେଜର ପାଠ୍ୟକ୍ରମରେ ଶାରୀରିକ ସ୍ୱାସ୍ଥ୍ୟରକ୍ଷା ଅନ୍ୟ ଏକ ଅଂଶ ହୋଇଥିବାରୁ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ଏହାର ନିୟମାବଳୀକୁ ସହଜରେ ଗ୍ରହଣ କରି ପାରେ । ତେଣୁ ସାଧାରଣ ଲୋକ ଶାରୀରିକ ସ୍ୱାସ୍ଥ୍ୟରକ୍ଷା ଉପରେ ଯେତେ ମାତ୍ରାରେ ଗୁରୁତ୍ୱ ଆରୋପ କରନ୍ତି, ମାନସିକ ସ୍ୱାସ୍ଥ୍ୟରକ୍ଷା ଉପରେ ସେତେ ଗୁରୁତ୍ୱ ଦିଅନ୍ତି ନାହିଁ । ଏହାଛଡ଼ା ମାନସିକ ସ୍ୱାସ୍ଥ୍ୟରକ୍ଷାର ଅବହେଳାର ଅନ୍ୟ କେତେକ କାରଣ ଅଛି । ପ୍ରଥମତଃ ଶାରୀରିକ ସ୍ୱାସ୍ଥ୍ୟରକ୍ଷାର ନିୟମ ପାଳନ କରିବା

ସେତେ ସହଜ ମାନସିକ ସ୍ୱାସ୍ଥ୍ୟରକ୍ଷାର ନିୟମ ପାଳନ କରିବା ସେତେ ସହଜ ନୁହେଁ । ଦ୍ୱିତୀୟତଃ ସୁସ୍ଥଶରୀରର ଗଠନ ପାଇଁ ଶାରୀରିକ ସ୍ୱାସ୍ଥ୍ୟରକ୍ଷା ଯେତେ ଶୀଘ୍ର ଫଳପ୍ରଦ ହୋଇଥାଏ ସୁସ୍ଥମନର ବିକାଶ ପାଇଁ ମାନସିକ ସ୍ୱାସ୍ଥ୍ୟରକ୍ଷା ସେତେ ଶୀଘ୍ର ଫଳପ୍ରଦ ହୋଇ ପାରେ ନାହିଁ । ଉଦାହରଣ ସ୍ୱରୂପ ଶାରୀରିକ ସ୍ୱାସ୍ଥ୍ୟରକ୍ଷାର ନିୟମ, ଯଥା:—ବିଶୁଦ୍ଧଜଳ, ବାୟୁ ଓ ପୁଷ୍ଟିକର ଖାଦ୍ୟ ସେବନ, ନିୟମିତ ବ୍ୟାୟାମ ବା ରୋଗର ପ୍ରତିରୋଧ ବ୍ୟବସ୍ଥା ଇତ୍ୟାଦି ଅତି ସହଜରେ ପାଳନ କରାଯାଇ ପାରେ ଓ ଏହାର ଉପକାରିତା ମଧ୍ୟ ଅତି ଶୀଘ୍ର ଅନୁଭବ କରାଯାଇଥାଏ । କିନ୍ତୁ ସହିଷ୍ଣୁ ହେବା ବା ବୈଷୟିକ ମନୋଭାବ ନେଇ ଜୀବନର ସୁଖଦୁଃଖ ପ୍ରତି ସମାନ ଜ୍ଞାନ କରିବା ପ୍ରଭୃତି ମାନସିକ ସ୍ୱାସ୍ଥ୍ୟରକ୍ଷାର ସୂତ୍ରମାନଙ୍କୁ କାର୍ଯ୍ୟ କରି କରି ସେଗୁଡ଼ିକ ଏକ ପ୍ରକାର ମାନସିକ ଅଭ୍ୟାସରେ ପରିଣତ କରିବାର ଯେତିକି କଷ୍ଟସାଧ୍ୟ, ସେତିକି ସମୟ ସାପେକ୍ଷ । ସୁସ୍ଥଶରୀର ଗଠନ ନିମିତ୍ତ ବାହ୍ୟ ଜଗତରେ ଥିବା ବିଭିନ୍ନ ପାର୍ଥିବ ବସ୍ତୁର ସାହାଯ୍ୟ ନିଆଯାଇଥାଏ; କିନ୍ତୁ ମାନସିକ ସ୍ୱାସ୍ଥ୍ୟ ବା ଆଦର୍ଶ ଚରିତ୍ରର ଗଠନ ନିମନ୍ତେ ଏ ସବୁ ବସ୍ତୁର ପ୍ରତ୍ୟକ୍ଷ ସାହାଯ୍ୟ ଆବଶ୍ୟକ ହୁଏ ନାହିଁ । ସାଧାରଣ ଲୋକ ପକ୍ଷରେ ଶାରୀରିକ ସ୍ୱାସ୍ଥ୍ୟ ଉପଭୋଗ କରିବା ଯେତେ ସହଜ ବୋଧ ହୁଏ, ମାନସିକ ସ୍ୱାସ୍ଥ୍ୟ ଓ ଆଦର୍ଶଚରିତ ଗଠନ ସେତେ ସହଜ ବୋଧ ହୁଏ ନାହିଁ । କିନ୍ତୁ ବ୍ୟକ୍ତିଗତ ଓ ସାମାଜିକ ଜୀବନର ସମୂହ କଲ୍ୟାଣ ଦୃଷ୍ଟିରୁ ସୁସ୍ଥଶରୀର ଓ ଆଦର୍ଶ ଚରିତ୍ର ପ୍ରତ୍ୟେକ ମନୁଷ୍ୟର କାମ୍ୟ ଏବଂ ଏଥିପାଇଁ ଉଭୟ ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟରକ୍ଷାର ଆଶ୍ରୟ ନେବା ବିଧେୟ ।

ଏଠାରେ ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟରକ୍ଷାର ଏକ ତୁଳନାତ୍ମକ ବିଚାର କରାଗଲେ, ମାନସିକ ସ୍ୱାସ୍ଥ୍ୟରକ୍ଷା ଯେ ଶାରୀରିକ ସ୍ୱାସ୍ଥ୍ୟରକ୍ଷା ଭଳି ମାନବ ସେବାରେ ନିୟୋଜିତ ହୋଇପାରିବ ତାହା ସ୍ପଷ୍ଟଭାବେ ଜଣାଯିବ । ଶାରୀରିକ ସ୍ୱାସ୍ଥ୍ୟରକ୍ଷାର ନିୟମାବଳୀ ସହିତ ଅଧିକାଂଶ ଲୋକ ସୁପରିଚିତ ।

ସେ ଗୁଡ଼ିକୁ ମୁଖ୍ୟତଃ ପାଞ୍ଚଟି ସୂତ୍ରରେ ବିଭକ୍ତ କରାଯାଇ ପାରେ । ତାହା ହେଉଛି—(୧) ଉତ୍ତମ ବାସସ୍ଥାନ ଓ ସ୍ୱାସ୍ଥ୍ୟକର ଜଳବାୟୁ ସୁସ୍ଥଶରୀର ପାଇଁ ଏକାନ୍ତ ଆବଶ୍ୟକ । ( Sanitary conditions ) ।

(୨) ଶରୀରକୁ ବିଭିନ୍ନ ରୋଗର ଜୀବାଣୁଙ୍କ ପ୍ରଭାବରୁ ରକ୍ଷା କରିବାପାଇଁ ଆବଶ୍ୟକୀୟ ଇଂଜେକସନ୍ ଇତ୍ୟାଦି ପ୍ରତିଷେଧ ବ୍ୟବସ୍ଥା କରିବା ଆବଶ୍ୟକ । (Immunization and other preventive measures.) ।

(୩) ଶରୀରକୁ ସୁସ୍ଥରଖିବାକୁ ହେଲେ ବିଭିନ୍ନ ଅଙ୍ଗର ଯତ୍ନନେବା, ପରିଷ୍କାର ପରିଚ୍ଛନ୍ନ ରହିବା ଓ କେତେକ ନିୟମିତ ଅଭ୍ୟାସ ପାଳନ କରିବା ଉଚିତ ।

(୪) ସୁସ୍ଥଶରୀର ଗଠନ ପାଇଁ ଶାରୀରିକ ବ୍ୟାୟାମ ଆବଶ୍ୟକ ।

(୫) ଶାରୀରିକ ସୁସ୍ଥତା ପାଇଁ ପୁଷ୍ଟିକର ଖାଦ୍ୟ, ପାନୀୟ ଓ ଉପଯୁକ୍ତ ବିଶ୍ରାମ ଆବଶ୍ୟକ ।

ଠିକ୍ ଏହିଭଳି ମାନସିକ ସ୍ୱାସ୍ଥ୍ୟରକ୍ଷାର ନିୟମଗୁଡ଼ିକୁ ମଧ୍ୟ ପ୍ରଧାନତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇ ପାରିବ ।

(୧) ମାନସିକ ସ୍ୱାସ୍ଥ୍ୟପାଇଁ ଗୋଷ୍ଠୀଗତ ବା ସୁସ୍ଥସାମାଜିକ ବନ୍ଧନ ଆବଶ୍ୟକ । ସାମାଜିକ ଜଳବାୟୁ ସୁସ୍ଥ ହେଲେ ବ୍ୟକ୍ତିଗତ ସମ୍ପର୍କ ଗଭୀର ହୋଇଥାଏ । ଭାବର ଆଦାନ ପ୍ରଦାନ ସହଜ ହୋଇଥାଏ । ସହଯୋଗ ମନୋବୃତ୍ତି ବୃଦ୍ଧି ପାଇଥାଏ ଏବଂ ଏସବୁର ଫଳରେ ପ୍ରତ୍ୟେକ ପାରିବାରିକ ଓ ଗୋଷ୍ଠୀଗତ ଜୀବନର ଏକତା ଓ ସହଯୋଗ ମନୋଭାବ ସୁସ୍ଥମନ ଓ ସୁସ୍ଥ ସମାଜ ଗଠନରେ ବିଶେଷ ସାହାଯ୍ୟ କରିଥାଏ ।

(୨) ମନରୁ ସମସ୍ତ ସଙ୍କୋଚ, ଅନିଶ୍ଚିତତା, ନୈରାଶ୍ୟ, ଅଶାନ୍ତି ଇତ୍ୟାଦି ଦୂର କରି ମନ ମଧ୍ୟରେ ଦମ୍ଭ, ନିଶ୍ଚିତତା, ପାରଗତାବୋଧ ଆଣି ଦେଉଥିବା ଅଭିଜ୍ଞତା ଓ ଅନୁଭୂତି ପ୍ରତ୍ୟେକ ଲୋକର ଆବଶ୍ୟକ । ଏଥିପାଇଁ ପ୍ରତ୍ୟେକ ଲୋକ ନିଜର କର୍ତ୍ତବ୍ୟ ଉପରେ ସମ୍ପୂର୍ଣ୍ଣ ଆସ୍ଥା ରଖିବା ବାଞ୍ଛନୀୟ ଏବଂ ଏହାଛଡ଼ା ନିଜର ଦୋଷ ଦୁର୍ବଳତା ଓ ସୀମିତ ଶକ୍ତି ସମ୍ବନ୍ଧରେ ସଚେତନ ହେବା ବିଧେୟ । ସାମାଜିକ ମୂଲ୍ୟବୋଧ ରହିତ କାର୍ଯ୍ୟରୁ ନିବୃତ୍ତ ହୋଇ ସର୍ବଦା ମାନବିକ ବା ସାମାଜିକ ମୂଲ୍ୟବୋଧର ପ୍ରେରଣା ନେଇ ସାମାଜିକ ଅନୁମୋଦନ ପାଉଥିବାଭଳି କାର୍ଯ୍ୟରେ ପ୍ରବୃତ୍ତ ହେବା ହିଁ ମାନସିକ ସ୍ୱାସ୍ଥ୍ୟର ଲକ୍ଷଣ । କର୍ତ୍ତବ୍ୟ ଜ୍ଞାନ ଥିବା ଲୋକର ଦୈହିକ ଶକ୍ତି ଯେତେ ସୀମିତ ହେଉନା କାହିଁକି ତାହାର ମାନସିକ ଶକ୍ତି ଅସୀମ । ସେଥିପାଇଁ ସେ ମାନସିକ ସ୍ୱାସ୍ଥ୍ୟର ଅଧିକାରୀ ।

(୩) ସୁସ୍ଥଶରୀର ପାଇଁ ପରିଷ୍କାରପରିଚ୍ଛନ୍ନତା ଯେପରି ଆବଶ୍ୟକ ସୁସ୍ଥ ମନ ପାଇଁ ଏକ ପ୍ରକାର ବୈଷୟିକ ମନୋଭାବ ( Impersonal and objective attitude ) ସେହିପରି ଆବଶ୍ୟକ । ଏ ପ୍ରକାର ମନୋଭାବ ସାହାଯ୍ୟରେ ମନ ବିଭିନ୍ନ କୁସଂସ୍କାର ଓ ଅନ୍ଧବିଶ୍ୱାସରୁ ମୁକ୍ତ ରହେ । ନିଜର ବ୍ୟକ୍ତିଗତ ଦୋଷ ଦୁର୍ବଳତାଗୁଡ଼ିକ ପ୍ରତି ସଚେତନ ରହି ଜୀବନର ବିଭିନ୍ନ ସମସ୍ୟା ଗୁଡ଼ିକର ପ୍ରକୃତ ରୂପରେଖ ନିର୍ଦ୍ଧାରଣ କରିବାରେ ଏ ପ୍ରକାର ମନୋଭାବ ହିଁ ସାହାଯ୍ୟ କରିଥାଏ । ଏହା ଫଳରେ ନିଜ ସମ୍ବନ୍ଧରେ ଓ ବାସ୍ତବ ଜଗତ ସମ୍ବନ୍ଧରେ ଏକ ସଠିକ୍ ଧାରଣା ମିଳିଥାଏ । ଏ ପ୍ରକାର

ମନୋଭାବର ଅଭାବ ଫଳରେ ମନ ମଧ୍ୟରେ ନାନା କୁସଂସ୍କାର, ଭେଦଭାବ, ସଙ୍କୀର୍ଣ୍ଣତା ଇତ୍ୟାଦି ଦେଖାଦେଇ ମନକୁ କଳୁଷିତ କରିଥାଏ ।

(୪) ସୁସ୍ଥ ମନ ପାଇଁ ନିଜର ବ୍ୟାବହାରିକ ଜୀବନରେ ବିଭିନ୍ନ ପାରିପାର୍ଶ୍ୱିକ ଅବସ୍ଥାସହ ନିଜକୁ ଖାପ ଖୁଆଇ ଚଳାଇ ପାରୁଥିବା ଭଲ ସୁଅଭ୍ୟାସର ପ୍ରୟୋଜନୀୟତା ପ୍ରତ୍ୟେକ ବୟସ୍କ ଲୋକ ଉଣା ଅଧିକେ ହୃଦୟଙ୍ଗମ କରିଥିବେ । କେଉଁ ପ୍ରକାର କାର୍ଯ୍ୟର ଅଭ୍ୟାସ କଲେ ତାହା ସାମାଜିକ ଓ ବ୍ୟକ୍ତିଗତ ସହିତରେ ସାହାଯ୍ୟ କରିବ ତାର କୌଣସି ଧରାବନ୍ଧା ତାଲିକା ନାହିଁ । ଏହା ନିଜର ବ୍ୟକ୍ତିଗତ ଦୃଷ୍ଟିକୋଣରୁ କେବଳ ବିଚାର କରାଯାଇପାରେ । ତଥାପି ପ୍ରତ୍ୟେକ ଲୋକ ପକ୍ଷରେ ଏକ ସୁଚିନ୍ତିତ ଆଦର୍ଶ ଜୀବନ-ଦର୍ଶନର ଅନୁସରଣ କରିବା ସୁସ୍ଥମନର ପରିଚାୟକ ।

(୫) ଶରୀରକୁ ଗଢ଼ିବା ପାଇଁ ଯେପରି ଉପଯୁକ୍ତ ଖାଦ୍ୟ ଓ ବିଶ୍ରାମର ପ୍ରୟୋଜନ ସେହିପରି ମନର ଅଭିବୃଦ୍ଧି ଓ ପ୍ରଫୁଲ୍ଲତା ପାଇଁ ମନକୁ ଖାଦ୍ୟ ଓ ବିଶ୍ରାମ ଯୋଗାଇବା ଦରକାର । ମନୁଷ୍ୟର କେତେକ ମୌଳିକ ମାନସିକ ପ୍ରବୃତ୍ତି (needs) ର ଚରିତାର୍ଥ ଦ୍ୱାରା ହିଁ ମନ ସନ୍ତୁଷ୍ଟ ରହିଥାଏ । ଯେଉଁ ଲୋକ ଜୀବନରେ ସ୍ୱାଧୀନବୋଧ କରିପାରେ ନାହିଁ, ନିଶ୍ଚିତ ବୋଧ କରି ପାରେ ନାହିଁ ବା ନିଜକୁ ଅତ୍ୟନ୍ତ ଏକୁଟିଆ ଓ ଅସହାୟ ମନେ ବା ଯେ ଅନ୍ୟମାନଙ୍କର ସ୍ନେହ ସହାନୁଭୂତିରୁ ବଞ୍ଚିତ, ସେ ମାନସିକ ସୁଖ ଶାନ୍ତି କିପରି ବା ଲାଭ କରିପାରିବ ? ଏହାଛଡ଼ା ବିଶ୍ରାମଦ୍ୱାରା ଯେପରି ଶାରୀରିକ କ୍ଳାନ୍ତି ଦୂର ହୋଇଥାଏ, ସେହିପରି ଖେଳ ଓ ବିଭିନ୍ନ ପ୍ରକାର ଚିତ୍ତବିନୋଦନ ଦ୍ୱାରା ମାନସିକ ଆବେଗଗତ, ଅସନ୍ତୁଷ୍ଟିସମୂହ ଦୂର ହୋଇଥାଏ । କାର୍ଯ୍ୟଜନିତ, ଆବେଗଗତ ଅଶାନ୍ତି ଦୂରକରିବା ପାଇଁ ଆମ୍ଭେମାନେ ବିଭିନ୍ନ ଖେଳରେ ପ୍ରବୃତ୍ତ ହେଉଁ । ଯେଉଁ ପ୍ରକାର ଚିତ୍ତବିନୋଦନ ଓ ଖେଳ ସମାଜରେ ଅନୁମୋଦିତ ଓ ଆଦୃତ କେବଳ ସେହି ଗୁଡ଼ିକ ମାନସିକ ଅଶାନ୍ତି ଦୂରକରିବାର ପ୍ରକୃଷ୍ଟ ପନ୍ଥା ଭାବେ ଗ୍ରହଣ କରିବା ଉଚିତ ।

ଏସମସ୍ତ ମାନସିକ ସ୍ୱାସ୍ଥ୍ୟରକ୍ଷାର କେତେକ ମୌଳିକନିୟମମାତ୍ର । ଶରୀରର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ମାନସିକ ପରିପକ୍ୱତା ଲାଭ କରି ବ୍ୟକ୍ତିତ୍ୱକୁ ପୂର୍ଣ୍ଣାଙ୍ଗ କରିବାକୁ ହେଲେ ଶାରୀରିକ ସ୍ୱାସ୍ଥ୍ୟରକ୍ଷା ସଙ୍ଗେ ସଙ୍ଗେ ମାନସିକ ସ୍ୱାସ୍ଥ୍ୟରକ୍ଷା ପ୍ରତି ନଜର ଦେବାକୁ ପଡ଼ିବ ।

[ ଦିଗନ୍ତ ୨ୟ ବର୍ଷ ୭, ୮ମ ସଂଖ୍ୟା ]

# ଶକ୍ତି ସନ୍ଧାନ

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

ମନୁଷ୍ୟ ଦୁର୍ବଳ ଯେତେବେଳେ, ଯେତେବେଳେ ସେ ଆପଣାକୁ ଅନ୍ୟଠାରୁ ବିଚ୍ଛିନ୍ନ କରି ରଖେ । ଯେତେବେଳେ ସେ ଜଗତରେ ସବୁ ପ୍ରାଣୀଙ୍କ ସହିତ ସୁଖ ଦୁଃଖରେ ଆପଣାକୁ ଭାଗୀ କରାଏ, ସେତେବେଳେ ସେ ନିଜକୁ ଆଉ ଦରିଦ୍ର ମନେ କରେ ନାହିଁ । ସେତେବେଳେ ସେ ଦରିଦ୍ରର ବନ୍ଧୁ ହୋଇ ଉଠେ । ଟଙ୍କା ପଇସା ନ ଥିଲେ ମଧ୍ୟ ସେ ଅନ୍ୟର ସେବା କରିପାରେ । ସେବା ପୂତ, ପବିତ୍ର, ଶୁଦ୍ଧ ହେଲେ ଅର୍ଥ ଆପେ ଆସିଯାଏ—କୌଣସି ଭଲ କାମ ଅର୍ଥ ଅଭାବରୁ ରହେନାହିଁ । ଯେଉଁପର୍ଯ୍ୟନ୍ତ ଆମ୍ଭମାନଙ୍କର ନିଜର କାମ କରିବାର ପ୍ରୟାସ ଥାଏ, ନିଜର ନିଜତ୍ୱ ଦିଗକୁ ଲକ୍ଷ୍ୟ ଥାଏ, ସେହିପର୍ଯ୍ୟନ୍ତ ନାନା ବାଧାବିଘ୍ନ ଅସୁବିଧା ଆସି ଆମ ସମ୍ମୁଖରେ ଛିଡ଼ାହୁଏ । ନିଜକୁ ସମସ୍ତଙ୍କ ସହିତରେ ମିଳାଇ ନିଜ ହୃଦୟରେ ସହାନୁଭୂତି ଜାଗ୍ରତ କରିପାରିଲେ ଲୋକ ଧନୀ ହୋଇ ଉଠେ । ଈଶ୍ୱର ସ୍ୱର୍ଗକୁ ମଧ୍ୟ ଗ୍ରହ ଗ୍ରହ ନାହାନ୍ତି—ସେ କୁଟୀରର ଅନ୍ତରରେ ମଧ୍ୟ ଆଲୋକ ସ୍ୱରୂପ ରହିଛନ୍ତି । ସୁତରାଂ ଦାରିଦ୍ର୍ୟରୁ ଦୂରରେ ରହିବାକୁ ହେଲେ ସ୍ୱାର୍ଥର ଦୂରରେ ରହି ପରାର୍ଥକୁ ଆପଣାର କରିବାକୁ ହେବ—ଜଗତକୁ ଆପଣାର କରିବାକୁ ହେବ । କଠିନ ହେଲେ ମଧ୍ୟ ଯୋଗୀଋଷିମାନଙ୍କ ପକ୍ଷରେ ଏହା ସମ୍ଭବପର ହୋଇଥିଲା ଏବଂ ସେମାନେ ଏଥିର ଦୃଷ୍ଟାନ୍ତ ଦେଖାଇ ଯାଇଛନ୍ତି । ଯୀଶୁ, ଚୈତନ୍ୟ, କବୀର, ନାନକ, ମହମ୍ମଦ ଏବଂ ରାମକୃଷ୍ଣ ଏହି ଶ୍ରେଣୀର ଲୋକ । ଯେତେବେଳେ ଜଗତ ଅତି ନଷ୍ଟଭ୍ରଷ୍ଟ ହେବାକୁ ବସେ ସେତେବେଳେ ଭଗବାନ ସ୍ୱୟଂ ଆସନ୍ତି ରୂପ ନେଇ ଜଗତକୁ ରକ୍ଷା କରିବା ପାଇଁ, ପାପୀକୁ ଦମନ କରି ଧାର୍ମିକକୁ ରକ୍ଷା କରିବା ନିମନ୍ତେ । ନିଜ ମଧ୍ୟରେ, ଜଗତ ମଧ୍ୟରେ ଦୁଇଗୋଟି ଶକ୍ତି କାର୍ଯ୍ୟ କରୁଅଛି—ଗୋଟିଏ ମନ୍ଦ ଆଉ ଗୋଟିଏ ଶୁଦ୍ଧ, ସୁନ୍ଦର, ନିର୍ମଳ ଶକ୍ତି ।

ମନ୍ଦଠାରୁ ଆପଣାକୁ ହଟାଇ ଆଣିଲେ ସୁନ୍ଦର ଆଡ଼କୁ ଆମେ ଆଉକିବୁଁ । କିନ୍ତୁ ମନ୍ଦ ଶକ୍ତି ଏତେ ପ୍ରବଳ ଯେ ଏହି ସୁନ୍ଦର ପ୍ରତି ବରାବର ମନ ନ କଲେ ଆମେ ମନ୍ଦରେହିଁ ବୁଡ଼ି ରହିବୁ, ମନ୍ଦକୁ ସମୂଳେ ବିନଷ୍ଟ କରି ମଙ୍ଗଳର ପଥରେ ପ୍ରତି ମୁହୂର୍ତ୍ତ ଅଗ୍ରସର ହେବାର ଚିନ୍ତା ସର୍ବଦା ହୃଦୟରେ ଜାଗରୂକ ଥିବା ଉଚିତ ।

ଭାବନା ଠିକ୍ ହେଲେ କାର୍ଯ୍ୟ ଠିକ୍ ହେବ । ଭାବନା ଆମର ଦୋରସ୍ତ ନୁହେଁ ବୋଲି କାର୍ଯ୍ୟ ଆମର ଦୋରସ୍ତ ନୁହେଁ । ମୃତ୍ୟୁ ମଧ୍ୟରେ ଅନନ୍ତ ଜୀବନ, ଦୁର୍ଭାଗ୍ୟ ମଧ୍ୟରେ ଅନନ୍ତ ସୌଭାଗ୍ୟ, ମହାକଷ୍ଟ ମଧ୍ୟରେ ଅସୀମ ଆନନ୍ଦ ଅନୁଭବ କରେ, ସେହି ଲୋକ ଯେ ଜୀବନକୁ ବିଚ୍ଛିନ୍ନ କରିନାହିଁ—ଯାହାର ଜୀବନର ଯୋଗସୂତ୍ର ସମସ୍ତଙ୍କ ସହିତ ରହିଛି ।

ବର୍ତ୍ତମାନ ସ୍ୱତଃ ପ୍ରଶ୍ନ ଉଠୁଛି କିପରି ପାପୀ, ଦୁଷ୍ଟ, ଭ୍ରଷ୍ଟାଚାରୀଙ୍କ ସଙ୍ଗରେ ଆମର ଜୀବନର ଯୋଗସୂତ୍ର ରଖାଯାଇ ପାରେ । ଏହାଦ୍ୱାରା ଆମର ଘୋର କ୍ଷତି ଘଟିପାରେ, ଏହି ଆଶଙ୍କା ଜାତ ହେବା ସ୍ୱାଭାବିକ । ମାତ୍ର ମୁଁ ଯାଉଛି ମୋର ଅନନ୍ତ ସୌନ୍ଦର୍ଯ୍ୟର ଭାବ ନେଇ ଅନ୍ୟଙ୍କୁ ରଙ୍ଗାଇବା ପାଇଁ—ମୁଁ ସୂର୍ଯ୍ୟ କିରଣ, ସମସ୍ତଙ୍କୁ ପ୍ରଭାବିତ କରିବି ମୋର କିରଣଦ୍ୱାରା ମୁଁ ଚନ୍ଦ୍ରକିରଣ, ସମସ୍ତଙ୍କୁ ସ୍ନିଗ୍ଧ-ମୁଗ୍ଧ କରିବି ମୋର ଚନ୍ଦ୍ର କିରଣ ଦ୍ୱାରା । ଅନ୍ୟ ଲୋକ ସେଥିରେ ମୁଗ୍ଧ ବା ଲୁବ୍ଧ ହେଉ ବା ନ ହେଉ ମୋର ଲକ୍ଷ୍ୟ ଠିକ୍ । ମୁଁ ଆନନ୍ଦ ଦାନ କରିବି, ଜଗତର ସେବା କରିବି ।

ପୁଣି ପ୍ରଶ୍ନ ଉଠେ—ତେବେ ପାରିପାର୍ଶ୍ୱିକ ଘଟଣାଚକ୍ର କଣ ତୁମକୁ ମୁଗ୍ଧ ବା ଲୁବ୍ଧ କରିବ ନାହିଁ ? ଅବଶ୍ୟ କରିବ; ଯଦି ମୁଁ passive ବା ନିଷ୍କ୍ରିୟ ଥାଏ । କିନ୍ତୁ ମୁଁ ଯଦି ଆପଣା ଚିନ୍ତାରେ ଆପଣା ଭାବନାରେ ଅତ୍ୟନ୍ତ ସକ୍ରିୟ ଅବସ୍ଥାରେ ଥାଏ ତାହେଲେ ଆବେଷ୍ଟନୀକୁ ମୁଁ ସିନା ପ୍ରଭାବିତ କରିବି—ମୋତେ ଆବେଷ୍ଟନୀ ପ୍ରଭାବିତ କରିବ କିପରି ?

ପୁଣି ପ୍ରଶ୍ନ ଉଠେ—ଯଦି ଆବେଷ୍ଟନୀଠାରୁ ମୋର ଶକ୍ତି, ଚିନ୍ତା, ଭାବନା, ବଳବତ୍ତର ହେବ ତେବେ ସିନା ମୁଁ ପାରିବି—ନୋହିଲେ ମୁଁ ତ ଆବେଷ୍ଟନୀ ଦ୍ୱାରା ମୁହ୍ୟମାନ ହୋଇଯିବି ।

ସେଥିପାଇଁ ଆବଶ୍ୟକ ହୁଏ ସାଧନା । ଅବିଚ୍ଛିନ୍ନ ସାଧନା ପରେ ମନୁଷ୍ୟ ନିଜକୁ ସ୍ଥିର, ଅବିଚଳିତ ରଖିପାରେ ଏବଂ ସେତେବେଳେ ତାର ସାତ୍ତ୍ୱିକ କିରଣ ଦ୍ୱାରା ସେ ଅନ୍ୟଙ୍କୁ ପ୍ରଭାବିତ କରିପାରେ ।

ଯେ ଅନୁଭବ କରିବ ମନ୍ଦ ହିଁ ଭଲକୁ ଖାଇଯିବ, ମନ୍ଦର ଶକ୍ତି ବେଶି, ସେ ଯାନ୍ତ୍ରିକ, ବ୍ୟାବହାରିକ, ନାସ୍ତିକ—ତାର ଈଶ୍ୱର ବିଶ୍ୱାସର ଅର୍ଥ କିଛି ନାହିଁ । ଈଶ୍ୱର ତ ମଙ୍ଗଳମୟ—ମଙ୍ଗଳମୟଙ୍କର ରାଜ୍ୟରେ ସବୁ ତ ମଙ୍ଗଳମୟ କରିବାକୁ ହେବ—ମଙ୍ଗଳମୟଙ୍କ ସେ ଅସୀମ କ୍ଷମତା ଅଛି ବୋଲି ସ୍ୱୀକାର କରାଯାଇଛି ।

ପାପର ଓ ମନ୍ଦର କ୍ଷମତା ଯେତେ ବେଶି ହେଲେ ମଧ୍ୟ ସସୀମ; ତାହା ଅସୀମ ହୋଇ ପାରେନା । ଶେଷରେ ମନ୍ଦର ହିଁ ଜୟ ହେବ ଏହା ଭାବିବା ନାସ୍ତିକତା, ଈଶ୍ୱରଙ୍କୁ କ୍ଷୁଣ୍ଣ କରିବା । ଏହା କରିବା ଦ୍ୱାରା ଈଶ୍ୱରଙ୍କ ସତ୍ତାକୁ ମଧ୍ୟ କ୍ରମେ କ୍ରମେ ଅସ୍ୱୀକାର କରିବା । ଏହାହିଁ ଜଗତରେ ଆଜି ହୋଇଛି । ସେଥିପାଇଁ ଆଜି ସ୍ୱାର୍ଥପରତାର ଏହି ଭୀଷଣ ନରରକ୍ତପାତ । ସେଥିପାଇଁ ଆଜି ଅସଂଖ୍ୟ ମନୁଷ୍ୟ ଦେବତା ନ ହୋଇ ଦାନବ ରୂପ ଧାରଣ କରିଛନ୍ତି ।

ଆଜି ଯେଉଁ ଯୁଦ୍ଧ ଲାଗିଛି ତାର ରୂପ ହିଟଲର, ଚର୍ଚ୍ଚିଲ, ମୁସୋଲିନୀଙ୍କରେ ମୂର୍ତ୍ତୀଭୂତ ହୋଇଛି; କିନ୍ତୁ ଏହାର ମୂଳ ପ୍ରତ୍ୟେକ ମନୁଷ୍ୟର ସ୍ୱାର୍ଥପରତାର, ବାସନାର, କାମନାର, ଆକାଂକ୍ଷାର ଅପରିତୃପ୍ତିରେ। ଏହା ଜାତୀୟ ମହାପାପ—ଏହି ଜାତୀୟମହାପାପକୁ ଧ୍ୱଂସ କରିବାପାଇଁ ଏହି ନରମେଧ ଯଜ୍ଞ ଲାଗିଅଛି, ଏହା ସ୍ୱାସ୍ଥ୍ୟକର ଅବସ୍ଥା ନୁହେଁ କାହାର ପକ୍ଷରେ।

ଭାରତ ଏକା ଏଥିରୁ ଅନେକ ଯୁଗ ଯୁଗ ଧରି ଦୂରରେ ହୋଇ ରହିଛି। ଭାରତ ମହାଯୋଗୀ ପରି ସ୍ଥିର ରହିଛି, ସବୁ ସହିଛି। ଶିବ-ଶଙ୍କର ପରି ମୂକ ହୋଇ ରହିଛି—ହସିଛି, କାନ୍ଦିଛି, ଭାବିଛି କିନ୍ତୁ କାଳକୁ ପ୍ରତୀକ୍ଷା କରି ରହିଛି। ଏହା ନିଷ୍କ୍ରିୟତା ନୁହେଁ, ଏହା ସାଧନା। ଏହି ସାଧନା ଜାତୀୟ ସଂଗ୍ରାମରେ ଚାଲିଛି ଅହିଂସାକୁ ଆଶ୍ରୟ କରି।

ଭାରତ ବିଶ୍ୱକୁ ଏହିଠାରେ ମହାଦାନ କରିବ—ଭାରତବାସୀ ଏହିଠାରେ ଜଗତବାସୀ ନିକଟରେ ମୁଣ୍ଡ ତଳକୁ କରିବ ନାହିଁ—ଏହିଠାରେ ପୃଥିବୀର ଲୋକେ ଭାରତଠାରେ ନତମସ୍ତକ ହେବେ।

କିନ୍ତୁ ଏହି ସାଧନା ପାଇଁ ଆମ୍ଭମାନଙ୍କୁ ଅଗ୍ରସର ହେବାକୁ ହେବ। ବ୍ୟକ୍ତିଗତ ଭାବରେ ପ୍ରତ୍ୟେକେ ଏହାର ମହତ୍ତ୍ୱ ବୁଝି ପାରିଲେ ମଧ୍ୟ ସାଧନା ଅଭାବରୁ ସହଜରେ ଏହାର କାର୍ଯ୍ୟ ହୋଇପାରୁ ନାହିଁ।

ଭାରତ ଆଜି ସ୍ୱାଧୀନତା ଚାହେଁ। କିନ୍ତୁ ଏ ଭାରତ କିଏ? କେବଳ ମୁଷ୍ଟିମେୟ କେତେକ ଲୋକ ହିଁନା। ସମଗ୍ର ଭାରତବାସୀ ଯଦି ଏହି ସ୍ୱାଧୀନତା ଚାହିଁବେ, ଏହି ମୁକ୍ତି ଇଚ୍ଛା କରିବେ, ତାକୁ ରୋକିବ କିଏ? ସେ ଶକ୍ତି ଅଛି କାହାର? ସେ ତ ଈଶ୍ୱରଙ୍କ ସଙ୍ଗକୁ ଆଉଜି ରହିବ—ସେ ସେତେବେଳେ ମହାଶକ୍ତି ପ୍ରଭାବକୁ ଆସିବ—ସେ ସେତେବେଳେ ଅଗ୍ନି ହୋଇ ଉଠିବ—ଊର୍ଦ୍ଧ୍ୱଗାମୀ ହେବ—କଦାପି ନିମ୍ନଗାମୀ ହେବ ନାହିଁ—ହୋଇ ପାରିବ ନାହିଁ—ଅଗ୍ନିର ସ୍ୱଭାବ ସେହିପରି, ସେ ତୀକ୍ଷ୍ଣ, ତୀବ୍ର, ଉଜ୍ଜ୍ୱଳ, ମହିମାମୟ ହୋଇ ଉଠିବ।

ଏଥିପାଇଁ ଅଭ୍ୟାସ ଦରକାର। ଅଭ୍ୟାସ ବ୍ୟତିରେକେ ଏହି ଐକ୍ୟ ସାମ୍ୟ, ମୈତ୍ରୀ ସମ୍ଭବ ନୁହେଁ। ଏହି ଅଭ୍ୟାସ ମୌନଦ୍ୱାରା ସମ୍ଭବପର ହୁଏ। ପ୍ରତିଦିନ ଥରେ ଗୋଟିଏ ଘରେ ନୀରବ, ନିଶ୍ଚଳ, ନିସ୍ତବ୍ଧ, ନିସ୍ତରଙ୍ଗ ହୋଇ ବସି ରହ ଏବଂ ଆପଣାର ସନ୍ଧାନ କର, ଆପଣାକୁ ଉନ୍ନୀତ କରିବାର ଅଭ୍ୟାସ କର। ଦେଖିବ ତୁମେ ଉପରକୁ ଉଠିଛ। ସେ ଉପରକୁ ଉଠିବା ହାଲୁକା ଜଣାଯିବ, ସହଜ ଜଣାଯିବ, କଠିନ ହେବନାହିଁ।

କିନ୍ତୁ ଯେଉଁ ମୁହୂର୍ତ୍ତରେ ଜଗତର ଅହମିକା, ଅହଂକାର, ଅମଙ୍ଗଳ, ଅଭିମାନ ସହିତ ତୁମେ ମିଳିତ ହେବ ସେହି ମୁହୂର୍ତ୍ତରେ ପୁଣି ସେହି ଉପରକୁ ଉଠିବା କଠିନ ହେବ । ତୁମେ ଭାରାକ୍ରାନ୍ତ ହୋଇ ତଳକୁ ଖସି ପଡ଼ିବ । ତଳକୁ ଖସି ନରକରେ ପାଣ୍ଡି ହେବ । ସମ୍ପତ୍ତି ବୋଲି ଯାହାକୁ ଭାବି ପାଇବା ପାଇଁ ପାଣ୍ଡି ହେଉଛ ସେ ତୁମକୁ ଏପରି ଜଡ଼ ଏବଂ ଭାରାକ୍ରାନ୍ତ କରିଦେବ ଯେ ତୁମେ ସ୍ୱର୍ଗକୁ ଉଠିବାର—ସ୍ୱାଧୀନ ହେବାର—ସ୍ୱଚ୍ଛ ସୁନ୍ଦର ହେବାର ଶକ୍ତି ହରାଇ ବସିବ । କିନ୍ତୁ ଉଠି ପାରୁଥିଲେ ସ୍ୱର୍ଗର ଶେଷ ସୀମାକୁ ସ୍ପର୍ଶ କରିବ; ପାରି ହୋଇଥିବ—ଅନନ୍ତ ସ୍ୱର୍ଗ ରାଜ୍ୟରେ ବିଚରଣ କରିବ—ସ୍ୱାଧୀନ ମୁକ୍ତ ପୁରୁଷ ହୋଇ ସମସ୍ତଙ୍କର ମଙ୍ଗଳ କାମନା କରି ସମସ୍ତଙ୍କୁ ନରକରୁ ଉଦ୍ଧାର କରିବା ପାଇଁ ହାତ ବଢ଼ାଇବ—

Dwell in thought
upon the grandest
And the grandest you shall see,
Fix your mind upon the Highest
And the highest you shall bee.

ବଞ୍ଚିବାର ଇଚ୍ଛା ଏବଂ ମରିବାର ଭୟ ମଧ ଲୋକକୁ ସ୍ୱାର୍ଥପର କରି ପକାଏ । ବଞ୍ଚିବା ବା ମରିବା କଥା ମଧ ଲୋକ ଭାବିବ ନାହିଁ । ତାହା ଏକପ୍ରକାର ବଡ଼ ସ୍ୱାର୍ଥପରତା । ଲାଗିଥାଅ କର୍ମରେ—ଆପଣାର କାର୍ଯ୍ୟ କରି ଲାଗିଥାଅ । ଆସୁ ମୃତ୍ୟୁ, ଭୟ ନାହିଁ । ଆସୁ ଜୀବନ—ପୂର୍ଣ୍ଣରୁ ପୂର୍ଣ୍ଣତର ଜୀବନ—ବେଶ୍ କଥା ।

କିନ୍ତୁ ଜୀବନ ପ୍ରତି ମାୟା ଥିଲେ, ମରଣ ପ୍ରତି ଭୟ ଆସିବ । ଅତଏବ ଏହି ମାୟାକୁ ଏଡ଼ିବାକୁ ହେବ । ବାଇବେଲର ଏହି କଥାଟି ବଡ଼ ମୂଲ୍ୟବାନ । "He that seeketh his life shall lose it and he that loseth his life shall find it."

ଅପରର ସେବାରେ ଆପଣାକୁ ଏପରି ପୂର୍ଣ୍ଣ ଭାବରେ ଲଗାଇ ଦିଅ ଯେପରି କି ଅଉ ତୁଚ୍ଛ ଆତ୍ମଚିନ୍ତା ଆସିବ ନାହିଁ । ତଦ୍ଦ୍ୱାରା ନିଜେ ପ୍ରଶସ୍ତ ହେବ ଏବଂ ଜାତିର ସମୂହମଙ୍ଗଳ ସାଧି ପାରିବ ।

ଆପଣାକୁ ଯେ ପୂର୍ଣ୍ଣଭାବରେ ଦେଇପାରେ ସେ ଅନ୍ୟ ହୋଇଯାଏ । ବୁଦ୍ଧ ସତ୍ୟ ଅନୁସନ୍ଧାନରେ ଆପଣାକୁ ପୂର୍ଣ୍ଣଭାବରେ ଦେଇ ଦେଲେ । ଶେଷରେ ସେ ସତ୍ୟ ହୋଇଗଲେ ।

ଯୀଶୁ ଆପଣାକୁ ଭଗବାନଙ୍କ ନିକଟରେ ସମ୍ପୂର୍ଣ୍ଣଭାବରେ ଦାନ କରିଦେଲେ । ସୁତରାଂ ସେ ଓ ଭଗବାନ ଏକ ହୋଇଗଲେ । ଆମେ ଆପଣାକୁ ବାସ୍ତବିକ ଦେଶପାଇଁ,

ସତ୍ୟପାଇଁ ବା ଯେ କୌଣସି ଗୋଟିଏ କାର୍ଯ୍ୟପାଇଁ ସମ୍ପୂର୍ଣ୍ଣଭାବରେ ଦାନ କରୁଅଛନ୍ତି କି ? ପ୍ରହରାଜ ଆପଣାକୁ ଭାଷାକୋଷ ପାଇଁ ସମ୍ପୂର୍ଣ୍ଣ ଦାନ କରିଦେଲେ । ଶେଷରେ ସେ ଭାଷାକୋଷ ହିଁ ହୋଇଗଲେ ।

ଆମର ସାଧନା ନାହିଁ, ସିଦ୍ଧି ଆସିବ କୁଆଡ଼ୁ ? କଥାରେ ଅଛି, "ମନରେ ନାହିଁ କି ମାଳାରେ ନାହିଁ, ଭଜି ଭଜି କରି ପାଇବୁ କାହିଁ ?" ଏ କଥାଟା ବଡ଼ ସତ୍ୟ । ଛାତ୍ର ଅନ୍ୟମନସ୍କ ହେଉଥିଲା ଏବଂ ଗୁରୁ ତାକୁ ତାର ପ୍ରିୟ ବସ୍ତୁର କଥା ନିବିଡ଼ଭାବରେ ଭାବିବା ପାଇଁ କହିଲେ । ଶେଷରେ ଛାତ୍ରଟି ଆପଣାର ପ୍ରିୟ ମହିଷଟିକୁ ଭାବି ଭାବି ଏପରି ବିଭୋର ହୋଇଗଲା ଯେ ଗୁରୁ ତାକୁ ମଠ ଭିତରକୁ ଆସିବାକୁ କହିଲାବେଳେ ସେ ନ ଆସି କହିଲା "ଘର ଭିତରକୁ ଯାଇ ପାରୁନାହିଁ, ଶିଙ୍ଗ ବାଜୁଛି ।" ବାସ୍ତବିକ ସେ ଧ୍ୟାନରେ ଏକାବେଳକେ ମହିଷ ହୋଇଗଲା । ଆମର ସେହିପରି, ନିବିଡ଼ ଚିନ୍ତା ଧ୍ୟାନ ହେଲେ ଆମେ ସିଦ୍ଧିର ଅଧିକାରୀ ହୋଇପାରନ୍ତୁ । ଏହି ଯେ ଧ୍ୟାନ ଏହା କିପରି ?

It is a process of searching and uncompromising thought which allows nothing to remain but the simple and naked truth.

ତ୍ରିକାଳ ସନ୍ଧ୍ୟାରେ ବସିଯାଅ—ବସିଯାଇ ସେହି ଏକକୁ ଧ୍ୟାନ କର, ସତ୍ୟକୁ ନିମିଷକ ପାଇଁ ତୀବ୍ରଭାବରେ ଅନୁଭବ କର, ସ୍ପର୍ଶକର—ଦେଖିବ ତୁମେ ସୁନା ହୋଇଯିବ, ହୀରା ହୋଇଯିବ, ମୋତି ମାଣିକ୍ୟ ହୋଇଯିବ, ଅନନ୍ତ ଐଶ୍ୱର୍ଯ୍ୟର ଅଧିକାରୀ ହେବ—ହୁଏତ ତୁମେ ନିଜେ ଐଶ୍ୱର୍ଯ୍ୟ ହୋଇ ଉଠିବ, ଏହା ସତ୍ୟ, ପନ୍ଥା—ଏହି ଘନିଷ୍ଠ ନିବିଡ଼ ଧ୍ୟାନ ପଥ । ଏହା ହିଁ ଯୋଗ—ଯୋଗ ବିଚ୍ୟୁତି ଯୋଗୁଁ ଆମେ ସଢ଼ୁଛୁ—ଆମର ଉନ୍ନତି ନାହିଁ, ଆମର ମୂଲ୍ୟ ନାହିଁ, ଆମର ଖାଣ୍ଟି ସତ୍ୟ ଭାବନା ନାହିଁ, ଆମେ ବାସ୍ତବିକ ବୃଥାମାୟା ଭ୍ରମରେ ପଡ଼ି ସଢ଼ୁଛୁ । ଆମର ଖଣ୍ଡ ଜୀବନ ଲୟପ୍ରାପ୍ତ ହୁଏ କିନ୍ତୁ ଏହା ଅଖଣ୍ଡରେ ମିଳିଯାଏ । ଅଖଣ୍ଡ ଜୀବନ ସହିତ ଯେ ଆପଣାକୁ ଆନନ୍ଦରେ ମିଳାଇ ଦେଇ ପାରିଛି ସେହି ଅସଲ 'ରାୟ ବାହାଦୁର' । ସେହି ରାୟ ବାହାଦୁର ହେବା ପାଇଁ ଆମର ସମସ୍ତଙ୍କର ଚେଷ୍ଟା କରିବା ଦରକାର । ଏହି ଅଖଣ୍ଡ ଜୀବନକୁ ଗଢ଼ କରିବା ପାଇଁ ଆମେ ନ ଚାହିଁଲେ ମଧ୍ୟ ପ୍ରକୃତି ଆମକୁ ବାଧ୍ୟ କରାଏ । ଆମର ସବୁ ଉପାଧି ଆସ୍ତେ ଆସ୍ତେ ଖସାଇ ଦିଏ । ବାଳ ଖସାଏ, ଆଖି ଖସାଏ, କାନ ଖସାଏ, ଜରା ଆସି ମାଡ଼ି ବସେ । ଅଥର୍ବ ହୋଇ ବସି ଯାଉଁ ଆମେ । ଶେଷରେ ମହାକାଳର ଅନନ୍ତ ଅନ୍ଧକାର ମଧ୍ୟକୁ ଆମକୁ ପ୍ରକୃତି ନେଇଯାଏ । ଆମେ ଆଉ ଜ୍ୟୋତି ଦେଖି ନ ପାରି ବ୍ୟସ୍ତ ହେଉଁ । କିନ୍ତୁ ଜ୍ୟୋତି ଯେ ଆମ ଭିତରେ ଅଛି ତାହାର ସନ୍ଧାନ ନକଲେ

ସେ ଜ୍ୟୋତି ମିଳିବ ବା କିପରି ? ସେହି ଜ୍ୟୋତି ସାହାଯ୍ୟରେ ଥାଇ ସପ୍ତଭୁବନ ବା ଚତୁର୍ଦ୍ଦଶ ଭୁବନ ବା ସମଗ୍ର ବିଶ୍ୱ ବା କୋଟି ବ୍ରହ୍ମାଣ୍ଡ ଭିତରେ ସବୁ ଜାଗା ଆଲୋକିତ କରିପାରୁଁ । ଆମେ ଯେ ସତ୍ୟ, ଆମ ଜୀବନ ଯେ ସତ୍ୟ, ଆମେ ଯେ ଆଲୋକ । କେବଳ ମୂର୍ଖ ନିକଟରେ, ଅନ୍ଧ ନିକଟରେ, ମୂଢ଼ ନିକଟରେ, ଅବିଶ୍ୱାସୀ ନିକଟରେ, ଅପ୍ରତ୍ୟକ୍ଷବାଦୀର ନିକଟରେ ଏହା ଶୂନ୍ୟ ଅନ୍ଧକାର, ମିଥ୍ୟା ରୂପରେ ପରିଚିତ ହୁଏ ।

× × ×

ସତ୍ୟରେ ବିରୋଧ ନାହିଁ, ଅସତ୍ୟରେ ବିରୋଧ ଅଛି । ଅତଏବ ଧର୍ମ ଧର୍ମ ଭିତରେ ଯେଉଁଠି ବିରୋଧ ଅଛି ତାକୁ ସତ୍ୟ ଜ୍ଞାନ-ଲୋକ ଦ୍ୱାରା ନିଷ୍କାସନ କର ।

ଉତ୍କଳର cultural ବା କୃଷ୍ଟି ମୂଲ୍ୟ ଢେର ବେଶି । ଏହିଠାରେ ମହାଯାନ, ଏହିଠାରେ ହୀନଯାନ, ଏହିଠାରେ ତନ୍ତ୍ର, ଏହିଠାରେ ଜଗନ୍ନାଥଙ୍କ ଦେହରେ ଦଶ ଅବତାର, ଏହିଠାରେ କାଳକ୍ରମେ ଅନ୍ୟାନ୍ୟ କୃଷ୍ଟିର ମିଳନ, ଜାତିଭେଦ ଶୂନ୍ୟତା, ଅହିଂସାର ଚରମ ଆଦର୍ଶ ପାଇଁ ଜଗନ୍ନାଥଙ୍କ ହସ୍ତପାଦହୀନତା, ଏହିଠାରେ କଳିଙ୍ଗ ବିଜୟରେ ଅଶୋକଙ୍କର ଚଣ୍ଡତ୍ୱର ଶେଷ, ଏହିଠାରେ ଚୈତନ୍ୟ, ନାନକ, ଶଙ୍କର—ସମସ୍ତଙ୍କର ଲୀଳା, ଏହିଠାରେ ମହୋଦଧି, ଏହିଠାରେ ପ୍ରାଚୀ, ଏହିଠାରେ ମାନବର ପ୍ରଥମ ଅଭ୍ୟୁଦୟ, ଏହିଠାରେ ମାନବର ନିଷ୍କ୍ରିୟତା, ସ୍ୱାର୍ଥହୀନତା, ଏହିଠାରେ ଦର୍ଶନର ଉଚ୍ଚ ଅଭିନୟ, ଏହିଠାରେ ବୈତରଣୀ । ଅସଂଖ୍ୟ ଥର ଆସିଛନ୍ତି ଓଡ଼ିଶାକୁ ଧ୍ୱଂସ କରିବାପାଇଁ; କିନ୍ତୁ ମହୋଦଧିର ଉଚ୍ଛ୍ୱାସରେ କେତେ ଗିରିଶୃଙ୍ଗ ଭାଙ୍ଗି ପଡ଼ୁଛି ଏବଂ ତାର ପଦପ୍ରାନ୍ତର ସୈକତରାଶି ହୋଇ ପଡ଼ୁଛି ।

ଅତଏବ, ମୋର ଓଡ଼ିଶାର ଭାଇ ଓ ଭଉଣୀମାନେ ! ଓଡ଼ିଶା ଆଜି ଜଗତର ମାପକାଠିରେ ତଳକୁ ପଡ଼ି ରହିଥିଲେ ମଧ୍ୟ ଓଡ଼ିଶାର ମାପକାଠିରେ ଜଗତର ଅନ୍ୟାନ୍ୟ ଅଞ୍ଚଳ ତଳେ ପଡ଼ି ରହିଅଛି । ଏହା ଯେ ଜାଣିଛି ସେ ବୁଦ୍ଧିପାରିବ । ମୁଁ ହତାଶ ହୁଏ ନାହିଁ—ଓଡ଼ିଆ କଂଗ୍ରେସର ପ୍ରେସିଡେଣ୍ଟ ହୋଇ ପାରିଲି ନାହିଁ ବୋଲି—କିମ୍ବା ନିଖିଳ କଂଗ୍ରେସରେ ବା ବକ୍ତୃତା ସଭାରେ ଆପଣାର ଆସନ ଜମେଇ ପାରିଲି ନାହିଁ ବୋଲି । ଓଡ଼ିଶାର ବହୁ ଯୁଗ-ଯୁଗାନ୍ତର କୃଷ୍ଟି, ସୌମ୍ୟତା, ସମତା ନିକଟରେ ଏ ସବୁ ଆସ୍ଫାଳନ, ସ୍ତୋକ, ମହୋଦଧିର ଅନ୍ତରଙ୍ଗ ନିସ୍ତରଙ୍ଗ—ତାଠାରେ ମହୋଦଧିର ଉଚ୍ଛ୍ୱାସ ଯେପରି ଅତି ତୁଚ୍ଛ ଓ ସାମାନ୍ୟ, ଏ ସେହିପରି । କିନ୍ତୁ ଏଥିରେ ତୁମେ ଓଡ଼ିଆ ଭାଇ ବାଟ ଭୁଲ ନାହିଁ, ଆଧ୍ୟାତ୍ମିକତାର ରାଜ୍ୟରେ ଅଭିମାନ, ଅହଂକାର, ଆସ୍ଫାଳନର ସ୍ଥାନ ନାହିଁ । ଓଡ଼ିଆ ଆଜନ୍ମସିଦ୍ଧ ଆଧ୍ୟାତ୍ମିକ, ତାର ଅସଂଖ୍ୟ ନରନାରୀ—ଯାହାକୁ ଅଶିକ୍ଷିତ

କୁହାଯାଉଛି ସେମାନେ ତଥାକଥିତ ନେତାମାନଙ୍କଠାରୁ ତେର ଉଚ୍ଚରେ । ଏକଥା ବୁଝିବାକୁ ହେବ—ଭୁଲିବାକୁ ହେବ ନାହିଁ ।

ଶବରୀ, ମୀରା, ଦାର୍ଢ୍ୟତା ଭକ୍ତର ଅସଂଖ୍ୟ ଧାର । ଏହିମାନେ ହିଁ ପ୍ରକୃତ ମନୁଷ୍ୟ । ଏହିମାନେ ହିଁ ଦେଶର, ଜାତିର ପ୍ରକୃତ ସମ୍ମାନ ଓ ସୌନ୍ଦର୍ଯ୍ୟ ରକ୍ଷା କରିଛନ୍ତି । ଏହି ଦିଗରେ ମତ ବଳାଅ, ଆଉ ହିଂସା ଦ୍ୱେଷରେ ମାତି ଯେଉଁମାନେ ଚାଲିଛନ୍ତି ସେମାନଙ୍କୁ ଅଶୋକଙ୍କ ଭଳି ଧିନେ କହିବାକୁ ପଡ଼ିବ—

କଳିଙ୍ଗେର ଘରେ ଘରେ କରିବେ ପ୍ରଚାର
ସମ୍ରାଟ ଅଶୋକ ଗୃହେଁ କ୍ଷମା ସବାକାର—"
( ଶ୍ରୀ ହରନାଥ ବସୁ ପ୍ରଣୀତ "ଭାରତେର ଭାବଧାରା"—ପୃ: ୭୪ )

ଭାରତର ମୈତ୍ରେୟୀ ପରି ବିଦ୍ୟା ଆହରଣରେ, ଗାର୍ଗୀପରି ପରମାର୍ଥଜ୍ଞାନ-ଜିଜ୍ଞାସାରେ, ସାବିତ୍ରୀ ପରି ମୃତ ସଂଜୀବନୀ ଶକ୍ତିରେ, ଦ୍ରୌପଦୀ ପରି ଗୃହାଗତ ଜନର ସେବାରେ, କୌଶଲ୍ୟା ପରି ବଧୂ ପାଳନରେ, ସୀତାପରି ପତି ଦୋଷ ସହିଷ୍ଣୁତାରେ, ଶୈବ୍ୟାପରି ସତ୍ୟ ରକ୍ଷାପାଇଁ ଆତ୍ମ ଦାନରେ, ଭିକ୍ଷୁଣୀ ସୁପ୍ରିୟା ପରି ସର୍ବଦା ଆର୍ତ୍ତତ୍ରାଣରେ ମାତି ଆମର ଯେଉଁ ଆଦର୍ଶ ରଖାଯାଇପାରିଛି ତାର ତୁଳନା ନାହିଁ; ଅଥଚ ଆଜି ଏ ଦିଗକୁ ଆମର ଲକ୍ଷ୍ୟ ନାହିଁ ।

ମନୁଷ୍ୟର ଚରମ ଲକ୍ଷ୍ୟ ବିଧାତା ଅନୁସନ୍ଧାନ । କସ୍ମୈ ଦେବାୟ ହବିଷା ବିଧେମ ? କେଉଁ ଦେବତାକୁ ହବି ପ୍ରଦାନ କରିବ ଏହା ନିଶ୍ଚୟ କରିବା । ଆସନ୍ତୁ ଆମ୍ଭେମାନେ ସେହି ଶାଶ୍ୱତକୁ ଆଜି ପାଇବା ପାଇଁ ବାରମ୍ବାର ପ୍ରାର୍ଥନା କରିବା—

"ଅସତୋ ମାଂ ସଦ୍‌ଗମୟ,
ତମସୋ ମାଂ ଜ୍ୟୋତିର୍ଗମୟ,
ମୃତ୍ୟୋର୍ମାମମୃତଂଗମୟ ।"

[ ଭକ୍ତି-ପ୍ରଦୀପ ୧୬ଶ ଭାଗ ୩ୟ ସଂଖ୍ୟା ]

# ସଂସ୍କୃତିର ସଙ୍କେତ

ଡକ୍ଟର ସଦାଶିବ ମିଶ୍ର

## ( ୧ )

ଜଣେ ବାଟୋଇ । ଦୂରଦେଶରୁ ଆସିଛନ୍ତି । ଚାଲି ଚାଲି ଦେଶଭ୍ରମଣ କରୁଛନ୍ତି । ରାତିରେ ପଲ୍ଲୀଗ୍ରାମରେ ଭାଗବତ ଘରେ କିମ୍ବା ଦେବମନ୍ଦିରରେ ବିଶ୍ରାମ କରନ୍ତି । ଯେଉଁଠାରେ ଯାହା ଆତିଥ୍ୟ ମିଳିଲା, ଗ୍ରହଣ କରନ୍ତି । ପରଦିନ ପୁଣି ପଦବ୍ରଜରେ ବାହାରି ପଡ଼ନ୍ତି । ଗୋଟିଏ ଦିନର କଥା । ସକାଳୁ ନିତ୍ୟକର୍ମ ସାରି ବାହାରିଛନ୍ତି । ବହୁତ ଦୂର ଚାଲିଲେଣି । କୌଣସିଠାରେ ଜନବସତି ଥିଲା ପରି ଜଣା ପଡ଼ୁନାହିଁ । ଖରାଦିନ । ଅନେକ ଦୂର ଚାଲି କ୍ଳାନ୍ତ ହୋଇ ପଡ଼ିଲେଣି । ବିଶ୍ରାମ ପାଇଁ କୌଣସି ସ୍ଥାନ ଦେଖା ଯାଉନାହିଁ । ଯାଉ ଯାଉ ରାସ୍ତା ଭୁଲିଗଲେ । ଅରଣ୍ୟ ଭିତରେ ଯାଇ ପଶିଗଲେ । ଜନପ୍ରାଣୀଙ୍କର ସ୍ୱରଶବ୍ଦ ନାହିଁ । ଗୋଡ଼ ଥକି ଗଲାଣି । ତଣ୍ଟି ଶୁଖି ଗଲାଣି । ମନରେ ଭୟ ଆସିଲାଣି ।

ଦେଖିଲେ ଅତି ଅଳ୍ପ ଦୂରରେ ଗୋଟିଏ ଝଙ୍କାଳିଆ ଗଛ । ପାଖରେ ଗୋଟିଏ ସୁନ୍ଦର ଝରଣା । କାଚ କେନ୍ଦୁ ପରି ପାଣି—କଳ କଳ ବହିଯାଉଛି । ଯାହାହେଉ ପ୍ରାଣ ରହିବ । ଏକମୁହାଁ ହୋଇ ସେଇ ଆଡ଼କୁ ଦଉଡ଼ିଲେ । ଗଛପାଖରେ ପହଞ୍ଚିଛନ୍ତି କି ନାହିଁ ଶବ୍ଦ ଶୁଭିଲା—ଧର, ବାନ୍ଧ, ମାର ମାର । ଥକ୍କା ହୋଇ ଠିଆହୋଇଗଲେ । ଚାରିଆଡ଼କୁ ଚାହିଁଲେ, ପୁଣି ସେଇ କଥା—ଧର, ବାନ୍ଧ, ମାର । ଆଉ ପାଣି ପିଇବାକୁ ଯିବେ କଣ ? ଗଛ ଛାଇରେ ବିଶ୍ରାମ ନେବେ କଣ ? ଗୋଡ଼ ଥରିଲା । ପୁଣି ସେଇ ଶବ୍ଦ—ଧର, ବାନ୍ଧ, ମାର । ପ୍ରାଣକୁ ତ ଡର ଅଛି ! ବିକଳରେ ଦଉଡ଼ିଲେ ଆଗକୁ ।

କିଛିଦୂର ଦଉଡ଼ିଲେ । ଆଉ ଗୋଡ଼ ଉଠୁନାହିଁ । ଦେଖିଲେ ଆଉ ଗୋଟିଏ ଝଙ୍କାଳିଆ ଗଛ । ସେଇ ଗଛମୂଳରେ ଲଥ୍ କରି ପଡ଼ିଗଲେ । କିଏ ଜଣେ କହିଲା— ଆରେ ପାଣି ଆଣ, ପାନ ଆଣ । ମଧୁର କଣ୍ଠସ୍ୱର । କାହିଁ କେଉଁଠାରେ ତ ପାଣି ନାହିଁ । ଜନପ୍ରାଣୀ ତ କେହି ଦେଖାଯାଉ ନାହାନ୍ତି । ପୁଣି ସେଇ ମଧୁର କଣ୍ଠସ୍ୱର, ପାଣି ଆଣ, ପାନ ଆଣ । ଏତିକିରେ ଶୋଷ ମରିଗଲାଣି । ମନ ତୃପ୍ତ ହୋଇ ଆସିଲାଣି । ପୁଣି ସେଇ ସ୍ୱର—ସବୁ ଆଡ଼େ ଚାହିଁଲେ । ପତ୍ରଗହଳରେ ବସିଛି ଗୋଟିଏ ସୁନ୍ଦର ଶୁକପକ୍ଷୀ । ସବୁଜପତ୍ର ଭିତରେ ତାର ରଙ୍ଗ ମିଶିଯାଉଛି । ପୀତ ଟହ୍ ଟହ୍ ଥଣ୍ଟ ମଧ୍ୟରୁ ବାହାରୁଛି—ପାଣି ଆଣ, ପାନ ଆଣ । କି ବିଚିତ୍ର ! କି ମଧୁର ! !

ଏ ଗୋଟିଏ ପୋଷା ଶୁକ ପକ୍ଷୀ । ପିଞ୍ଜରା ଛାଡ଼ି ଚାଲି ଆସିଛି । ଥିଲା ଏକ ସଜ୍ଜନ ପରିବାରରେ । ଗୃହସ୍ୱାମୀ ଥିଲେ ଅତିଥିପରାୟଣ । ଆଦର ଅଭ୍ୟର୍ଥନା ଥିଲା ତାଙ୍କର ବ୍ରତ । ସେହି ଭାଷାରେ ତାଙ୍କର ଗୃହ ମଧୁମୟ ହେଉଥିଲା । ଶୁକପକ୍ଷୀଟି ସେହି ଭାଷା ଶୁଣୁଥିଲା । ସେଇ 'ବୋଲି' ଅଭ୍ୟାସ କରିଥିଲା । ଗହନ ଅରଣ୍ୟରେ ମଧ୍ୟ ସେହି ଭାଷା ତାର ଅକ୍ଷୁଣ୍ଣ ରହିଛି ।

ବାଟୋଇ ମୁଗ୍ଧ ହେଲେ । କୌତୂହଳ ବଢ଼ିଲା । ଫେରିଲେ ପୂର୍ବସ୍ଥାନକୁ । ପୁଣି ସେହି କର୍କଶ ସ୍ୱର—ମାର, ଧର, ବାନ୍ଧ । ଗଛ ଭିତରକୁ ଲକ୍ଷ୍ୟ କଲେ । ଦେଖିଲେ ବସିଛି ଠିକ୍ ସେହିପରି ଗୋଟିଏ ସୁନ୍ଦର ଶୁକପକ୍ଷୀ । ରଙ୍ଗ ତାର ସବୁଜ ଚଞ୍ଚୁ ତାର ପୀତବର୍ଣ୍ଣ । ଅପୂର୍ବ ରୂପ, ମାତ୍ର କଣ୍ଠସ୍ୱରରେ ଅଛି ବିଷ ।

ଏଇଟି ମଧ୍ୟ ଗୋଟିଏ ପୋଷା ଶୁକପକ୍ଷୀ । ପିଞ୍ଜରା ଛାଡ଼ି ଚାଲି ଆସିଛି । ଏ ଥିଲା ଏକ ଦସ୍ୟୁ ପରିବାରରେ । ସେଠାରେ ଶୁଣୁଥିଲା ଦସ୍ୟୁର ଭାଷା—ମାର, ଧର, ବାନ୍ଧ । ଏହି ବିକଟ ଧ୍ୱନିରୁ ସେ ଆହରଣ କରିଛି, ତାର 'ବୋଲି' । ଦସ୍ୟୁ ପରିବାରର ରୁଦ୍ଧ ପିଞ୍ଜରା ଛାଡ଼ିଛି ! ମନୋରମ ବୃକ୍ଷରାଜି ମଧ୍ୟରେ ମୁକ୍ତ ଜୀବନ ଲାଭ କରିଛି । ରୂପ-ବିଭବରେ ଦର୍ଶକର ମନ ହରଣ କରୁଛି; ମାତ୍ର କଣ୍ଠରେ ଅର୍ଜିଛି ହଳାହଳ ।

ବାଟୋଇ ତଟସ୍ଥ ହେଲେ । ଦୀର୍ଘଶ୍ୱାସ ଛାଡ଼ିଲେ ।

( ୬ )

ସେ ଜଣେ ପର୍ଯ୍ୟଟକ । ବାହାରିଛନ୍ତି ପୃଥିବୀ ପରିକ୍ରମା କରିବା ଲାଗି । ବ୍ୟୋମଯାନରେ ଆସି ଏ ଦେଶରେ ଅବତରଣ କଲେ । ଏ ଏକ ବିରାଟ ଦେଶ । ଗୋଟିଏ ନଗରୀରୁ ଅନ୍ୟ ଏକ ନଗରୀ ଶହ ଶହ ମାଇଲ ଦୂର । ଇଣ୍ଡିଆନ୍ ଏଆରଲାଇନ୍ସର ବିମାନରେ ଯାତ୍ରା ଆରମ୍ଭ କଲେ । ବିମାନ ଉପରକୁ ଉଠିଲା । ଉଠିବା ପୂର୍ବରୁ ଯାତ୍ରୀମାନଙ୍କୁ ସତର୍କ କରି ଦିଆଯାଇ ଥିଲା । କିଛି ସମୟ ପରେ ବିମାନଟି ସ୍ୱଚ୍ଛନ୍ଦରେ ଆକାଶରେ ଭାସି ଚାଲିଲା । ଅନ୍ତରାଳରୁ ଘୋଷଣା ଶୁଭିଲା—ଆପଣମାନେ ବେଲ୍ଟ ଖୋଲି ପାରନ୍ତି, ସିଗାରେଟ୍ ଲଗାଇ ପାରନ୍ତି । ଲେକିନ୍ ପାଇପ୍ ଔର ସିଗାର ପୀନା ମନା ହୈ । ସ୍ମୋକିଙ୍ଗ୍ ଅଫ୍ ପାଇପ୍ ଆଣ୍ଡ ସିଗାର ଇଜ୍ ପ୍ରୋହିବିଟେଡ୍ । ପର୍ଯ୍ୟଟକ ଚମକି ପଡ଼ିଲେ । ଶୁଣିଥିଲେ ପୂର୍ବେ ଅନ୍ୟ ପ୍ରକାର ଭାଷା—ଅନୁଗ୍ରହକରି ପାଇପ୍ ବା ସିଗାର ଲଗାନ୍ତୁ ନାହିଁ । ଏଠାରେ ସୁବେଶା ସୁଦର୍ଶନା ପରିଚାରିକାଙ୍କର କଣ୍ଠରୁ ଏ ଉକ୍ତି କାହିଁକି ?

ବିମାନ ଅବତରଣ କଲା । ପର୍ଯ୍ୟଟକ କଲିକତା ମହାନଗରୀରେ ପ୍ରବେଶ କଲେ । ସହର ମଧ୍ୟରେ ଏବଂ ସହରାଞ୍ଚଳରେ ବହୁ ରମଣୀୟ ସ୍ଥାନ, ବହୁ ଦର୍ଶନୀୟ ଅନୁଷ୍ଠାନ । ଜନାକୀର୍ଣ୍ଣ ନଗରୀ । ଯାନବାହନ ଲୋକସମୃଦ୍ଧ ପରି ଅପର୍ଯ୍ୟାପ୍ତ । ଟ୍ରାମ୍ ବସ୍ ଅବିରତ ଚାଲିଛି । ମାତ୍ର ତହିଁରେ ପ୍ରବେଶ ଏକାନ୍ତ ଦୁରୂହ । ବହୁ ଲୋକେ ତାହାର ଆଶ୍ରୟ ନେଉଛନ୍ତି ! ଟ୍ରାମ୍ ବା ବସ୍‌ର କୌଣସି ଅଙ୍ଗ ସ୍ପର୍ଶ ନ କରି ମଧ୍ୟ ଅନାୟାସରେ ଗତାୟତ କରିବାରେ ସମର୍ଥ । କି ଚମତ୍କାର ଶୈଳୀ ! ପର୍ଯ୍ୟଟକ ଅପଲକ ନୟନରେ ଚାହିଁ ରହିଲେ ତାଙ୍କ ପକ୍ଷରେ ଏ କୃତିତ୍ୱ ହାସଲ କରିବା ସାଧ୍ୟାତୀତ ।

ସ୍ଥାପତ୍ୟ ବିଭବରେ ଏ ଦେଶ ଭରି । ସେ ସବୁ ଦର୍ଶନ କରିବା ଲାଗି ପ୍ରବଳ ଇଚ୍ଛା । କଲିକତା ଛାଡ଼ି ଅନ୍ୟତ୍ର ଯିବାକୁ ହେବ । ରେଳ ଷ୍ଟେସନକୁ ଆସିଲେ । ହାଓଡ଼ା ପରି ବିରାଟ ଷ୍ଟେସନ । ଅବିରାମ ଜନସ୍ରୋତ ଚାଲିଛି । ଯେଣେ ଲୋକାରଣ୍ୟ । ବାସ୍ତବିକ ଏକ ନିବିଡ଼ ଅରଣ୍ୟ, ନାନାଜାତିର ଗୁଳ୍ମଲତା-ଦ୍ରୁମରେ ନିବିଡ଼ ଆକାର ଧାରଣ କଲାପରି ଏ ଲୋକାରଣ୍ୟ ରୂପ-ବର୍ଣ୍ଣ-ସ୍ୱାସ୍ଥ୍ୟ, ପୋଷାକ-ପରିଧେୟ-ପରିପାଟୀ, ଏ ସମସ୍ତର ହୋଇଛି ଏକ ବିଚିତ୍ର ସମାବେଶ । ଏ ଜନତା ଆନ୍ତର୍ଜାତିକ ନୁହେଁ—ଆନ୍ତ-ର୍ଜାତିକ । ବିଭିନ୍ନ ଶତାବ୍ଦୀର, ପ୍ରାକ୍‌ଶତାବ୍ଦୀର କୃତି ବିକୃତି, ଅଭାବ ଅଭିମାନ, ଅସ୍ଥିର ଅନାସ୍ଥିର ସମସ୍ତ ଚାଲିଛି ଗୋଟାଏ ସ୍ରୋତରେ । ଏ ସ୍ରୋତ ଛନ୍ଦହୀନ, ସ୍ପନ୍ଦହୀନ ।

କୋଳାହଳ ମଧ୍ୟରେ ଶୁଣିବାକୁ ପାଇଲେ ଡାକବାକ ଯନ୍ତ୍ରରେ ଘୋଷଣା । କିଛି ସମୟ ବିରତି; ପୁଣି ଘୋଷଣା । "ଦୁଇ ନମ୍ବର ଅପ୍ ବମ୍ବେ ମେଲ୍, ଯେଉଁ ନାଗପୁର ଦେଇ ଯାଏ, ପାଞ୍ଚଟେ ବେଳେ ବିଶ ମିନିଟେ ଦଶ ନମ୍ବର ପ୍ଲାଟଫର୍ମଥେକେ ଛାଡ଼ବେ । ଦୋ ନମ୍ବର ଅପ୍ ବମ୍ବେ ମେଲ୍, ଯୋ ନାଗପୁର ହୋକେ ଯାତା ହୈ, ପାଞ୍ଚବଜ୍‌କେ ବିଶ ମିନଟ୍ ପର ଦଶନମ୍ବର ପ୍ଲାଟ୍‌ଫର୍ମସେ ଖୁଲେଗୀ । ଟୁ ଅପ୍ ବମ୍ବେ ମେଲ୍ ଭାଇଆ ନାଗପୁର ୱିଲ୍ ଲିଭ୍ ପ୍ଲାଟଫର୍ମ ନମ୍ବର ଟେନ୍ ଏଟ୍ ସେଭେନଟୀନ୍ ଟ୍ୱେଣ୍ଟି ଆୱାର୍ସ୍ ।" ବଙ୍ଗଳା-ହିନ୍ଦୀ-ଇଂରେଜୀ ତିନି ଭାଷାରେ ଘୋଷଣା ନିଃସୃତ ହୋଇଚାଲିଛି; ମାତ୍ର ବୁଝିବା ଅତି କଷ୍ଟସାଧ୍ୟ । ତିନି ଭାଷାର ଭଙ୍ଗୀ ସମାନ; ଉଚ୍ଚାରଣରେ କୌଣସି ତାରତମ୍ୟ ନାହିଁ । ଶୁଣିଲେ, ବୁଝିବାକୁ ଚେଷ୍ଟା କଲେ; ମାତ୍ର ସମ୍ଭବ ହେଲା ନାହିଁ । ଯାତ୍ରୀମାନଙ୍କ ସୁବିଧା ଲାଗି ଖବର ସହିତ ଚେତାବନୀ ମଧ୍ୟ ପରିବେଷଣ କରାଯାଉଛି । "ଅପରିଚିତ ଲୋକ୍‌କୋ ଟିକେଟର ଜନ୍ୟ ଟାକା ଦେବେନ ନା । ଡୁ ନଟ ଗିଭ ମନି ଟୁ ଅନନୋନ୍ ପରସନ୍‌ସ୍ ଟୁ ବାଇ ଟିକେଟ ଫର ୟୁ ।" ପର୍ଯ୍ୟଟକ ପରୀକ୍ଷା ବୁଝିଲେ—ଏପରି ଘୋଷଣା କରି ସାଧାରଣ ଯାତ୍ରୀମାନଙ୍କୁ ସାବଧାନ କରାଦିଆଯାଉଛି, କିଛି କ୍ଷଣ ପରେ, "ପକେଟମାରସେ ସାବଧାନ ! ବି ୱେଆର୍ ଅଫ୍

ପିକ୍‌ପକେଟ୍‌ସ୍ ।" ଅଜାଣତରେ ହାତ ଚାଲିଗଲେ ପକେଟକୁ । ମନିବ୍ୟାଗ ନିରୁଦ୍ଦିଷ୍ଟ ହୋଇନାହିଁ । କୋଟ୍‌ର ସମସ୍ତ ବୋତାମ ଲଗାଇ ଦେଲେ ।

ଦକ୍ଷିଣ ପ୍ରାନ୍ତରେ ପ୍ରାଚୀନ ସ୍ଥାପତ୍ୟର ପୀଠମାନ ପରିଦର୍ଶନ କରି ପର୍ଯ୍ୟଟକ ମୁଗ୍ଧ ହୋଇଛନ୍ତି; ବିହ୍ୱଳ ହୋଇଛନ୍ତି । ଫେରୁଛନ୍ତି କଲିକତା । କିଛି ଦିନ ସେଠାରେ ଅବସ୍ଥାନ କରି ଉତ୍ତରଖଣ୍ଡ ପରିଦର୍ଶନରେ ବାହାରିବେ । ହାଓଡ଼ା ଷ୍ଟେସନରେ ଓହ୍ଲାଇଲେ; ପୁଣି ସେହି ଘୋଷଣା ପୂର୍ବପରି ଚାଲିଛି । "ପାନସ୍କୁରା ଲୋକାଲ୍ ନଅଟା ବେଳେ ଦଶ ମିନିଟେ ବାର୍ ନମ୍ବର ପ୍ଲାଟ୍‌ଫର୍ମ୍ ଥେକେ ଛାଡ଼୍‌ବେ ।" ବଙ୍ଗଳା ହିନ୍ଦୀ ଇଂରେଜୀ ସମସ୍ତ ଏକାପରି । ତଥାପି କିଛି ଦିନ ଏ ଦେଶରେ ଅବସ୍ଥାନ ପରେ ବୁଝିବା ସମ୍ଭବ ହେଲାଣି । ପୁଣି ଘୋଷଣା । "ଅଞ୍ଜାନେ ଆଦମୀକୋ ବିଶ୍ୱାସ ମତ କରନା !" କି ଚେତାବନୀ ! ପର୍ଯ୍ୟଟକ ସ୍ତିମିତନୟନରେ ଜନସ୍ରୋତକୁ ଚାହିଁ ରହିଲେ ।

ପର୍ଯ୍ୟଟକ ଧର୍ମୋପାସକ ନୁହନ୍ତି । ମାତ୍ର ଅଜାଣତରେ ତାଙ୍କ ମୁହଁରୁ ବାହାରି ପଡ଼ିଲା—ହେ ପ୍ରଭୁ ! ——————

[ସମାଜ ୧୯୬୭—ଗୋପବନ୍ଧୁ ସଂଖ୍ୟା]



# ମାର୍କଟ୍ୱେନ୍ ଓ ତାଙ୍କ ଜନ୍ମଭୂମି

ଡକ୍ଟର କୃଷ୍ଣଚନ୍ଦ୍ର ଦାଶ

[ଏହା ଲେଖକଙ୍କ ଆମେରିକା ଭ୍ରମଣବୃତ୍ତାନ୍ତର ଗୋଟିଏ ଅଧ୍ୟାୟ ।]

'ମିସିସିପି' ନଦୀର ଧାରେ ଧାରେ ଯାଇ 'ରିଭର ଭ୍ୟୁ' ପାର୍କରେ ପହଞ୍ଚିଲି । ଗାଢ଼ ଜଙ୍ଗଲ, ବଙ୍କାଟଙ୍କା ରାସ୍ତା, ତଳେ ହଳଦିଆ ଲାଲ ପତ୍ର ବହଳ ହୋଇ ପଡ଼ିଛି, ତା ପରେ ବସିଛି ଗ୍ରୀବାଟ୍—ଜଣେ ସମ୍ରାଟଙ୍କର ଗାମ୍ଭୀର୍ଯ୍ୟରେ । ରଙ୍ଗିନ୍ ମାପ୍‌ଲ୍ ଗଛରେ ଦୌଡ଼ାଦୌଡ଼ି କରୁଛନ୍ତି କେତୋଟି ଗୁଣ୍ଡୁଚି ମୂଷା । ପାର୍କର ପ୍ରସନ୍ନ-ଗମ୍ଭୀର-ଶ୍ରୀ ଦର୍ଶନ କରୁ କରୁ ଦୃଷ୍ଟି ମୋର ଅଟକିଗଲା ଜାକସନ୍ ଦ୍ୱୀପରେ—'ମିସିସିପି' ମଝିର ଅରଣ୍ୟ-ସଙ୍କୁଳ ଦ୍ୱୀପଟିଏ । ତୀକ୍ଷ୍ଣ ଅଗ୍ରଭାଗ ପରିଯାଇଛି ଗାଢ଼ନୀଳ ଜଳ ଭିତରକୁ, କୁହୁଡ଼ିର ନୀଳ ଆସ୍ତରଣ, ମେଘମେଦୁର ଆକାଶ, ନୀଳ କାଳିରେ ଅଙ୍କାହୋଇଛି ଆର କୂଳର 'ଇଲିନଏସ୍' ରାଜ୍ୟ ଯେପରି କି । ନଦୀଜଳକୁ ଝୁଙ୍କି ପଡ଼ିଛି ତୀର ବନସ୍ପତିର ପୁଷ୍ପିତ ପଲ୍ଲବିତ ଶାଖା । ଅଦୂରରେ ମାର୍କଟ୍ୱେନ୍ ସେତୁ; ମାର୍କଟ୍ୱେନଙ୍କ ସମାଧିସ୍ତମ୍ଭ ରହିଛି ଠିକ୍ ନଦୀକୂଳରେ । ଗଭୀର ନିର୍ଜନତା ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ସମାଧିକୁ ଦେଇଛି ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ—କବି ଲେଖକଙ୍କ ଲାଗି ଉପଯୁକ୍ତ ସ୍ଥାନ । ଜୀବନରେ ଏହି ସ୍ଥାନ ତାଙ୍କ ମନକୁ ଚିର ସ୍ୱପ୍ନମୟ କରି ରଖିଥିଲା । ମୃତ୍ୟୁ ପରେ ତାଙ୍କ ଆତ୍ମା ଦେହତ୍ୟାଗ କରିଛି ସତ; କିନ୍ତୁ ଏ ଦୃଶ୍ୟ ତ୍ୟାଗ କରିପାରି ନ ଥିବ ।

ସମାଧି ସ୍ତମ୍ଭରେ ଖୋଦିତ ହୋଇଛି—ମଣିଷ ଲାଗି ଯେ ବଞ୍ଚିଥିଲେ, ମଣିଷ ଚରିତ୍ର ଯାହାଙ୍କର ଚିର ଆରାଧ୍ୟ ଥିଲା—ଜନ୍ମ ୧୮୩୫, ମୃତ୍ୟୁ ୧୯୧୦ ।

ମାର୍କଟ୍ୱେନଙ୍କ ଯୋଗୁଁ ହାନିବାଲ ସହର ଜଗଦ୍‌ବିଖ୍ୟାତ । ଏହି ସହରର ସେତୁ, ହୋଟେଲ, ପଥ, ଗିରିକନ୍ଦର, ଯାଦୁଘର ସର୍ବତ୍ର ମାର୍କଟ୍ୱେନ୍; ଆବାଳବୃଦ୍ଧ ମୁଖେ ମୁଖେ ତାଙ୍କ ମହିମାର ବାଣୀ, ଆଖପାଖ ଗ୍ରାମାଞ୍ଚଳରେ ନାନା ଜନଶ୍ରୁତି ଓ କାହାଣୀ ।

'କାର୍ଡିଫ୍ ହିଲ'ର ମଧ୍ୟଭାଗରେ ତାଙ୍କ ପ୍ରସିଦ୍ଧ ଚରିତ୍ର 'ଟମ୍‌ସୟର' ଓ 'ହକଲ୍‌ବେରି ଫିନ'ଙ୍କର ବ୍ରୋଞ୍ଜମୂର୍ତ୍ତି; "Life on Mississipi"ର ଯେଉଁ ଦୃଶ୍ୟର ବର୍ଣ୍ଣନା କରୁ କରୁ ସେ ବିହ୍ୱଳ ହୋଇଥିଲେ ତା ମଧ୍ୟରେ ତାଙ୍କ ସମାଧି ରଖାଯାଇଛି । ସେ ସବୁଜ ବନ ଓ ନଦୀସ୍ରୋତକୁ ସ୍ଥିର ଦୃଷ୍ଟିରେ ଅନାଇ ରହିଛନ୍ତି ।

ସେତେବେଳକୁ ହାନିବାଲର ଲୋକସଂଖ୍ୟା ଥିଲା ମାତ୍ର ତିନି ହଜାର । ଏ ଅଞ୍ଚଳକୁ ଉପନିବେଶକାରୀମାନେ ଆସିଥିଲେ ବହୁ ବିଳମ୍ବରେ; ୧୮୨୧ ଖ୍ରୀଷ୍ଟାବ୍ଦରେ, ଟ୍ୱେନ୍‌ଙ୍କ ଜନ୍ମର ଅଳ୍ପ କେତେ ଦିନ ଆଗରୁ ମାତ୍ର । ତାଙ୍କ ପିଲାଦିନେ ଏଠି ଦାସବ୍ୟବସାୟ ଖୁବ୍ ଚାଲୁଥିଲା । ଦାସମାନଙ୍କ ମୁହଁରୁ ବହୁ କାହାଣୀ ଶୁଣି ସେ ନିଜ ଗଳ୍ପ ଓ ଉପନ୍ୟାସରେ ବ୍ୟବହାର କରିଥିଲେ ହକଲ ବେରି ଫିନ୍‌ର 'ଜିମ୍' ଚରିତ୍ର, ଯେକାଳ 'ଦାସ'ର ଏକ ରୂପାନ୍ତର ।

ହାନିବାଲ୍‌ରେ ଟ୍ୱେନ୍ 'ସାମ କ୍ଲେମେନ୍‌ସ' ନାମରେ ପରିଚିତ । ୧୮୩୫ ଖ୍ରୀଷ୍ଟାବ୍ଦ ନଭେମ୍ବର ୩୦ ତାରିଖରେ କ୍ଲେମେନ୍‌ସ ମିସୌରି ରାଜ୍ୟର ଫ୍ଲୋରିଡ଼ା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଓରିଅନ ଓ ହେନେରୀ ନାମରେ ଦୁଇଟି ଭାଇ ଥିଲେ ଓ ଗୋଟିଏ ଭଉଣୀ ଥିଲା । ତା ନାଆଁ 'ପାମେଲା' । ତାଙ୍କ ମାଆଙ୍କ ନାଆଁ 'ଜେମ୍ ଲାମ୍ଟନ୍ କ୍ଲେମେନ୍‌ସ' । 'ଟମ ସଏର'ରେ ତାଙ୍କ ମାଆ 'ଅଣ୍ଟି-ପୋଲି', ପାମେଲା ଓ ହେନେରୀ କଜନ୍ ମେରୀ ଓ ସିଡ଼୍ ରୂପେ ଚିତ୍ରିତ ।

୧୮୪୭ରେ ତାଙ୍କ ପିତାଙ୍କର ମୃତ୍ୟୁ ହେଲା ଓ ତାଙ୍କ ପୋଥିରେ ଡୋର ବନ୍ଧା ହେଲା । ସେତେବେଳକୁ ତାଙ୍କ ବୟସ ମାତ୍ର ଏଗାର ବର୍ଷ । ସାମ୍ ଗୋଟିଏ ଛାପାଖାନାରେ କାର୍ଯ୍ୟ କରିବାକୁ ବାଧ୍ୟ ହୋଇଥିଲେ । ତା ପରେ ସେ ତାଙ୍କ ବଡ଼ଭାଇ 'ଓରିଅନ୍' କିଣିଥିବା ଏକ ଛାପାଖାନାରେ ଯାଇ କାମ କଲେ । ଭଲ ମୁଦ୍ରାକର ହିସାବରେ ପ୍ରଶଂସିତ ହେଲେ; କିନ୍ତୁ ତାଙ୍କର ଅସଲ ପ୍ରତିଭା ଲୁଚି ରହିପାରି ନ ଥିଲା ।

ମିସେସ୍ ହୋର୍‌ଙ୍କ ପରୋଇ ଗାଆଁ ଚାଟଶାଳୀରେ ଟ୍ୱେନ୍‌ଙ୍କ ବିଦ୍ୟାରମ୍ଭ ହୋଇଥିଲା । ତା ପରେ ମି: କ୍ରସ୍‌ଙ୍କ ସ୍କୁଲକୁ ସେ ପଢ଼ିବାକୁ ଗଲେ । ଅତି ଅଳ୍ପ ବୟସରେ ଏହି ସ୍କୁଲରେ ହିଁ ତାଙ୍କ କବିତ୍ୱର ପ୍ରଥମ ସ୍ଫୁରଣ ହୋଇଥିଲା । ଅବଶ୍ୟ ସେଥିଲାଗି ପୁରସ୍କାର ମିଳିଥିଲା ବେତ୍ରାଘାତ; କାରଣ କବିତା ରଚନାର ସର୍ବପ୍ରଥମ ଛତ୍ରରେ ଫୁଟି ଉଠିଥିଲା ବ୍ୟଙ୍ଗ—ଅବଧାନ 'କ୍ରସ୍'ଙ୍କ ଚରିତ୍ରକୁ ନେଇ । କବିତ୍ୱର ଏହି ପୁରସ୍କାର ଆଦ୍ୟଜୀବନରେ ପୃଥିବୀର ବହୁ ବଡ଼ ବଡ଼ କବି ପାଇଛନ୍ତି । କବିତାଟି ହେଲା—

> "Cross by name and cross by nature,
> Cross jumped over an Irish potato."

ମି: କ୍ରସ୍‌ଙ୍କ ଆଖିରେ ଏ ପିଲାଙ୍କ୍ ଲେଖା କବିତା ଯେମିତି ପଡ଼ିଛି, ସେ କ୍ରୋଧରେ ହତଜ୍ଞାନ ହୋଇ ସାମ୍‌କୁ ନିର୍ମମଭାବେ ପ୍ରହାର କରିଥିଲେ ।

ତାପରେ ସେ ଭାଇର ଛାପାଖାନାରୁ ପ୍ରକାଶିତ ଗୋଟିଏ ପତ୍ରିକାରେ ଜଣେ ପ୍ରସିଦ୍ଧ ସମ୍ପାଦକଙ୍କ କାର୍ଟୁନ୍ ଛବି ଓ ନିଜର ଗୋଟିଏ କବିତା ପ୍ରକାଶ କରି ଦେଇଥିଲେ। ଫଳରେ ପତ୍ରିକାର କାଟ୍ତି ବଢିଥିଲା। ସେଇ ପତ୍ରିକାର କେତୋଟି କପି ଏବେ ଯାଦୁଘରେ ରଖାହୋଇଛି; କିନ୍ତୁ ଅର୍ଥାଭାବରୁ ପତ୍ରିକାଟି ବେଶୀ ଦିନ ଚାଲିଲା ନାହିଁ। ଓରିଅନ୍ ନିଜ ଘରକୁ ଛାପାଖାନା ଉଠାଇ ଆଣିଲେ। ଦିନେ ଗାଈ ପଶି ସବୁ ନଷ୍ଟ କରି ଦେବାରୁ ଛାପାଖାନା ବନ୍ଦ ହୋଇଗଲା।

ଅଠର ବର୍ଷ ବୟସରେ ଟ୍ୱେନ୍ ହାନିବାଲ୍ ଛାଡ଼ିଲେ; କିନ୍ତୁ ତାଙ୍କ ମନରେ ହାନିବାଲ୍ ପରିପୂର୍ଣ୍ଣ ହୋଇ ରହିଥିଲା। ଏହି ନଗରରୁ ବିଦାୟ ନେବା ପରେ ବାଲ୍ୟଜୀବନର ଜୀବନସ୍ମୃତିକୁ ସେ ଉପନ୍ୟାସରେ ରୂପାୟିତ କଲେ।

ତାଙ୍କ ଉପନ୍ୟାସରେ ହାନିବାଲର ନାମ 'ସେଣ୍ଟପେଟର୍ସବର୍ଗ'। ତାଙ୍କ ନାମ ସହିତ ଜଡ଼ିତ କ୍ଷୁଦ୍ର ହୋମହଲ ସୌଧଟି ତାଙ୍କ ପିତାଙ୍କ ଦ୍ୱାରା ନିର୍ମିତ। ନିକଟରେ ବହୁ ଶାଖାସ୍ରିତ ସୁଦୀର୍ଘ ଗିରିକନ୍ଦର, ବହୁ କ୍ଷୁଦ୍ର ନୀଳାଶୈଳ, ଘନାରଣ୍ୟ ଓ ବିଶାଳବକ୍ଷା ମିସିସିପି। ଶୈଶବାସ୍ମୃ ନୀଳା ମଧ୍ୟରେ ଏ ସବୁର ଦୃଶ୍ୟ ଜୀବନ୍ତ ହୋଇଉଠିଛି କଟନ୍ ଓ ଉଇଲୋ ଗଛରେ ଭରା ଜାକ୍‌ସନ୍ ଦ୍ୱୀପ। ପିଲାଙ୍କ 'ଡକାୟତି' ଖେଳିବାର ଉପଯୁକ୍ତ ସ୍ଥାନ। ତାଙ୍କ ଉପନ୍ୟାସର ଚରିତ୍ର ଟମ୍ ଓ ବେକି ଏହି ଦୀର୍ଘ ଗିରିକନ୍ଦର ଓ ଘଞ୍ଚ ଅରଣ୍ୟକୁ ପ୍ରୀତିଲୀଳାର ନିରାପଦ ସ୍ଥାନରୂପେ ବାଛି ନେଇଥିଲେ। ଏବେ ବି ସେସବୁ ସ୍ଥାନ ପାଠକଙ୍କ ପକ୍ଷରେ ରୋମାଞ୍ଚକର। ହାନିବାଲ୍ ସହର ଏବେ ବହୁ ଗୁଣରେ ବୃଦ୍ଧି ଲାଭ କରିଅଛି। କିନ୍ତୁ ଆଧୁନିକ ଜୀବନର କୋଳାହଳ ସେହି ମଧୁର ସ୍ମୃତିକୁ ହଜାଇ ପାରିନାହିଁ। ସେ କାଳର ପିଲାଙ୍କ ଦୁଷ୍ଟାମି, ହସ, କିଶୋର କିଶୋରୀଙ୍କ ଦୁଃସାହସ, ସ୍ୱପ୍ନିକମନର ସୃଜନଶୀଳ-ଲୀଳା ଅଦ୍ୟାପି ଯେପରି କି ସର୍ବତ୍ର ଲାଗି ରହିଛି। କାରଣ ମାର୍କଟ୍ୱେନ୍ ଟମ୍‌ସୟର୍ ଓ ହକଲ୍‌ବେରି ଫିନ୍‌ରେ ସେଇ ସବୁ ମଧୁର ଲୀଳାକୁ ଜଗତ୍‌ରେ ସୁପରିଚିତ ପ୍ରିୟ କରିଛନ୍ତି।

ପିଲାଦିନୁ ସେ ବିକଟ ଦାରିଦ୍ର୍ୟର ସମ୍ମୁଖୀନ ହୋଇଥିଲେ। ଶିକ୍ଷାଲାଭର କୌଣସି ସୁଯୋଗ ତାଙ୍କର ନ ଥିଲା। ସେ ଯେଉଁ ଅବସ୍ଥାରେ ଥିଲେ, ସେଥିରେ ସାଧାରଣତଃ କେହି କିଛି ହୁଅନ୍ତି ନାହିଁ—ମୂଲିଆ ବା ମଜଦୁର ହୋଇ ଜୀବନ ବିତାଏ। କିନ୍ତୁ ଦୁଃଖ ଟ୍ୱେନ୍‌ଙ୍କୁ ଗଢ଼ୁଥିଲା। ଦାରିଦ୍ର୍ୟ ତାଙ୍କୁ ନିର୍ମାଣ କରୁଥିଲା। ରଣକ୍ଷେତ୍ରରୁ ବାହାରିଲେ ସେ ଜଣେ ବିଜୟୀ ସୈନିକ ରୂପେ। ବାଲ୍ୟଜୀବନର ଯାବତୀୟ ଅନୁଭୂତି ହେଲା ତାଙ୍କ ଲେଖାର ଉପାଦାନ। ଉତ୍ତୀର୍ଣ୍ଣ ହେଲେ ସେ ଜଣେ ଶ୍ରେଷ୍ଠ ଲେଖକ ରୂପେ। ସେ ନିଜେ ଟମ୍‌ସୟର, ତାଙ୍କ ଜୀବନର ଯାବତୀୟ ପ୍ରତ୍ୟକ୍ଷ ଅନୁଭୂତି ଏହି ଚରିତ୍ରରେ ରୂପାୟିତ ହୋଇଅଛି। ତାଙ୍କ ମାନସୀ ଟମ୍‌ଙ୍କ ପ୍ରଣୟିନୀ।

ସାଇଭଉଣୀ, ସ୍ତ୍ରୀ ଓ ପିଲାମାନଙ୍କ ଅକାଳମୃତ୍ୟୁ ଆଦି ବହୁ ଦୁଃଖାବହ ଘଟଣା ତାଙ୍କ ଜୀବନରେ ଘଟିଥିଲା । ଅଶ୍ରୁର ସମୁଦ୍ରରୁ ଜନ୍ମ ନେଇଥିଲା ତାଙ୍କର ହାସ୍ୟରସାତ୍ମକ ବ୍ୟକ୍ତିତ୍ୱ – ଯେ ପରାଜୟ ମାନେନା , ପରିସ୍ଥିତିକୁ ଭ୍ରୂକ୍ଷେପ କରେନା, କାନ୍ଦ ଭିତରେ ହସେ ଓ ହସାଏ ।

ସାମ୍ ହାନିବାଲ ସେଣ୍ଟ୍ ଲୁଇସ୍, ନିଉୟର୍କ, ଫିଲଡେଲ୍‌ଫିଆରେ ନିଜର ଭାଗ୍ୟ ଖୋଜି ବୁଲିଥିଲେ । କେତେବେଳେ ମୁଦ୍ରାକର, କେତେବେଳେ ଷ୍ଟିମ୍‌ବୋଟର ପାଇଲଟ, କେତେବେଳେ ସୈନିକ, କେତେବେଳେ ସୁବର୍ଣ୍ଣ ଅନୁସନ୍ଧାନୀ, କେତେବେଳେ ସାମ୍ବାଦିକ - ଜୀବନର ବିସ୍ତୃତ କ୍ଷେତ୍ରରୁ ନାନା ମୂଲ୍ୟବାନ୍ ଅନୁଭୂତି ଅର୍ଜନ କରିଥିଲେ । ନିଉୟର୍କ ଓ ଅନ୍ୟାନ୍ୟ ସହରରେ ଥିବାବେଳେ ସେ ଜଣେ ଲେଖକ ହିସାବରେ ପରିଚିତ ଓ ପ୍ରସିଦ୍ଧ ହେଲେ ।

ହାନିବାଲ୍ ତ୍ୟାଗ କରି ଯିବାର ତିରିଶ ବର୍ଷ ପରେ ସେ ପୁଣି ଏହି ସହରକୁ ଆସିଥିଲେ । 'ହଲିଡ଼େ ହିଲ୍'ରେ ଆରୋହଣ କରିଥିଲେ । ପ୍ରତ୍ୟେକ ଗଳିକନ୍ଦି ବୁଲି ଦେଖିଥିଲେ- କଣ ଥିଲା, କଣ ହୋଇଛି ! ଯେଉଁମାନଙ୍କୁ ସେ ଭଲ ଭାବେ ଚହ୍ନିଥିଲେ ସେଥିମଧ୍ୟରୁ ଅଧିକାଂଶ ଏହି ମାଟିର ପୃଥିବୀକୁ ଛାଡ଼ି ଚାଲିଯାଇଥିଲେ ।

ବାଲ୍ୟକାଳର ବହୁ ଦୁଃସ୍ମୃତି ତାଙ୍କର ମନେ ପଡ଼ିଥିଲା । ଜେଲ ଭିତରର ଜଣେ କଏଦୀ ଥରେ ପାଇପ ଲଗାଇବା ଲାଗି ସାମ୍‌କୁ ଦିଆସିଲି ମାଗିଥିଲା । ସାମ୍ ତା ସାମାନ୍ୟ ପାଣ୍ଠିରୁ ଗନ୍ଧକ ଦିଆସିଲିଟିଏ କିଣି କଏଦୀକୁ ଦେଲା । ସେଇ ଦିନ ଜେଲରେ ନିଆଁ ଲାଗିଲା । କଏଦୀଟି ବିକଳରେ ଡାକ ପକାଇଲା । ସାମ୍ ଦେଖିଲାବେଳକୁ ତାକୁ ନିଆଁ ପୂରାପୂରି ଘେରିଲେଣି । ଦଣ୍ଡକ ଭିତରେ ସେ ପୋଡ଼ି ପାଉଁଶ ହୋଇଗଲେ । ପୁଲିସ ଭୟରେ ସେ ରାତିରେ ସାମ୍‌କୁ ନିଦ ହେଲା ନାହିଁ । କିନ୍ତୁ ପୁଲିସ ସାମ୍ ଉପରେ ସନ୍ଦେହ କରି ନ ଥିଲେ "Life on the Mississipi"ରେ ତାଙ୍କ ବାଲ୍ୟଜୀବନର ବହୁ ସ୍ମୃତି ଜୀବନ୍ତ ହୋଇ ରହିଛି ।

୧୯୧୦ ମସିହା ଅପ୍ରେଲ ୨୦ ତାରିଖରେ ତାଙ୍କର ମୃତ୍ୟୁ ହେଲା । ଯାହା କହନ୍ତି, 'କୂଳରେ ପାଣିଦେବାକୁ' ଏବେ ତାଙ୍କର କେହି ନାହାନ୍ତି । ଶେଷ ଶାଖା 'ନିନା' ୧୯୬୬ରେ ପ୍ରାଣତ୍ୟାଗ କରିଛନ୍ତି ।

## ମାର୍କଟ୍ୱେନ୍ ଯାଦୁଘର—

ଶହେ ବର୍ଷ ତଳର ଏକ ଗୃହରେ ଯାଦୁଘରଟି ନିର୍ମିତ ହୋଇଛି । ସେକାଳର ସ୍ୱାଭାବିକ ବାତାବରଣ ଆଣିବାରେ ଏହା କିଛିତ୍ ସହାୟକ ହୋଇଛି । ଜଣେ ଧନୀବ୍ୟକ୍ତି ଏହା ନିର୍ମାଣ କରି ସହରବାସୀଙ୍କୁ ଦାନ କରିଛନ୍ତି । ସହରବାସୀଙ୍କ ଅନୁରୋଧରେ ଏହି ଧନୀବ୍ୟକ୍ତିଙ୍କ ଜାମାତା ଯାଦୁଘର ପରିଚାଳନାରେ ମୁଖ୍ୟ ହୋଇଅଛନ୍ତି । ତାଙ୍କ ସହିତ ମୋର ସାକ୍ଷାତ ହୋଇଥିଲା । ସେ ଟ୍ୱେନ୍‌ଙ୍କ ଜୀବନୀ ସମ୍ପର୍କରେ ଖଣ୍ଡିଏ ପାମ୍ପଲେଟ୍ ମୋତେ ଉପହାର ଦେଇଥିଲେ ଓ ଭ୍ରମଣ କାହାଣୀ ପ୍ରକାଶିତ ହେଲେ ଖଣ୍ଡିଏ ଯାଦୁଘରକୁ ପଠାଇବା ଲାଗି ଅନୁରୋଧ କରିଥିଲେ ।

ଯାଦୁଘରଟି ଶ୍ରେଷ୍ଠ, ଭିଡ଼ ବେଶୀ; ଦେଖିବା ଲାଗି ଟିକେଟ କାଟିବାକୁ ପଡ଼େନାହିଁ । ସେ ପଢ଼ିଥିବା 'Bunyan's Pilgrim's Progress', ଚମଡ଼ା ମଲାଟ ବନ୍ଧା ବାଇବଲ, ଗ୍ରୀକ୍ ଗ୍ରାମାର, ଗୁଡସ୍ ବୁକ୍ ଅଫ୍ ନେଚର, ମାର୍କଟ୍ୱେନଙ୍କ ମୁଣ୍ଡର ପାଚିଲା ବାଳ ( ୧୮୯୫, ତାଙ୍କ ଭାଇବୋହୂ ଏହା ଓପାଡ଼ି ରଖିଥିଲେ ), ଟ୍ୱେନଙ୍କୁ ଉପହାର ଦିଆ ହୋଇଥିବା ଘଡ଼ି (କ୍ରିସମାସ୍, ୧୮୭୮), ତାଙ୍କର କେତେକ ଛବି ଓ ଫଟୋ, ତାଙ୍କ ସଂପର୍କରେ ଲିଖିତ ଆଲୋଚନା ପୁସ୍ତକ, ତାଙ୍କର ଯାବତୀୟ ଚିଠିପତ୍ର, ତାଙ୍କ ଉପନ୍ୟାସ ଅବଲମ୍ବନରେ ଲିଖିତ ନାଟକ ଓ ତାର କୃତୀ ଅଭିନେତା ହଲବ୍ରୁକଙ୍କ ଫଟୋ, ତାଙ୍କ ପୁସ୍ତକ ସମ୍ବନ୍ଧୀୟ କେତେକ ବିଜ୍ଞାପନର ନମୁନା, ସେ ବ୍ୟବହାର କରିଥିବା ଗୋଟିଏ ବୃହତ୍ ଅରକେଷ୍ଟ୍ରା ( ତାଙ୍କ ନିର୍ଦ୍ଦେଶରେ ୧୯୦୪ରେ ମେହୋଗାନି କାଠରେ ନିର୍ମିତ; ଏଥିରେ ୨୪ଟି ଭିନ୍ନ ଭିନ୍ନ ସ୍ୱର ସେଟ ଅଛି, ଏହା ଏବେ ବଜାଯାଇ ପାରେ, ତାଙ୍କ ଜୀବନୀ ଲେଖକ ପେନ୍ ଏହାକୁ ଯାଦୁଘରକୁ ଉପହାର ଦେଇଛନ୍ତି— ୮ ଫୁଟ ଉଚ୍ଚ, ୬ ଫୁଟ ପ୍ରସ୍ତ, ତିନଫୁଟ ଗଭୀର ), ଟ୍ୱେନ୍ ଯେଉଁ ଖାଦ୍ୟ ଖାଉଥିଲେ ତାର ଏକ 'ମେନୁ', ୧୮୬୭ରେ ଟ୍ୱେନ୍‌ଙ୍କ ହାନିବାଲ୍ ତ୍ୟାଗ ସମୟର ଫଟୋ, ତାଙ୍କର ବକ୍ତୃତାବଳୀ, ତାଙ୍କ ଘରର କାରୁକାର୍ଯ୍ୟଭରା କାଠବାକ୍ସ, ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ତାଙ୍କର ଡକ୍ଟରେଟ ଡ୍ରିଗ୍ରୀଲାଭ, ସେତେବେଳର ଅଭିନନ୍ଦନପତ୍ର, ତାଙ୍କର ହୁଡ଼୍ ଓ ଗାଉନ୍ ଦେଖିପାରି ତାଙ୍କର ଗୋଟିଏ ବୋଲ୍ଡ ମର୍ତ୍ତି ପାଖରେ ଛିଡ଼ାହେଲି । ସେଥିରେ ଲେଖାହୋଇଛି ପଦେ କବିତା -

> 'Always do right
> This will gratify
> Some people and
> astonish the rest.'

ଟ୍ୱେନ୍ ଯେଉଁ ହାତରେ ଲେଖୁଥିଲେ ତାର ଏକ ବ୍ରୋଞ୍ଜ ଛାଞ୍ଚ ଦେଖିଲି । ତାଙ୍କ ସମସ୍ତର ରେଳଗାଡ଼ି, ଲଣ୍ଠନ, 'Personal recollection of Joan of Arc'ର ପାଣ୍ଡୁଲିପି, ତାଙ୍କ ଚଉକା, ଗୃହପାତ୍ର, ନିଆଁ ପୋହିବା ଚୁଲ୍ଲୀ, ବ୍ୟବହୃତ ଶଯ୍ୟା, ଯେଉଁ ଟେବୁଲ୍ ଉପରେ ଟ୍ୱେନ୍ 'The adventures of Tom Sawer' ଲେଖିଥିଲେ, ସଂରକ୍ଷିତ ହୋଇଅଛି । ଗୋଟିଏ ସ୍ଥାନରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି—

"ଟ୍ୱେନ୍‌ଙ୍କ ଜୀବନରୁ ଏହି ଶିକ୍ଷା ମିଳେ ଯେ ଦାରିଦ୍ର୍ୟ ଉନ୍ନତିର ବାଧକ ନୁହେଁ; ପରିଶ୍ରମ କଲେ ଓ ସଦୁଦ୍ଦେଶ୍ୟ ଥିଲେ ଯେ କେହି ତାଙ୍କ ସ୍ତରକୁ ଯାଇପାରିବ ।"

ତାଙ୍କ ବ୍ୟବହୃତ ଟାଇପ ରାଇଟ୍‌ର ତଳେ ଟ୍ୱେନ୍‌ଙ୍କର ଖଣ୍ଡେ ପତ୍ର (ଟାଇପ ରାଇଟ୍‌ର ନିର୍ମାଣକାରୀଙ୍କ ନିକଟକୁ ) :—

"ମୁଁ ତୁମ ଟାଇପ୍ ରାଇଟର ଆଉ ବ୍ୟବହାର କରୁନାହିଁ । ଏ ପର୍ଯ୍ୟନ୍ତ ଏପରି ଖଣ୍ଡିଏ ପତ୍ର ପାଇନାହିଁ ଯହିଁରେ ନାହିଁ ଶୀଘ୍ର ଉତ୍ତର ଦେବାର ଅନୁରୋଧ; ଟାଇପ୍ ରାଇଟର କେମିତି ବନ୍ଧୁମାନେ ଜାଣିବାକୁ ଚାହିଁଛନ୍ତି । ମୁଁ ପତ୍ର ଲେଖିବାକୁ ଭଲପାଏ ନାହିଁ । ତେଣୁ ତୁମ ଟାଇପଯନ୍ତ୍ର ଆଉ କୌଣସି କାର୍ଯ୍ୟରେ ଲଗୁନାହିଁ ।"

ଏହି ପତ୍ରଖଣ୍ଡି ପଢ଼ି ବାଲେଶ୍ୱରକୁ ଫକୀରମୋହନ ଛାପାଖାନା ଆଣିବା କଥା ମନେ ପଡ଼ିଗଲା ।

ତାଙ୍କ କାଳର ଗୋଟିଏ ଉଚ୍ଚ ସାଇକଲଟିଏ ଦେଖିଲି ( ଲମ୍ବା ସିଟ୍, ଗ୍ରେଟ ହାଣ୍ଡେଲ୍ , ଗୋଟାଳିଆ ଟାୟାର ); ଟ୍ୱେନ୍ ତାଙ୍କ ବାଡ଼ିଆଡ଼େ ପିଲାଦିନେ ସାଇକଲ୍ ଶିଖୁଥିଲେ, କେହି ଦେଖିବ ବୋଲି, କାଳେ କାହା ଦେହରେ ଧକ୍‌କା ଲାଗିବ ବୋଲି; କିନ୍ତୁ ତାଙ୍କ କୁକୁର ଏ ମଜା ଦେଖିବାକୁ ଆସି ବାରମ୍ବାର ଧକ୍‌କା ଖାଉଥିଲା । କାରଣ କୁକୁରର କୌତୁକ ଉତ୍ପାଦନ ଲାଗି ଗାଆଁରେ ଅନ୍ୟ କିଛି ନ ଥିଲା । ସେ କାଳ ସାଇକଲ ବିଷୟରେ ଟ୍ୱେନ୍ ଲେଖିଛନ୍ତି—

"Get a bicycle
You will not
Regret if you live."

ଜେମସ୍ ସ୍ମାର୍ ନାମକ ଜଣେ ଧନୀ ବ୍ୟକ୍ତିଙ୍କୁ ହାନିବଲ୍ ସହର ରାସ୍ତା ମଝିରେ ଲେଖକଙ୍କ ସାମ୍ନାରେ ହତ୍ୟା କରାଯାଇଥିଲା । ଲେଖକ ହକଲ୍‌ବେରି ଫିନ୍‌ର 'ସର୍‌କସ ଡେ ମର୍ଡ଼ର' ବର୍ଣ୍ଣନାରେ ଏହାକୁ ହିଁ ରୂପାୟିତ କରିଛନ୍ତି । ସ୍ମାର୍‌ଙ୍କ

ହତ୍ୟାରେ ବ୍ୟବହୃତ ପିସ୍ତଲ୍ଟି ମ୍ୟୁଜିୟମ୍‌ରେ ପ୍ରଦର୍ଶିତ ହୋଇଛି । ତାଙ୍କ ସମୟର ବଳଦ ହଳ, ଜୁଆଳି, ବଳଦଙ୍କ ଗୋଡ଼ର ନାଲ, ପିଲାଙ୍କ ଖେଳ-ଶଗଡ଼ ଦେଖିଲେ ବୁଝାଯାଏ, ଆମେରିକା କିପରି ଦିନେ ଆମ ଦେଶ ପରି ଥିଲା ।

ଟ୍ୱେନ୍‌ଙ୍କ ବାଲ୍ୟଶିକ୍ଷକ ହୋର୍‌ଙ୍କୁ ଏହି ଯାଦୁଘରେ ସମ୍ମାନ ପ୍ରଦର୍ଶନ କରାହୋଇଛି । ତାଙ୍କ ପରିବାରର ଫଟୋ ଓ କେତେକ ବ୍ୟବହାର୍ଯ୍ୟ ଦ୍ରବ୍ୟ ପ୍ରଦର୍ଶିତ ହୋଇଛି । ହୋର୍ ଗେଟିସ୍‌ବର୍ଗ ଯୁଦ୍ଧରେ ଆହତ ହୋଇଥିଲେ । ହୋର୍‌ଙ୍କ ସ୍କୁଲରେ ବ୍ୟବହୃତ ଡେକ୍‌ସ୍ ଠିକ୍ ଆମ ଭାରତୀୟ ଡେକ୍‌ସ୍ ପରି ।

ପ୍ରତିଭାଶାଳୀ ଉତ୍ତମ ବ୍ୟକ୍ତି ଅଳ୍ପବୁଦ୍ଧିଙ୍କ ଦ୍ୱାରା ତ୍ରସ୍ତ ଓ ଦଳିତ ହୋଇଥାଏ । ବୁଦ୍ଧିର ଦୀପ୍ତି ପ୍ରଦର୍ଶନ ଯେପରିକି ଏକ ଅପରାଧ । ଦୁଃଖର ବିଷୟ ହେଲେ ବି ଏହା ଯୁଗେ ଯୁଗେ ଏକ ସାଧାରଣ ସତ୍ୟ । ଅତି ଭଲପଣର କୁପରିଣାମ ଦେଖାଇ ଟ୍ୱେନ୍ ଉପଦେଶ ଦେଇଛନ୍ତି ।

"Be good be good
be always good
And now and then
be clever,
But do not you
ever be too good.
Nor ever be too clever
For each as be
too awful good
The awful lonely are."

ଯାଦୁଘରକୁ ଲାଗି ମାର୍କଟ୍ୱେନ୍‌ଙ୍କ ଘର—ଗ୍ରେଟ ଦୋମହଲା କୋଠାଟିଏ । ଏଥିରେ ତାଙ୍କ ଶୋଇବା ଖଟ, କାଚ୍ଛଦର୍ପଣ ଓ ଡ୍ରୟର୍ ଟେବୁଲ୍ ରହିଅଛି । ଘରଉପରେ ଆଇଭି ଲତା ମାଡ଼ିଛି । ଶରତ୍‌କାଳ ଯୋଗୁଁ ପତ୍ରସବୁ ନାନାବର୍ଣ୍ଣରେ ରଙ୍ଗିନ୍ । ଘରପାଖ ଗ୍ରେଟ ବଗିଚାରେ ବଡ଼ ବଡ଼ ସୂର୍ଯ୍ୟମୁଖୀ, ଇଶ୍ୱରଜଟା, ଗୋଲାପ ଓ ଜହ୍ନଆଁ ଫୁଟିଛି । ଘର ସାମ୍ନାରେ ଗୋଟିଏ ପୁସ୍ତକ ଦୋକାନ; ଏଥିରେ ଟ୍ୱେନ୍‌ଙ୍କ ଜୀବନୀ, ରଚନାବଳୀ, ଟ୍ୱେନ୍ ସାହିତ୍ୟର ନାନା ସମାଲୋଚନା ପୁସ୍ତକ କ୍ରୟ କରିବାକୁ ମିଳେ । ମୁଁ ପୁସ୍ତକ ସବୁ ଦେଖୁଛି, ଏତିକିବେଳେ ବାନ୍ଧବୀ ଭର୍ଜିନିଆଁର ବୁଢ଼ୀମାଆ-ଆସି ମାର୍କଟ୍ୱେନ୍‌ଙ୍କ ଫଟୋଗୁଚ୍ଛ ଉପହାର ଦେଲେ । ବନ୍ଧୁ ମି. ଟିଲ୍ଲିଟ୍ 'Tom Sawer' ଉପନ୍ୟାସ ଖଣ୍ଡି ଉପହାର ଦେଲେ ଓ ଟ୍ୱେନ୍‌ଙ୍କ ଘର ସାମ୍ନାରେ ମୋର

କେତୋଟି ଫଟୋ ନେଲେ । ସେତେବେଳକୁ ମୁଁ ଜଣେ ଭାରତୀୟ କବି ବୋଲି ସମ୍ବାଦ ପ୍ରଚାରିତ ହୋଇଥାଏ । ସାମ୍ବାଦିକା ଲୁଇସ୍ ସ୍ଥାନୀୟ ସମ୍ବାଦପତ୍ରରେ ମୋର ପୂର୍ଣ୍ଣ ପରିଚୟ ପ୍ରକାଶ କରିଥାନ୍ତି ।

ଟିମ୍ ବ୍ରୁକ୍, ଲୁଇସ୍, ଟିଲ୍ଲିହ୍, ଭର୍ଜିନିଆଁ ମୋତେ ବସ୍ ଷ୍ଟେସନରେ ଛାଡ଼ି ଦେଇଗଲେ । ଟିଲ୍ଲିହ୍ ମୋ ଲାଗି ଟିକେଟ୍ କରି ଆଣିଲେ ହାତରୁ ପଇସା ଦେଇ, ତାପରେ ବସ୍‌ର ଅପରେଟର୍ (ଡ୍ରାଇଭର) ସଙ୍ଗେ ପରିଚିତ କରାଇ ଦେଲେ । ବସର ଅପରେଟର ସମ୍ମାନରେ ମୋତେ ଆଗ ସିଟ୍‌ଟି ଦେଲେ । ରାସ୍ତାସାକ ସେ ହେଲେ ମୋର ଗାଇଡ୍—କେବଳ ରାସ୍ତା ନୁହେଁ, ଦେଶର ଯାବତୀୟ ପ୍ରାଚୀନ କୀର୍ତ୍ତି ଓ ସାଂସ୍କୃତିକ ମହତ୍ତ୍ୱର ସମ୍ବାଦ ସେ ଦେଉଥାନ୍ତି ।

[ ସମାଜ ୧୯୬୭ ଗୋପବନ୍ଧୁ ସଂଖ୍ୟା ]



# ଭାଷା ଓ ଆଞ୍ଚଳିକତା

ଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ

ପୂର୍ବସୂରୀମାନଙ୍କୁ ସ୍ମରଣ କରି ସେମାନଙ୍କ ନାମରେ ମହୋତ୍ସବ ପାଳନ କରିବା ଆଧୁନିକ ସମାଜର ବିଶେଷତ୍ୱ । ଏହି ସ୍ମୃତି ସଭାମାନଙ୍କରେ, ବକ୍ତାମାନେ ଉଦ୍‌ବୋଧନ ଦେଇ କହନ୍ତି ଯେ, ଏହି ପୂର୍ବସୂରୀଙ୍କ ଅପୂର୍ଣ୍ଣ କାର୍ଯ୍ୟକୁ ସଂପୂର୍ଣ୍ଣ କରିବା ଶ୍ରୋତାମାନଙ୍କ କର୍ତ୍ତବ୍ୟ,କିନ୍ତୁ କେଉଁ କାର୍ଯ୍ୟଟି ଅପୂର୍ଣ୍ଣ ରହିଯାଇଛି, ତାହା କେହି କହନ୍ତି ନାହିଁ । ଓଡ଼ିଶାର ଗୌରବ ଯେ ପଣ୍ଡିତ ଗୋପବନ୍ଧୁ ଦାସ କଂଗ୍ରେସଦ୍ୱାରା ଭାଷାସୂତ୍ରରେ ପ୍ରଦେଶ ଗଠନ ନୀତିକୁ ଗ୍ରହଣ କରାଇ ନେଇଥିଲେ । ୧୯୨୦ରେ କଲିକତାଠାରେ ପଞ୍ଜାବକେଶରୀ ଲାଲା ଲଜପତ୍ ରାୟଙ୍କ ସଭାପତିତ୍ୱରେ ଅନୁଷ୍ଠିତ କଂଗ୍ରେସର ବିଶେଷ ଅଧିବେଶନରେ ସେ ମହାତ୍ମା ଗାନ୍ଧିଙ୍କ ସହିତ ଏ ସଂପର୍କରେ ଆଲୋଚନା କରିଥିଲେ । ପରେ ସେହି ବର୍ଷ ଶେଷରେ ନାଗପୁରଠାରେ ଅନୁଷ୍ଠିତ କଂଗ୍ରେସର ସାଧାରଣ ଅଧିବେଶନରେ ଏହାହିଁ କଂଗ୍ରେସର ଗୃହୀତ ନୀତି ହେଲା । ସେତେବେଳେ କଂଗ୍ରେସ ହାତରେ ଦେଶ ଶାସନର ଦାୟିତ୍ୱ ନ ଥିଲା । ତେଣୁ ଏହି ନୀତିକୁ କାର୍ଯ୍ୟକାରୀ କରିବା ଲାଗି ନିଖିଳ ଭାରତ କଂଗ୍ରେସ କମିଟି ଭାଷାସୂତ୍ରରେ ପ୍ରାଦେଶିକ କଂଗ୍ରେସ କମିଟି ଗଠନ କଲା । ପଣ୍ଡିତ ଗୋପବନ୍ଧୁ ସବୁବେଳେ କହୁଥିଲେ ଯେ, ଭାରତର ପ୍ରତ୍ୟେକ ଅଂଶ ଜାତୀୟ ସଂଗ୍ରାମରୂପକ ମହାଯଜ୍ଞରେ ଆହୂତି ଦେବା ବାଧ୍ୟତାମୂଳକ । ସ୍ୱାଧୀନତା-ସଂଗ୍ରାମର ଧାରା ପ୍ରବହମାନ; କେହି ତାକୁ ରୋକି ପାରିବେ ନାହିଁ । ଯଦି କୌଣସି ପ୍ରଦେଶ ସ୍ୱାଧୀନତା ସଂଗ୍ରାମରୁ ବିଚ୍ଛିନ୍ନ ହୋଇ ରହିଯାଏ, ତାହାହେଲେ ନିଜର ତ କୌଣସି ଉପକାର ହେବ ନାହିଁ, ଅପରପକ୍ଷରେ ଜାତୀୟ ଲକ୍ଷ୍ୟସାଧନ ବ୍ୟାହତ ହେବ । ସେହି ହେତୁ ସେ ଉତ୍କଳ ସମ୍ମିଳନୀକୁ ଜାତୀୟ କଂଗ୍ରେସ ସହିତ ସାମିଲ କରିଦେବାଲାଗି ବ୍ୟାକୁଳ ଥିଲେ; କିନ୍ତୁ ଓଡ଼ିଶାକୁ ଭାଷାସୂତ୍ରରେ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ଉତ୍କଳ ସମ୍ମିଳନୀର ଚରମ ଲକ୍ଷ୍ୟଥିବାରୁ ଅନ୍ତତଃ ଏହି ଦାବୀଟି ଜାତୀୟ କଂଗ୍ରେସ ଗ୍ରହଣ ନ କଲେ ସମ୍ମିଳନୀର ପୁରୋଧାମାନେ ସହଜରେ କଂଗ୍ରେସରେ ନିଜକୁ ଲୀନ କରିଦେବା ଲାଗି ରାଜି ହୋଇ ନ ଥାନ୍ତେ । ନାଗପୁର କଂଗ୍ରେସରେ ଭାଷାସୂତ୍ରରେ ପ୍ରଦେଶ ଗଠନ ନୀତି ଗୃହୀତ ହେବାମାତ୍ରକେ ପଣ୍ଡିତ ଗୋପବନ୍ଧୁ ନେତୃତ୍ୱ ନେଇ ଉତ୍କଳ ସମ୍ମିଳନୀର ଚକ୍ରଧରପୁର ଅଧିବେଶନରେ ସମ୍ମିଳନୀକୁ କଂଗ୍ରେସରେ ମିଶାଇ ଦେବା ପ୍ରସ୍ତାବ ଗ୍ରହଣ କରାଇନେଲେ । ତତ୍ପରେ ପଣ୍ଡିତ ଗୋପବନ୍ଧୁ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର

ସରାପଣ୍ଡି ଟେକେଲ ଏବଂ ସିଂହଭୂମି ଜିଲ୍ଲା ଓଡ଼ିଆଅଧ୍ୟୁଷିତ ଅଞ୍ଚଳ ହୋଇଥିବାରୁ ଏହି ଜିଲ୍ଲାଟି ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଅଧୀନରେ ରହିଲା । ଏପର୍ଯ୍ୟନ୍ତ ତାମିଲନାଡ଼ୁ ପ୍ରଦେଶ ଗଠିତ ହୋଇନାହିଁ । କର୍ଣ୍ଣାଟକ ପ୍ରଦେଶ ନାମକ କୌଣସି ପ୍ରଦେଶ ନାହିଁ । ୧୯୫୩ ପର୍ଯ୍ୟନ୍ତ ଆନ୍ଧ୍ର ପ୍ରଦେଶ ଗଠିତ ହୋଇ ନ ଥିଲା । ତଥାପି ପଣ୍ଡିତ ଗୋପବନ୍ଧୁଙ୍କ ନେତୃତ୍ୱ ଯୋଗୁଁ ସେହି ୧୯୨୦ରେ ତନ୍ନାମଧେୟ ପ୍ରାଦେଶିକ କଂଗ୍ରେସ କମିଟିମାନ ଗଠିତ ହୋଇଥିଲା ।

ଭାଷା ଗୋଟିଏ ଗ୍ରମୀକାରକ ଉପାଦାନ । ଓଡ଼ିଆ-ଭାଷୀ ଲୋକେ ବିହାର, ଓଡ଼ିଶା, ବଙ୍ଗ, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ବାଣ୍ଟି ହୋଇ ରହିଥିଲେ । କେବଳ ସେମାନେ ଗୋଟିଏ ଭାଷା କହୁଥିଲେ ବୋଲି ଏକ-ଶାସନାଧୀନ ହେବା ଲାଗି ଆନ୍ଦୋଳନ ଚଳାଇ ଶେଷରେ ୧୯୩୬ ଅପ୍ରେଲ ପହିଲା ଦିନ ସ୍ୱତନ୍ତ୍ର ପ୍ରଦେଶଟିଏ ପାଇଲେ । ଏବେ ମଧ୍ୟ ବିହାର, ପଶ୍ଚିମବଙ୍ଗ, ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶରେ ବହୁସଂଖ୍ୟକ ଓଡ଼ିଆଭାଷୀ ଲୋକ ରହିଯାଇଛନ୍ତି ଏବଂ ସେମାନେ ଓଡ଼ିଶା ସହିତ ମିଶିଯିବାଲାଗି ବ୍ୟାକୁଳତା ପ୍ରକାଶ କରୁଛନ୍ତି । ଭିନ୍ନ ଭିନ୍ନ ରାଜ୍ୟର ଅଧିବାସୀ ହୋଇଥିଲେ ହେଁ ଏହି ଓଡ଼ିଆମାନେ ଭାଷା ଦୃଷ୍ଟିରୁ ଏକ ଓ ଅଭିନ୍ନ । ଭାଷା ଗୋଟିଏ ଭାବଗତ ଉପାଦାନ । ଭାରତର ବିଭିନ୍ନ ପ୍ରାନ୍ତରେ କିମ୍ବା ବିଦେଶରେ ନିଜ ଭାଷାଭାଷୀ ଲୋକଟିଏ ମିଳିଲେ ମନରେ ଯେଉଁ ଭାବଗତ ଶୃଙ୍ଖଳା ସୃଷ୍ଟି ହୁଏ, ତାହା ଅନୁଭବୀ ମାତ୍ରକେ ଜାଣେ । କୌଣସି କୃତ୍ରିମ ଉପାୟରେ ଭାଷାର ଏହି ଶକ୍ତିକୁ ଦବାଇ ଦେଇ ହେବ ନାହିଁ । ମହାତ୍ମା ଗାନ୍ଧି ଏହା ଉପଲବ୍ଧି କରି ଭାଷାସୂତ୍ରରେ ପ୍ରଦେଶ ଗଠନ ନୀତି ମାନି ନେଇଥିଲେ ଏବଂ ଇଂରେଜ ସରକାର ୧୯୩୬ରେ ଓଡ଼ିଶା ଗଠନ କରିବା ବେଳେ ଉକ୍ତ ନୀତିର ସାରବତ୍ତା ସ୍ୱୀକାର କରିଥିଲେ । ସମୟର ସ୍ରୋତ ବୋହିଗଲା । ଭାରତ ସ୍ୱାଧୀନ ହେଲା ଏବଂ କଂଗ୍ରେସୀ ଲୋକେ ଶାସନ ଦାୟିତ୍ୱ ବହନ କଲେ । ପୂର୍ବସୂରୀମାନଙ୍କ ନିର୍ଦ୍ଧାରଣ ସେମାନଙ୍କୁ ବୋଧହୁଏ ପ୍ରଭାବିତ କଲା ନାହିଁ । ତେଣୁ ସେମାନେ ଭାଷାର ଏହି ଦୁର୍ଦ୍ଦମନୀୟ ଶକ୍ତିକୁ ଅସ୍ୱୀକାର କଲେ । ୧୯୫୦ରେ ଆନ୍ଧ୍ରର ପୋଟ୍ଟି ଶ୍ରୀରାମଲୁ ସ୍ୱତନ୍ତ୍ର ତେଲୁଗୁ ଭାଷା ପ୍ରଦେଶ ଦାବି କରି ଆତ୍ମବଳି ଦେବାରୁ କେନ୍ଦ୍ର ସରକାର ୧୯୫୩ ଅକ୍ଟୋବର ପହିଲା ଦିନ କେବଳ ଯେ ଆନ୍ଧ୍ର ପ୍ରଦେଶ ଗଠନ କଲେ, ସେତିକି ନୁହେଁ, ଭାଷାସୂତ୍ରରେ ପ୍ରଦେଶ ଗଠନ ନୀତିକୁ ଆଖି ଆଗରେ ରଖି ରାଜ୍ୟ ପୁନର୍ଗଠନ ବିଷୟରେ ସୁପାରିଶ କରିବା ଲାଗି ତତ୍କାଳୀନ ଓଡ଼ିଶା ରାଜ୍ୟପାଳ ସାର୍ ସୟଦ୍ ଫଜଲ୍ ଆଲିଙ୍କ ସଭାପତିତ୍ୱରେ ଗୋଟିଏ ତିନିଜଣିଆ 'ରାଜ୍ୟ ପୁନର୍ଗଠନ ଆୟୋଗ' ବସାଇଲେ । ସେମାନେ ୧୯୫୫ ସୁଦ୍ଧା ନିଜ ବିବରଣୀ ଦେଲେ । ତାଙ୍କ ସୁପାରିଶ ଅନୁସାରେ ସମ୍ବିଧାନର ସପ୍ତମ ସଂଶୋଧନ ୧୯୫୬ରେ କରାହୋଇ ସେହି ବର୍ଷ ନଭେମ୍ବର ପହିଲାଠାରୁ ଭାରତରେ ରାଜ୍ୟ ପୁନର୍ଗଠନ ହୋଇଗଲା । ସେତେବେଳେ ବମ୍ବେ ରାଜ୍ୟକୁ ଭାଷାସୂତ୍ରରେ ବିଭକ୍ତ

କରା ହୋଇ ନଥିଲା । ଗୁଜୁରାଟୀ ଓ ମରାଠୀମାନଙ୍କ ଆନ୍ଦୋଳନ ଫଳରେ ୧୯୬୦ ମଇ ପହିଲା ଦିନ ଗୁଜୁରାଟ ଓ ମହାରାଷ୍ଟ୍ର ପ୍ରଦେଶ ଗଠିତ ହେଲା ଏବଂ ପୂର୍ବତନ ବମ୍ବେ ପ୍ରଦେଶ ବିଭକ୍ତ ହୋଇଗଲା । ବର୍ତ୍ତମାନ ଭାଷାସୂତ୍ରରେ ରାଜ୍ୟ ପୁନର୍ଗଠନ ହେଲା ବୋଲି ଭାରତ ସରକାର ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ତଥାପି ନିମ୍ନଲିଖିତ ବିବରଣୀରୁ ସ୍ପଷ୍ଟ ଜଣାପଡ଼ିବ ଯେ, ଭାଷାସୂତ୍ରରେହିଁ ରାଜ୍ୟ ଗଠିତ ହୋଇଛି ।

| | | ଅଷ୍ଟମ ପରିଚ୍ଛେଦ ଅନୁସାରେ |
|---|---|---|
| ରାଜ୍ୟ | ଭାଷା | ଭାଷା |
| ଆସାମ | ଆସାମୀ | ଆସାମୀ |
| ବିହାର | ହିନ୍ଦି | ହିନ୍ଦି |
| ଗୁଜରାଟ | ଗୁଜୁରାଟୀ | ଗୁଜୁରାଟୀ |
| ମହାରାଷ୍ଟ୍ର | ମରାଠୀ | ମରାଠୀ |
| ଆନ୍ଧ୍ର | ତେଲୁଗୁ | ତେଲୁଗୁ |
| ମାନ୍ଦ୍ରାଜ | ତାମିଲ | ତାମିଲ |
| ଓଡ଼ିଶା | ଓଡ଼ିଆ | ଓଡ଼ିଆ |
| ପଂଜାବ | ପଂଜାବୀ | ପଂଜାବୀ |
| ଉତ୍ତରପ୍ରଦେଶ | ହିନ୍ଦି | ହିନ୍ଦି |
| ପଶ୍ଚିମବଙ୍ଗ | ବଙ୍ଗଳା | ବଙ୍ଗଳା |
| କାଶ୍ମୀର | କାଶ୍ମୀରୀ | କାଶ୍ମୀରୀ |
| ମହୀଶୂର | କର୍ଣ୍ଣିଦା | କର୍ଣ୍ଣିଦା |
| ରାଜସ୍ଥାନ | ହିନ୍ଦି | ହିନ୍ଦି |
| କେରଳ | ମାଲୟାଲୀ | ମାଲୟାଲୀ |
| ମଧ୍ୟପ୍ରଦେଶ | ହିନ୍ଦି | ହିନ୍ଦି |

ଉଲ୍ଲିଖିତ ବିବରଣୀରୁ ସ୍ପଷ୍ଟ ଜଣାପଡ଼େ ଯେ, ଜନସାଧାରଣଙ୍କ ପାଇଁ ମାତୃଭାଷା ସମୀକାରକ ଉପାଦାନ ହେଲେହେଁ ରାଜ୍ୟଗୁଡ଼ିକ ପାଇଁ ବିଭାଜକ ଉପାଦାନରୂପେ କାର୍ଯ୍ୟ କରିଛି । ସମ୍ବିଧାନର ୮ମ ପରିଶିଷ୍ଟରେ ୧୪ଗୋଟି ଭାଷାର ନାମ ଲିପିବଦ୍ଧ ହୋଇଛି । ତନ୍ମଧ୍ୟରୁ ସଂସ୍କୃତ ଗୋଟିଏ କଥିତ ଭାଷା ନୁହେଁ ଏବଂ ଉର୍ଦ୍ଦୁ ଭାଷା ସମଗ୍ର ଭାରତରେ ମୁସଲମାନ ସମ୍ପ୍ରଦାୟର କଥିତ ଭାଷା ହୋଇଥିବାରୁ ଏହା କୌଣସି ଗୋଟିଏ ରାଜ୍ୟରେ ସୀମାବଦ୍ଧ ନୁହେଁ । ଅନ୍ୟ ବାରଗୋଟି ଭାଷାକୁ ଅବଲମ୍ବନ କରି ଉଲ୍ଲିଖିତ ରାଜ୍ୟଗୁଡ଼ିକ ଗଠିତ ହୋଇଛି । ଭାଷାଗତ ସଂଖ୍ୟାଲଘୁ ସଂପ୍ରଦାୟର ପ୍ରତ୍ୟେକ ରାଜ୍ୟରେ ରହିବାର ସମ୍ଭାବନା ଥିବାରୁ ସମ୍ବିଧାନର ୨୯ ଧାରାରେ ବ୍ୟବସ୍ଥିତ ହୋଇଛି ଯେ, ପ୍ରତ୍ୟେକ

ସଂଖ୍ୟାଲଘୁ ଗୋଷ୍ଠୀ ନିଜ ଭାଷାର ସଂରକ୍ଷଣ ଲାଗି ଅଧିକାର ଉପଭୋଗ କରିବେ ଏବଂ ଏଥିପାଇଁ ସ୍ୱତନ୍ତ୍ର ଶିକ୍ଷାନୁଷ୍ଠାନ ମଧ୍ୟ ପ୍ରତିଷ୍ଠା କରିପାରିବେ ।

ଶାସନ ବିଧାୟକ ସଭା ହିନ୍ଦୀକୁ ସରକାରୀ ଭାଷା ରୂପେ ଗ୍ରହଣ କଲା । ଏହି ସଭାରେ ମତ ଗ୍ରହଣଲାଗି ଭୋଟ ନିଆହେବାବେଳେ ଜଣେ ବା ଏକାଧିକ ଲୋକଙ୍କ ସମର୍ଥନ ଯୋଗୁଁ ହିନ୍ଦି ସରକାରୀ ଭାଷା ହେଲା କି ନାହିଁ, ସେ ବିଚାର ଅପାସଙ୍ଗିକ । ଯାହା ସମ୍ବିଧାନରେ ସ୍ୱୀକୃତ ହୋଇଛି, ତାହା ଦେଶବାସୀଙ୍କ ପକ୍ଷରେ ବାଧ୍ୟତାମୂଳକ ଭାବରେ ଗ୍ରାହ୍ୟ ଏବଂ ସରକାରୀ କର୍ତ୍ତାମାନେ ସମ୍ବିଧାନ ପ୍ରତି ଅନୁରକ୍ତ ରହିବେ ବୋଲି ଶପଥ ନେଇଥିବାରୁ ସେମାନେ ବୈଧାନିକ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବାଲାଗି ବାଧ୍ୟ କହିଲେ ଚଳେ । ଜନମତର ଚାପରେ ହୁଏତ ସମ୍ବିଧାନ ସଂଶୋଧିତ ହୋଇପାରେ; କିନ୍ତୁ ଯେପର୍ଯ୍ୟନ୍ତ ତାହା ନ ହୋଇଛି, ବୈଧାନିକ ବ୍ୟବସ୍ଥାକୁ ଏଡ଼ିଦେଇ ହେବ ନାହିଁ ।

ଭାରତରେ ଗୋଟିଏ ସରକାରୀ ଭାଷା ରହୁ—ଏହାର ଆବଶ୍ୟକତା କେହି ଅସ୍ୱୀକାର କରିବେ ନାହିଁ । ତେବେ ସମ୍ବିଧାନର ଅଷ୍ଟମ ପରିଶିଷ୍ଟରେ ୧୪ ଗୋଟି ଭାଷାର ନାମ ଲିପିବଦ୍ଧ କରିବାବେଳେ ସମ୍ବିଧାନର ପ୍ରଣେତାମାନେ ସାବଧାନ ହେବା ଆବଶ୍ୟକ ଥିଲା । ବର୍ତ୍ତମାନ କୁହାଯାଉଛି ଯେ, ହିନ୍ଦି ସରକାରୀ ଭାଷା ଏବଂ ଅନ୍ୟ ତେରଗୋଟି ଆଞ୍ଚଳିକ ଭାଷା । ଏହା କହିବା ବେଳେ ହିନ୍ଦିକୁ ଗୁରୁତ୍ୱ ଦିଆହୋଇ ଅନ୍ୟ ଭାଷାଗୁଡ଼ିକର ସମ୍ମାନ ଉପରେ ଆଘାତ କରାଯାଉଛି ବୋଲି ପ୍ରତିବାଦ ହେବାରୁ ପୁଣି କୁହାଯାଉଛି ଯେ, ଏହି ଚଉଦଗୋଟି ଭାଷା ଭାରତର ଜାତୀୟ ଭାଷା । ଏହା କହିବାବେଳେ ଭାରତରେ କୌଣସି ବିଜାତୀୟ ଭାଷା ଚଳୁଛି ବୋଲି ମନରେ ସଂଶୟ ଉପୁଜୁଛି । ଏହି ବିଜାତୀୟ ଭାଷା ବୋଧହୁଏ ଇଂରାଜୀ—ଯାହାକି ୧୯୫୦ ଜାନୁୟାରୀ ୨୬ ତାରିଖ ଠାରୁ ୧୯୬୫ ଜାନୁୟାରୀ ୨୫ ତାରିଖ ପର୍ଯ୍ୟନ୍ତ ଭାରତର ମୁଖ୍ୟ ସରକାରୀ ଭାଷା ହୋଇ ରହିଲା ଏବଂ ଭାରତୀୟ ସରକାରୀ ଭାଷା ଆଇନ୍ ଅନୁସାରେ ୧୯୬୫ ଜାନୁୟାରୀ ୨୬ ତାରିଖଠାରୁ ୧୯୭୫ ଜାନୁୟାରୀ ୨୫ ତାରିଖ ପର୍ଯ୍ୟନ୍ତ ଏହା ସହଯୋଗୀ ସରକାରୀ ଭାଷାରୂପେ ରହିବ । ୧୯୭୫ ଜାନୁୟାରୀ ୨୬ ତାରିଖ ଦିନ ସରକାର ବିଚାର କରିବେ, ତେଣିକି ଇଂରାଜୀ ଭାଷାର ଚଳଣି ରହିବ କି ନାହିଁ । ୧୯୬୩ର ସରକାରୀ ଭାଷା ଆଇନ୍ ପ୍ରଣୟନ ବେଳେ ଦକ୍ଷିଣୀ ଲୋକେ ପ୍ରତିବାଦ କରିଥିଲେ—ଯାହା ଫଳରେ ପ୍ରଧାନମନ୍ତ୍ରୀ ନେହେରୁ ପ୍ରତିଶ୍ରୁତି ଦେଇଥିଲେ ଯେ; ହିନ୍ଦି ଭିନ୍ନ ଅନ୍ୟ ଭାଷାଭାଷୀ ରାଜ୍ୟର ଲୋକେ ହିନ୍ଦିକୁ ଗ୍ରହଣ କରିବା ପର୍ଯ୍ୟନ୍ତ ଇଂରେଜୀ ଭାଷା ଚାଲୁ ରହିବ । ନେହେରୁଙ୍କର ଏହି ପ୍ରତିଶ୍ରୁତି ଭାରତୀୟ ଜାତୀୟ ଜୀବନକୁ ଯେତିକି ସବଳ କଲା, ସେତିକି ଦୁର୍ବଳ ମଧ୍ୟ କଲା । ଏକ ପକ୍ଷରେ ଦକ୍ଷିଣୀ ରାଜ୍ୟମାନଙ୍କର କ୍ଷୋଭର କାରଣ ଦୂର ହୋଇଗଲା, ଅପର ପକ୍ଷରେ ନେହେରୁଙ୍କ

ପ୍ରତିଶ୍ରୁତି ତାଙ୍କ ଅନ୍ତେ ଆଇନାନୁମୋଦିତ ନ ହେବା ପର୍ଯ୍ୟନ୍ତ ପୁନର୍ବିକ୍ଷୋଭ ସୃଷ୍ଟି ହେବାଲାଗି ବାଟ ଫିଟିଗଲା । ଫଳରେ ୧୯୬୫ ଜାନୁୟାରୀ ୨୬ ତାରିଖ ପରେ ଦକ୍ଷିଣୀ ରାଜ୍ୟମାନେ ବିଚଳିତ ହୋଇ ବିକ୍ଷୋଭ ଆରମ୍ଭ କରିଦେଲେ । ସେମାନଙ୍କ ଦାବୀ ହେଲା ଯେ, ନେହେରୁଙ୍କ ପ୍ରତିଶ୍ରୁତି ଅନୁସାରେ ସମ୍ବିଧାନ ସଂଶୋଧିତ ହେଉ ଏବଂ ହିନ୍ଦି ଭିନ୍ନ ଅନ୍ୟ ଭାଷାଭାଷୀ ରାଜ୍ୟମାନେ ନିଜ ବିଧାନମଣ୍ଡଳରେ ହିନ୍ଦିକୁ ସରକାରୀ ଭାଷା ରୂପେ ଗ୍ରହଣ କରି ପ୍ରସ୍ତାବ କରିବା ପର୍ଯ୍ୟନ୍ତ ଇଂରେଜୀ ଭାଷା ଚାଲୁ ରହିବା ଲାଗି ବୈଧାନିକ ବା ଆଇନଗତ ବ୍ୟବସ୍ଥା ହେଉ । ଦକ୍ଷିଣୀ ରାଜ୍ୟମାନଙ୍କ ଦାବୀକୁ ବିଜାତୀୟ ବୋଲି ଚିତ୍ରଣ କରିବା ବାହାନାରେ ବୋଧହୁଏ ଏବେ ଅଷ୍ଟମ ପରିଶିଷ୍ଟରେ ଲିପିବଦ୍ଧ ୧୪ ଗୋଟି ଭାଷାକୁ ଜାତୀୟ ଭାଷା ବୋଲି କୁହାଯାଉଛି । ଆମ ସମ୍ବିଧାନ ଆଂଗ୍ଲୋ-ଇଣ୍ଡିୟାନ୍‌ମାନଙ୍କୁ ୩୬୬ ଧାରାରେ ସ୍ୱୀକୃତି ଦେଇଛି । ଏପରି କି ସେମାନେ ସଂଖ୍ୟାଲଘୁ ଗୋଷ୍ଠୀ ହୋଇଥିବାରୁ କାଳେ ଲୋକସଭାକୁ ନିର୍ବାଚିତ ହୋଇ ନ ପାରିବେ, ସେଥିପାଇଁ ଅନ୍ୟୂନ ଦୁଇ ଜଣ ଆଂଗ୍ଲୋ-ଇଣ୍ଡିୟାନ୍ ପ୍ରତିନିଧିଙ୍କୁ ଲୋକସଭାକୁ ମନୋନୟନ କରିବା କ୍ଷମତା ରାଷ୍ଟ୍ରପତିଙ୍କୁ ଦିଆଯାଇଛି । ଆଂଗ୍ଲୋ-ଇଣ୍ଡିୟାନ୍ କହିଲେ ବାପ ୟୁରୋପୀୟ ଓ ମା ଭାରତୀୟ ଥିବା ସନ୍ତାନଙ୍କୁ ବୁଝାଏ । ବାପା ଭାରତୀୟ ହୋଇଥିଲେ ଓ ମା ୟୁରୋପୀୟ ହୋଇଥିଲେ ମିଳ ଆଂଗ୍ଲୋ-ଇଣ୍ଡିୟାନ ହୁଏ ନାହିଁ । ଏହି ଆଂଗ୍ଲୋ-ଇଣ୍ଡିୟାନ-ମାନଙ୍କର ପିତୃଭାଷା ହେଲା ଇଂରାଜୀ । ଅଷ୍ଟମ ପରିଶିଷ୍ଟରେ ଇଂରେଜୀକୁ ସ୍ଥାନ ଦେଇଥିଲେ ଭଲ ହୋଇଥାନ୍ତା । ତଥାପି ଇଂରେଜୀକୁ ବିଜାତୀୟ ଭାଷା କହିବା ଦ୍ୱାରା ଭାରତର ଆଂଗ୍ଲୋ-ଇଣ୍ଡିୟାନମାନଙ୍କୁ ବିଜାତୀୟ କୁହାଯାଉଛି ବୋଲି ଗତକେତେଦିନ ତଳେ ଉତ୍ତର ରେଲବାଇର ଜଣେ ଉଚ୍ଚ ଆଂଗ୍ଲୋ -ଇଣ୍ଡିୟାନ୍ କର୍ତ୍ତା କ୍ଷୋଭ ପ୍ରକାଶ କରୁଥିଲେ । ତେବେ କଂଗ୍ରେସ କାର୍ଯ୍ୟକାରିଣୀ ସମିତି ପ୍ରସ୍ତାବ ଗ୍ରହଣ କରି ଭାରତ ସରକାରଙ୍କୁ ସୁପାରିସ୍ କରିଛନ୍ତି ଯେ, ହିନ୍ଦି ସହିତ ଇଂରେଜୀକୁ ଅନିର୍ଦ୍ଦିଷ୍ଟ କାଳପର୍ଯ୍ୟନ୍ତ ସରକାରୀ ଭାଷା ରୂପେ ଚାଲୁ ରଖାଯାଉ । ଏହା ଏକପ୍ରକାର ସନ୍ତୋଷଜନକ ନିଷ୍ପତ୍ତି ।

ଆମେ ହିନ୍ଦି ଭିନ୍ନ ଅନ୍ୟ ଭାଷାଭାଷୀ ଲୋକେ ହିନ୍ଦିକୁ ଅସ୍ୱୀକାର କରୁ ନାହୁଁ । କିନ୍ତୁ ତତ୍‌ସଙ୍ଗେ ହିନ୍ଦିଭାଷୀ ଲୋକେ ଆମ ଭାଷା ପ୍ରତି ସମ୍ମାନଶୀଳ ମନୋବୃତ୍ତି ପ୍ରଦର୍ଶନ କରିବା ଉଚିତ । ସମ୍ବିଧାନର ୩୫୧ ଧାରା ଅନୁସାରେ ଗୋଟିଏ କେନ୍ଦ୍ରୀୟ ହିନ୍ଦି ନିର୍ଦ୍ଦେଶନାଳୟ ଗଠିତ ହୋଇ ପାରିଭାଷିକ ଶବ୍ଦ ତିଆରି ହେଉଛି । ଏହି ପାରିଭାଷିକ ଶବ୍ଦଗୁଡିକ ସମଗ୍ର ଭାରତରେ ପ୍ରଚଳିତ ହେବ ଏବଂ ରାଷ୍ଟ୍ରପତି ଅନୁଜ୍ଞାବଳରେ ଏହି ପରିଭାଷାର ବ୍ୟବହାର କରାଇବେ । ସମ୍ବିଧାନ ସ୍ପଷ୍ଟ ନିର୍ଦ୍ଦେଶ ଦେଇଛି ଯେ, ହିନ୍ଦିରେ ପାରିଭାଷିକ ଶବ୍ଦ ସୃଷ୍ଟି କରିବାବେଳେ ହିନ୍ଦୁସ୍ଥାନୀ ଓ ଅନ୍ୟ ତେରଗୋଟି ଭାଷାରେ ପ୍ରଚଳିତ ରୀତି, ଶୈଳୀ ଓ ଶବ୍ଦକୁ ଗ୍ରହଣ କରି ହିନ୍ଦିକୁ ପରିପୁଷ୍ଟ କରିବାକୁ ହେବ ।

କିନ୍ତୁ ବ୍ୟକ୍ତିଗତ ଅଭିଜ୍ଞତାରୁ କହେ ଯେ, କଣ୍ଠିସ୍ଥ ଭାଷାବିତ୍‌ମାନଙ୍କ ଅନୁମୋଦନ ସତ୍ତ୍ୱେ ଅନେକ ହିନ୍ଦୀଭାଷୀ ପଣ୍ଡିତ ବହୁଳ ଭାବରେ ପ୍ରଚଳିତ ପରିଭାଷାକୁ ହିନ୍ଦୀରେ ସାମିଲ କରିନେବାକୁ ପ୍ରସ୍ତୁତ ନୁହନ୍ତି । ଏହା ଫଳରେ କ୍ରମେ ଭାରତରେ ଭାଷାଗତ ଜଟିଳତା ସୃଷ୍ଟି ହୋଇପାରେ । ଓଡ଼ିଆ ଭାଷାରେ ଲିଖିତ ପୁସ୍ତକଗୁଡ଼ିକ ହିନ୍ଦୀଭାଷୀ ପଣ୍ଡିତମାନେ ବୁଝିପାରିବେ ନାହିଁ କିମ୍ବା ସମଗ୍ର ଭାରତ ପାଇଁ ନୂତନ ପରିଭାଷା ପ୍ରଚଳିତ ହେଲେ ଓଡ଼ିଆ ଲୋକେ ଓଡ଼ିଆ ଭାଷାରେ ଲିଖିତ ପୁସ୍ତକକୁ ମଧ୍ୟ ବୁଝିପାରିବେ ନାହିଁ । କାରଣ ପ୍ରସ୍ତୁତ ପରିଭାଷା ଓଡ଼ିଶାରେ ପ୍ରଚଳିତ ପରିଭାଷାଠାରୁ ଭିନ୍ନ ହୋଇପାରେ । ଉଦାହରଣ ସ୍ୱରୂପ, Nation ଶବ୍ଦର ଓଡ଼ିଆ ପରିଭାଷା ହେଉଛି 'ଜାତି'; କିନ୍ତୁ ପ୍ରସ୍ତୁତ ପରିଭାଷା ହେଲା 'ରାଷ୍ଟ୍ର'—ଯାହା କି ଓଡ଼ିଆରେ State ଶବ୍ଦର ପରିଭାଷା । ଓଡ଼ିଆଲୋକେ Democracy କୁ 'ଗଣତନ୍ତ୍ର' ଓ Republicକୁ 'ପ୍ରଜାତନ୍ତ୍ର' କହନ୍ତି । କିନ୍ତୁ ନିଖିଳ ଭାରତୀୟ ପରିଭାଷାରେ Democracy ହେଲା 'ଲୋକତନ୍ତ୍ର' Republic ହେଲା 'ଗଣତନ୍ତ୍ର' । ଏହିଭଳି ପରିଭାଷା ସୃଷ୍ଟି ହୋଇଗଲେ ଓ ସେଗୁଡ଼ିକୁ ଗ୍ରହଣ କରିବାଲାଗି ପରେ ଆମକୁ ବାଧ୍ୟ କରାଗଲେ ଆମ ଭାଷା ଆମ ପକ୍ଷରେ ଅବୋଧ ହୋଇଯିବ । ମୋର ମନେହୁଏ, ଓଡ଼ିଆ ଭାଷାକୁ ସଜୀବ କରି ରଖିବା ଲାଗି ଓଡ଼ିଶା ସରକାର ଗୋଟିଏ ଓଡ଼ିଆ ଭାଷା ଡିରେକ୍‌ଟୋରେଟ ସୃଷ୍ଟି କରନ୍ତୁ ଏବଂ ଆମେ ଆମର ପରିଭାଷା ତିଆରି କରି Central Hindi Directorate ର ପରିଭାଷା ସହିତ ଯୋଗ କରାଉଁ । ତାହାହେଲେ ଚୂଡ଼ାନ୍ତ ପରିଭାଷା ସୃଷ୍ଟି ହେଲାବେଳେ ଭାରତ ସରକାର ନିମ୍ନଲିଖିତ ରୂପେ ଆଦେଶ ଦେବେ—

Nation—ଜାତି (for Orissa, West Bengal or Assam); ରାଷ୍ଟ୍ର (for Bihar, U. P. etc.)

ଯେ କୌଣସି ରାଷ୍ଟ୍ରସଙ୍ଘରେ ବିଶେଷତଃ ବହୁ ଭାଷାଭାଷୀ ଦେଶରେ ଏହି ଧରଣର ପରିଭାଷା ସୃଷ୍ଟି ନ ହେଲେ ଆଞ୍ଚଳିକ ଭାଷାଗୁଡ଼ିକ କ୍ଲୀବ ହୋଇଯିବେ । ଯେଉଁମାନେ ଓଡ଼ିଆ ଭାଷା ସମ୍ପର୍କରେ ଦାବି ଉଠାଉଛନ୍ତି, ସେମାନେ ଜାଣିରଖନ୍ତୁ ଯେ, ସରକାରୀ ସହଯୋଗରେ ଭାଷା ସୃଷ୍ଟି କରିବା ଉଦ୍ୟମ ଆଜିଠାରୁ ଆରମ୍ଭ ନ ହେଲେ ପାଞ୍ଚବର୍ଷ ପରେ ଓଡ଼ିଆ ଲିପି ରହିପାରେ; କିନ୍ତୁ ଭାଷା ରହିବ ନାହିଁ । ଆମକୁ ଜଳଜଳ ଦେଖା ଯାଉଛି ଯେ, ଭାରତୀୟ ଐକ୍ୟ ଦୃଷ୍ଟିରୁ ପରବର୍ତ୍ତୀ ଆନ୍ଦୋଳନ ହୋଇପାରେ ଯେ, ସବୁ ଭାଷା ଦେବନାଗରୀ ଲିପିରେ ଲେଖାଯାଉ ବା ରୋମକ ଲିପିରେ ଲେଖାଯାଉ । ଏହା ହୋଇଗଲେ ଆମ ଲିପି ଓ ଆମ ଶବ୍ଦ ଲୋପ ପାଇଯିବ—କେବଳ କ୍ରିୟାଗୁଡ଼ିକ ରହିବ ।

ଭାଷା ଦୃଷ୍ଟିରୁ ଆଞ୍ଚଳିକତା ସୃଷ୍ଟି ହେବାର ଆଶଙ୍କା ରହିଛି । ଇଂରେଜୀ ଏ ଦେଶରେ ଜାତୀୟତା ସୃଷ୍ଟି କରିବାରେ ସାହାଯ୍ୟ କରିଥିଲା; କାରଣ ଭାଷାଗତ

ଆଞ୍ଚଳିକତା ଇଂରାଜୀ ଭାଷାର ଜାତୀୟତା ଦ୍ୱାରା ଢାଙ୍କି ହୋଇ ଯାଇଥିଲା । ହିନ୍ଦି ସରକାରୀ ଭାଷା ହୋଇପାରେ; କିନ୍ତୁ ଏହା ଯେ ଗୋଟିଏ ଆଞ୍ଚଳିକ ଭାଷା, ଏହାକୁ ଅସ୍ୱୀକାର କରିହେବ ନାହିଁ । ତେଣୁ ଅନ୍ୟାନ୍ୟ ଆଞ୍ଚଳିକ ଭାଷାଗୁଡ଼ିକ ହିନ୍ଦି ପ୍ରତି ଅସହନଶୀଳ ହେବା ସ୍ୱାଭାବିକ । ଗଳିତ ବର୍ଷ ଜାନୁୟାରୀରୁ ମାର୍ଚ୍ଚ ପର୍ଯ୍ୟନ୍ତ ଯେଉଁ ଭାଷାଗତ ଜନବିକ୍ଷୋଭ ଦକ୍ଷିଣ ଭାରତରେ ଦେଖାଯାଇଥିଲା, ତାହା ଏହି ଅସହନଶୀଳତାର ବହିଃପ୍ରକାଶ ମାତ୍ର । ଏହି ଜନବିକ୍ଷୋଭ ଫଳରେ କେନ୍ଦ୍ର ସରକାର ତଥା ଜାତୀୟ ଅନୁଷ୍ଠାନ କଂଗ୍ରେସ ବିଚଳିତ ହୋଇପଡ଼ିବା ସ୍ୱାଭାବିକ । ତେଣୁ ଜାତୀୟତାକୁ ଅକ୍ଷୁଣ୍ଣ ରଖିବା ଲାଗି କଂଗ୍ରେସ କାର୍ଯ୍ୟକାରିଣୀ ସମିତି ଗତ ମଇ ମାସରେ ଭାରତ ସରକାରଙ୍କୁ ସୁପାରିଶ କରିଛନ୍ତି ଯେ, ଭାଷାସମସ୍ୟାର ତୁରନ୍ତ ସମାଧାନ କରାଯାଉ । ତାଙ୍କ ସୁପାରିଶରେ ତିନି ଗୋଟି ଉପାଦାନ ରହିଛି; ଯଥା:— (କ) ସଙ୍ଘ-ସେବାଯୋଗ (UPSC) ଯେଉଁସବୁ ପରୀକ୍ଷା କରୁଛନ୍ତି, ତାହା ଇଂରେଜୀ, ହିନ୍ଦି ଓ ଅନ୍ୟ ୧୩ଗୋଟି ଆଞ୍ଚଳିକ ଭାଷାରେ କରାଯାଉ । ପ୍ରକାଶ ଥାଉ କି, ଏହି ତେରଗୋଟି ଭାଷା ମଧ୍ୟରେ ସଂସ୍କୃତ ମଧ୍ୟ ଅନ୍ତର୍ଗତ । (ଖ) ପ୍ରତ୍ୟେକ ରାଜ୍ୟରେ ତ୍ରିଭାଷୀ-ନୀତି ଅନୁସୃତ ହେଉ ଏବଂ ଏହା ବିଶ୍ୱବିଦ୍ୟାଳୟ ସ୍ତରରେ ମଧ୍ୟ ପ୍ରଯୁକ୍ତ ହେଉ । ଏହି ତ୍ରିଭାଷୀନୀତି ହେଲା ଇଂରାଜୀ, ହିନ୍ଦି ଓ ଆଞ୍ଚଳିକ ଭାଷା । (ଗ) ଆଞ୍ଚଳିକ ଭାଷାକୁ ଯଥାଶୀଘ୍ର ରାଜ୍ୟର ସରକାରୀ ଭାଷା ଓ ବିଶ୍ୱବିଦ୍ୟାଳୟ ଶିକ୍ଷାର ମାଧ୍ୟମ କରିବା ଲାଗି ଉଦ୍ୟମ ହେଉ । କଂଗ୍ରେସ କାର୍ଯ୍ୟକାରିଣୀ ସମିତିର ଏହି ପ୍ରସ୍ତାବର ପରିଣତି ସୁଦୂରପ୍ରସାରୀ ଏବଂ ଦେଶରେ ଏହା ମିଶ୍ରିତ ପ୍ରତିକ୍ରିୟା ସୃଷ୍ଟି କରିଛି । ତଥାପି କେନ୍ଦ୍ର ସରକାରଙ୍କର କେତେ ଜଣ ଉଚ୍ଚ ନେତା ଓ ଜାତୀୟ ସ୍ତରର ଅନ୍ୟ କେତେକ ରାଜନୈତିକ ନେତାଙ୍କ ଉପସ୍ଥିତିରେ ଏହି ପ୍ରସ୍ତାବ ଗୃହୀତ ହୋଇଥିବା ବେଳେ ଆଶା କରାଯାଏ ଯେ, ସମସ୍ୟାର ପ୍ରତ୍ୟେକ ଦିଗ ଆଲୋଚିତ ହୋଇଥିବ । ତାହା ନ ହୋଇଥିଲେ, ଏହାକୁ ଦୁର୍ଭାଗ୍ୟର କଥା କହିବାକୁ ହେବ ।

ଉକ୍ତ ସୁପାରିଶଗୁଡ଼ିକରୁ ପ୍ରଥମଟି ବିଶେଷ ପ୍ରଣିଧାନଯୋଗ୍ୟ । କାରଣ ପଣ୍ଡିତ ନେହେରୁଙ୍କ ଇଙ୍ଗିତରେ ଯେଉଁ ଜାତୀୟ ଏକୀକରଣ ଯୋଜନା କାର୍ଯ୍ୟକାରୀ ହେଉଥିଲା, ତାହାକୁ ଏହି ପ୍ରସ୍ତାବ କିମିଷକେ ପଣ୍ଡ କରି ଦେଲା । ଯଦି ସଂସ୍କୃତ ସମେତ ୧୫ ଗୋଟି ଭାଷାରେ ପ୍ରତିଦ୍ୱନ୍ଦିତାମୂଳକ ପରୀକ୍ଷା କରାଯାଏ, ଏ ପରୀକ୍ଷା ହେବାର ଯଥାର୍ଥତା କେଉଁଠି ଏବଂ ଏହାକୁ ନିଖିଳ ଭାରତୀୟ ପରୀକ୍ଷା କୁହାଯିବାର ତାତ୍ପର୍ଯ୍ୟ କଣ ? ଠିକ୍ ସେହିପରି I. A. S., I. P. S. ଇତ୍ୟାଦି ନିଖିଳ ଭାରତ ସେବକ ସଂସ୍ଥା ସୃଷ୍ଟିର ଯଥାର୍ଥତା କେଉଁଠି ? ଭାରତରେ କେବଳ ଯେ ବିଭିନ୍ନ ଭାଷା ଅଛି, ସେତିକି ନୁହେଁ; ବିଭିନ୍ନ ଲିପି ମଧ୍ୟ ରହିଛି । ଜଣେ ଶିକ୍ଷାବିତ୍ ଖୁବ୍ ବେଶୀ ଦୁଇ ବା ତିନୋଟି ଲିପିରେ ଲିଖିତ ଉତ୍ତର ପତ୍ର ପରୀକ୍ଷା କରିପାରେ । ପନ୍ଦରଗୋଟି ଲିପି

ଜାଣିବା ଲୋକ ପାଇବା ସହଜ ନୁହେଁ । ପୁଣି ସଂସ୍କୃତ ଭାଷାରେ ଲିଖିତ ପଦାର୍ଥ-ବିଦ୍ୟା, ଗଣିତଶାସ୍ତ୍ର ଓ ଅର୍ଥଶାସ୍ତ୍ର ଇତ୍ୟାଦି ପରୀକ୍ଷା କରିବା ସହଜ ନୁହେଁ । ପୁନଶ୍ଚ ନିଖିଳ ଭାରତ ସ୍ତରରେ ମୂଲ୍ୟାୟନର ସମତା ମଧ୍ୟ ରକ୍ଷା କରିହେବ ନାହିଁ । ଆଞ୍ଚଳିକତା ମୂଲ୍ୟାୟନ ସ୍ତରରେ ଏତେ ଦୂର ପ୍ରତିଫଳିତ ହେବ ଯେ, ଯୋଗ୍ୟତା ଉପାଦାନଟି ଏକାବେଳକେ ଲୋପ ପାଇଯିବ । ତେବେ କଂଗ୍ରେସ କାର୍ଯ୍ୟକାରିଣୀ ସମିତି ଭଳି ଅତି ଉଚ୍ଚସ୍ତରୀୟ ଅନୁଷ୍ଠାନ ଯେତେବେଳେ ଏହି ପ୍ରସ୍ତାବଟି ଗ୍ରହଣ କରିଛନ୍ତି, ଏହାକୁ ସହଜରେ ଅବହେଳା କରି ହେବ ନାହିଁ । ଏହା ଅପେକ୍ଷା ଆହୁରି ଗୋଟିଏ ସହଜ ଉପାୟ ଅଛି—ଯାହାର ଉପାଦେୟତା ଏହି ସମିତି ବୋଧହୁଏ ଆଲୋଚନା କରି ନାହାନ୍ତି । ତାହା ହେଉଛି, U. P. S. C. କୁ ଏକାବେଳକେ ଉଠାଇ ଦିଆଯାଉ ଏବଂ ନିଖିଳ ଭାରତ ପ୍ରତିଯୋଗିତା ପରୀକ୍ଷା ବନ୍ଦ କରି ଦିଆଯାଉ । ପ୍ରତ୍ୟେକ ରାଜ୍ୟରେ ଗୋଟିଏ ଗୋଟିଏ ରାଜ୍ୟ ସେବାଯୋଗ ଅଛି । ସେମାନେ ପରୀକ୍ଷା ପରିଚାଳନା କରି ପ୍ରାର୍ଥୀ ବାଛନ୍ତୁ । ପ୍ରାର୍ଥୀମାନଙ୍କ ମଧ୍ୟରୁ ଯେଉଁମାନେ ଶତକଡ଼ା ୬୦ ବା ଅନ୍ୟ କୌଣସି ନିର୍ଦ୍ଦିଷ୍ଟ ହାରରେ ନମ୍ବର ରଖିବେ, ସେମାନଙ୍କୁ I. A. S. ରେ, ସେମାନଙ୍କ ତଳ ପ୍ରାର୍ଥୀମାନଙ୍କୁ I. P. S ଓ କେନ୍ଦ୍ର ସର୍ଭିସରେ ଏବଂ ଶତକଡ଼ା ୫୫ ରୁ ୪୫ ନମ୍ବର ରଖିଥିବା ପ୍ରାର୍ଥୀମାନଙ୍କୁ ରାଜ୍ୟ ଚାକିରୀରେ ନିଆଯାଉ । ଏହାହେଲେ ଯୋଗ୍ୟତା ରଖାଯାଇ ପାରିବ, ଅସ୍ୱାସ୍ଥ୍ୟକର ଆଞ୍ଚଳିକ ପ୍ରତିଦ୍ୱନ୍ଦ୍ୱିତା ହେବ ନାହିଁ ଏବଂ କେନ୍ଦ୍ର ସରକାର ଏକ ଅସ୍ୱାବନୀୟ ପରିସ୍ଥିତିରୁ ରକ୍ଷା ପାଇଯିବେ । ଯାହା କହନ୍ତି, "ଏ ତ ବଡ଼ ଲୋକଙ୍କର ମତ, ଅଳପ ଲୋକେ ବିପରୀତ ।"

ପରିଶେଷରେ ଭାରତୀୟ ରାଜନୀତିରେ ବାସ୍ତବତା ପ୍ରତିଫଳିତ ହେଉ ବୋଲି ଯେ କୌଣସି ଦେଶହିତୈଷୀ ଲୋକ କାମନା କରିବ । ଭାଷାଭିତ୍ତିରେ ରାଜ୍ୟ ପୁନର୍ଗଠିତ ହେଲା; ପ୍ରତ୍ୟେକ ଭାଷାକୁ ସମ୍ବିଧାନରେ ସ୍ୱୀକୃତି ମିଳିଲା; ରାଜ୍ୟ ସ୍ତରରେ ଆଂଚଳିକ ଭାଷା ସରକାରୀ ଭାଷା ଓ ବିଶ୍ୱବିଦ୍ୟାଳୟରେ ଶିକ୍ଷାର ମାଧ୍ୟମ ରୂପେ ଚଳିବ ବୋଲି ବ୍ୟବସ୍ଥା ହେଲା । ଏହା ସତ୍ତ୍ୱେ ଜାତୀୟ ଐକ୍ୟ ପ୍ରତିଷ୍ଠିତ ହେଉ ବୋଲି ନେତୃବୃନ୍ଦ ବଜ୍ରଗମ୍ଭୀର ସ୍ୱରରେ ଉଦ୍‌ବୋଧନ ଦେବାକୁ କୁଣ୍ଠାବୋଧ କରୁ ନାହାନ୍ତି । ସୁଇଜରଲ୍ୟାଣ୍ଡ ବା ରୁଷିଆର ଦୃଷ୍ଟାନ୍ତ ଭାରତରେ ଗ୍ରହଣୀୟ ନୁହେଁ । ସୁଇଜରଲ୍ୟାଣ୍ଡ ଭାରତର ଯେ କୌଣସି ରାଜ୍ୟଠାରୁ କ୍ଷୁଦ୍ରତର । ରୁଷିଆରେ ସାମ୍ୟବାଦ ଯୋଗୁ ଆଦର୍ଶଗତ ଐକ୍ୟ ରହିଛି—ଯାହା କି ଅନ୍ୟ ସବୁ ବିଭାଜକ ଉପାଦାନଗୁଡ଼ିକୁ ନିୟନ୍ତ୍ରଣ କରୁଛି । ଭାରତର ଐତିହ୍ୟ ଓ ପରିସ୍ଥିତି ଭିନ୍ନ । ତେଣୁ ଭାଷା ଯୋଗୁ ଆଞ୍ଚଳିକତା ସୃଷ୍ଟି ହେବା ସ୍ୱାଭାବିକ ଏବଂ ଜାତୀୟ ସ୍ତରରେ ଯେଉଁ ପ୍ରକାର ଭାଷାନୀତି ନିର୍ଦ୍ଧାରିତ ହେଉଛି, ତାହା ବାସ୍ତବତା ଅଭିମୁଖୀ ହେବା ପରି ମନେହେଉ ନାହିଁ । ଯଦି ଆମ

ଜାତୀୟପ୍ରୀତି ସବଳ ନ ହୁଏ, ତେବେ ପ୍ରୋତ୍ସାହିତ ଆଞ୍ଚଳିକତା ଭାରତକୁ ଖଣ୍ଡ ଖଣ୍ଡ କରିଦେବ । ରାଜନୈତିକ ଐକ୍ୟ ବିପନ୍ନ ହୋଇଗଲାଣି । ଏହା ସାଙ୍ଗକୁ ଭାଷାଗତ ଅନୈକ୍ୟ ଭାବାବେଗ ସୃଷ୍ଟି କଲେ ଆମର ଜାତୀୟ ସଂହତିର ସମ୍ପୂର୍ଣ୍ଣ ବିଲୀନ ହେବାର ଆଶଙ୍କା ରହୁଛି । ଏତିକିବେଳେ ଗୋପବନ୍ଧୁଙ୍କ ସ୍ମୃତି ଆମର ପଥପ୍ରଦର୍ଶକ ହେଉ— ଏହାହିଁ କାମନା ।

---

# ସଂକ୍ଷିପ୍ତ ସୂଚନା

## ସଭ୍ୟତା ଓ ବିଜ୍ଞାନ

ଲେଖକ ଡକ୍ଟର ଶ୍ରୀ ବଂଶୀଧର ସାମନ୍ତରାୟଙ୍କର ଜନ୍ମ ୧୯୧୨ ମସିହାରେ । ଲେଖକ କଲେଜ ଛାତ୍ରାବସ୍ଥାରୁ ବିଜ୍ଞାନ ସମ୍ପର୍କୀୟ ବହୁ ଉପାଦେୟ ପ୍ରବନ୍ଧ ଲେଖି ପାଠକ ପାଠିକାମାନଙ୍କର ଦୃଷ୍ଟି ଆକର୍ଷଣ କରିଥିବାର ଜଣାଯାଏ । ବିଶେଷତଃ ତାଙ୍କ ପ୍ରବନ୍ଧ ସମୂହର ଚିନ୍ତାତ୍ମକତା, ପ୍ରସଙ୍ଗୋପଯୋଗିତା ଉତ୍କଳ ସାହିତ୍ୟର ସମ୍ପାଦକ ବିଶ୍ୱନାଥ କର ଏବଂ ସହକାର, ଜହ୍ନମାମୁର ସମ୍ପାଦକ ବାଳକୃଷ୍ଣ କରଙ୍କର ଶ୍ରଦ୍ଧା ଭାଜନ ହୋଇ ପାରିଥିଲେ । ଉଦ୍ଭିଦ ବିଜ୍ଞାନ ସମ୍ପର୍କୀୟ ତଥ୍ୟପୂର୍ଣ୍ଣ ବହୁ ପ୍ରବନ୍ଧ ଉତ୍କଳ ସାହିତ୍ୟ, ସହକାର ପ୍ରଭୃତି ପ୍ରତିଷ୍ଠିତ ପତ୍ରିକାମାନଙ୍କରେ ଧାରାବାହିକ ଭାବରେ ପ୍ରକାଶିତ ହେଉଥିଲା । ଓଡ଼ିଆ ଶିଶୁସାହିତ୍ୟକୁ ଲେଖକଙ୍କର ଦାନ କିଛି କମ୍ ନୁହେଁ । ଏକମାତ୍ର ଶିଶୁପ୍ରିୟ 'ଜହ୍ନମାମୁ' ପତ୍ରିକାର ସେ ଜଣେ ବିଶିଷ୍ଟ ଲେଖକ ଥିଲେ । ତାଙ୍କର ବିଭିନ୍ନ କବିତା, ଗଳ୍ପ, ରଚନା ଶିଶୁମାନଙ୍କୁ ଆକୃଷ୍ଟ କରିପାରିଥିଲା ।

ବିଦେଶରୁ ବିଜ୍ଞାନରେ ସର୍ବୋଚ୍ଚ ଡିଗ୍ରୀ ଲାଭକରି ରେଭେନ୍ସା କଲେଜରେ ଅଧ୍ୟାପକ ଓ ପରେ ଅଧ୍ୟକ୍ଷ ଥିଲେ । ବର୍ତ୍ତମାନ ଶିକ୍ଷାବିଭାଗର ଡିରେକ୍ଟର ।

ଆଲୋଚ୍ୟ ପ୍ରବନ୍ଧରେ ପ୍ରାବନ୍ଧିକ, 'ସଭ୍ୟତା' ର ଗୁଣାତ୍ମକ ବୈଶିଷ୍ଟ୍ୟ ସମ୍ପର୍କରେ ଆଲୋଚନା କରି ବିଜ୍ଞାନ ସହିତ ସଭ୍ୟତାର କି ସମ୍ପର୍କ ତାହାର ତୁଳନାତ୍ମକ ଅଧ୍ୟୟନ କରିଛନ୍ତି । ଆଧୁନିକ ସଭ୍ୟତାର ସ୍ୱରୂପ କଣ ତାହାର ଏକ ସ୍ପଷ୍ଟ ଚିତ୍ର ଆଲୋଚ୍ୟ ପ୍ରବନ୍ଧରେ ପ୍ରଦତ୍ତ । ସଭ୍ୟତା ଏବଂ ବିଜ୍ଞାନ ମଧ୍ୟରେ ଏକ ଅବିଚ୍ଛେଦ୍ୟ ସମ୍ପର୍କ ଅଛି । ଏହା ହିଁ ପ୍ରବନ୍ଧରେ ପ୍ରଦର୍ଶିତ । 'ସଭ୍ୟତା' ବରାବର ବିଜ୍ଞାନର ପଥପ୍ରଦର୍ଶକ ବୋଲି ପ୍ରାବନ୍ଧିକଙ୍କର ଯୁକ୍ତି । ବିଜ୍ଞାନର ସଦ୍‌ବ୍ୟବହାର କରି ତାହାକୁ ସଭ୍ୟତାର ଅନୁଗାମୀ କରିବା ପ୍ରତ୍ୟେକଙ୍କର କର୍ତ୍ତବ୍ୟ ।

---

## ବିଶ୍ୱରୂପ ଦର୍ଶନ

୧୯୦୧ ମସିହାରେ ପ୍ରସିଦ୍ଧ ଔପନ୍ୟାସିକ ଏବଂ ପ୍ରାବନ୍ଧିକ ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀଙ୍କର ଜନ୍ମ । କବିତା, ଗଳ୍ପ, ଉପନ୍ୟାସ , ପ୍ରବନ୍ଧ ଆଦି ସାହିତ୍ୟର ପ୍ରତ୍ୟେକ ଶାଖାରେ ତାଙ୍କର ଅସାଧାରଣ କୃତିତ୍ୱ ପାଠକମାନଙ୍କୁ ଆକୃଷ୍ଟ କରିଥାଏ । ଲେଖକଙ୍କ

କଲେଜରେ ଅଧ୍ୟୟନ କରିବା ସମୟରୁ ହିଁ ବିଭିନ୍ନ ରଚନା ଲେଖି ତାଙ୍କର ଦକ୍ଷ ହସ୍ତତାର ପ୍ରମାଣ ଦେଇଥିଲେ । ଉତ୍କଳର ଗ୍ରାମ୍ୟଜୀବନର ନିଖୁଣ ଓ ନିପୁଣ ଚିତ୍ର ତାଙ୍କର ପ୍ରସିଦ୍ଧ ଉପନ୍ୟାସ 'ମାଟିର ମଣିଷ'ରେ ପ୍ରତିଫଳିତ । ତାଙ୍କର କ୍ଷୁଦ୍ର ଗଳ୍ପଗୁଡ଼ିକ ମାନବିକ ଆଲେଖ୍ୟରେ ପରିପୂର୍ଣ୍ଣ । ସାଗରିକା, ଦ୍ୱାଦଶୀ, ଶେଷରଶ୍ମି, ରାଶିଫଳ, ମୋ କଥାଟି ସରିନାହିଁ ପ୍ରଭୃତି ତାଙ୍କର ଶ୍ରେଷ୍ଠ ଗଳ୍ପଗ୍ରନ୍ଥ । ମୋ କବିତା ଓ କୁଟାଖିଏ ଲୋଡ଼ା, ମନେନାହିଁ କବିତା ଗ୍ରନ୍ଥ ଏବଂ ଲୁହାର ମଣିଷ, ଆଜିର ମଣିଷ, ମୁକ୍ତାଗଡ଼ର ଭୁଖା, ଅମରଚିତା ତାଙ୍କର ମନୋଜ୍ଞ ଉପନ୍ୟାସ । 'ସାହିତ୍ୟିକ', ନେତୃତ୍ୱ ଓ ନେତୃତ୍ୱ ତାଙ୍କର ପ୍ରବନ୍ଧ ପୁସ୍ତକ ।

ଆଲେଖ୍ୟ ପ୍ରବନ୍ଧରେ ଲେଖକ ସାହିତ୍ୟର ଏକ ମୌଳିକ ପ୍ରଶ୍ନ ଉତ୍ଥାପନ କରିଛନ୍ତି । ମନୁଷ୍ୟ କ୍ଷୁଦ୍ର ନୁହେଁ, ସେ ବିରାଟ ଶକ୍ତିର ଅଧିକାରୀ । ମନୁଷ୍ୟ ଶିଶୁ ଏକ ଅନନ୍ତ ସମ୍ଭାବନାର ଅଧିକାରୀ । ଯେଉଁ ସାହିତ୍ୟ ଭିତରେ ଭବିଷ୍ୟତ ସମାଜର ଉଜ୍ଜ୍ୱଳ ସମ୍ଭାବନା-ଆଭାସ ପ୍ରତିବିମ୍ବିତ ହୋଇଥାଏ ତାହା ଯଥାର୍ଥରେ ଅସାମାନ୍ୟ । ଶିଶୁ ଆଗାମୀ ଯୁଗର ପ୍ରତୀକ, ଭବିଷ୍ୟତ ସ୍ୱପ୍ନର ପ୍ରତୀକ । ସେ ଅମୃତର ଅଧିକାରୀ । ବିଶ୍ୱରୂପ-ଦର୍ଶନର ଏହା ଏକ ମୌଳିକ ପ୍ରଶ୍ନ । ପ୍ରବନ୍ଧରେ ଲେଖକ ଏହି ସୂକ୍ଷ୍ମ ତତ୍ତ୍ୱ ଉପରେ ଆଲୋକପାତ କରିଛନ୍ତି । ଭାରତୀୟ ପୁରାଣ ଓ ଅନ୍ୟାନ୍ୟ ସାହିତ୍ୟରେ ବିଶ୍ୱରୂପ-ଦର୍ଶନର ସ୍ପଷ୍ଟ ସଙ୍କେତ ମିଳିଥାଏ । ପ୍ରାବନ୍ଧିକ ସେଥିପାଇଁ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାଠାରୁ ଆରମ୍ଭ କରି ବିଶ୍ୱ ରୂପସୀ ପାର୍ବତୀଙ୍କ ରୂପ ଦର୍ଶନ ଲାଳସା ପର୍ଯ୍ୟନ୍ତ ପୌରାଣିକ ତଥ୍ୟ ଗୁଡ଼ିକର ଏକ ଅଭିନବ ବ୍ୟାଖ୍ୟା ଦେଇଛନ୍ତି ।

---

## ଜ୍ୟୋତିର୍ବିଦ୍ ଚନ୍ଦ୍ରଶେଖର ସିଂହସାମନ୍ତ

କବିବର ରାଧାନାଥ ରାୟ ଚନ୍ଦ୍ରଶେଖରଙ୍କ ମହତ୍ତ୍ୱ ପ୍ରକାଶ କରି ଲେଖିଥିଲେ—

"ସିଦ୍ଧାନ୍ତ ଦର୍ପଣ ହେବନାହିଁ ଲୟ
ନର ଦେହେ ଥିବ ଯାବତ ହୃଦୟ ।"

ଯାହାଙ୍କୁ ଉଦ୍ଦେଶ୍ୟ କରି କବିଙ୍କର ଲେଖନୀ ସେଦିନ ଏପରି ପ୍ରଶଂସା ମୁଖରିତ ହୋଇଥିଲା, ସେହି ପ୍ରତିଭାଶାଳୀ ଭାରତ ବିଖ୍ୟାତ ଜ୍ୟୋତିର୍ବିଦ ହେଉଛନ୍ତି ଉତ୍କଳର କୃତୀସନ୍ତାନ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ । ୧୮୩୬ ମସିହା ଜାନୁୟାରୀ ମାସ ୧୧ ତାରିଖରେ ଖଣ୍ଡପଡ଼ା ରାଜ୍ୟରେ ଏହି ମହାପୁରୁଷଙ୍କର ଜନ୍ମ

ଏବଂ ୧୯୦୪ ମସିହା ଜୁନ୍‌ମାସ ୧୦ ତାରିଖରେ ମୃତ୍ୟୁ ହୋଇଥିଲା । ଦାରିଦ୍ର୍ୟ, ଅଭାବ ଏବଂ ରୋଗର ଯନ୍ତ୍ରଣା ଏହି ପ୍ରତିଭାଶାଳୀ ପୁରୁଷଙ୍କୁ ତାଙ୍କର ସାଧନାପଥରୁ ନିବୃତ୍ତ କରି ପାରି ନଥିଲା । ଚନ୍ଦ୍ରଶେଖର 'ଜ୍ୟୋତିର୍ବିଦ୍ୟା' ଅଧ୍ୟୟନ ପାଇଁ ନିଜର ଜୀବନ ଉତ୍ସର୍ଗ କରିଥିଲେ । ତାଙ୍କର ଆଜୀବନ ସାଧନାର ଫଳ ହେଉଛି ଅମୂଲ୍ୟ ଗ୍ରନ୍ଥ 'ସିଦ୍ଧାନ୍ତ ଦର୍ପଣ' । ଏହିପରି ଜଣେ କ୍ଷଣଜନ୍ମା ସାଧକଙ୍କୁ ସାରା ଭାରତବର୍ଷରେ ପରିଚିତ କରାଇବା ଲାଗି ରେଭେନ୍‌ସା କଲେଜର ଉଦ୍ଭିଦ ବିଜ୍ଞାନ ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ଏହି ମୂଲ୍ୟବାନ ଜୀବନୀ ମୂଳକ ପ୍ରବନ୍ଧଟି ଲେଖିଥିଲେ । 'ଚନ୍ଦ୍ରଶେଖର'ଙ୍କ ପରି ଜଣେ ଉଚ୍ଚକୋଟୀର ସିଦ୍ଧପୁରୁଷଙ୍କ ସ୍ମୃତି ପ୍ରତି ଲେଖକଙ୍କର ଏହା ହେଉଛି ବିନମ୍ର ଶ୍ରଦ୍ଧାଞ୍ଜଳି ।

## ମନୁଷ୍ୟତା

ଓଡ଼ିଶାର ଉଚ୍ଚ ମାଧ୍ୟମିକ ଶିକ୍ଷା ବିଭାଗର ବିଭିନ୍ନ ବିଦ୍ୟାଳୟରେ ଲେଖକ ବହୁବର୍ଷ ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟକରି ଯେଉଁ ଅଭିଜ୍ଞତା ଅର୍ଜନ କରିଛନ୍ତି ତାହାର ଯଥାର୍ଥ ପ୍ରତିବିମ୍ବ ତାଙ୍କର ଲିଖିତ ବହୁ ପ୍ରବନ୍ଧରେ ଦେଖିବାକୁ ମିଳେ ।

ସାହିତ୍ୟର ସମାଲୋଚନା କ୍ଷେତ୍ରରେ ଲେଖକଙ୍କର ଦାନ କିଛି କମ୍ ନୁହେଁ । ତାଙ୍କର ପ୍ରାଚୀନ କାବ୍ୟ ସାହିତ୍ୟ ସମ୍ପର୍କୀୟ ଆଲୋଚନାମାଳା ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ବହୁଚିନ୍ତାତ୍ମକ ପ୍ରବନ୍ଧ ପ୍ରକାଶିତ ହୋଇଥାଏ ।

ଆଲୋଚ୍ୟ ପ୍ରବନ୍ଧରେ ପ୍ରାବନ୍ଧିକ ବିଶ୍ୱରେ ମାନବର ସ୍ଥାନ ଏବଂ ସମାଜରେ ତାର କର୍ତ୍ତବ୍ୟ ସଂପର୍କରେ ବିଚାର କରିଛନ୍ତି । ସୃଷ୍ଟିରେ ମନୁଷ୍ୟ ଶ୍ରେଷ୍ଠ ପ୍ରାଣୀ, ବିବେକ ପ୍ରଜ୍ଞା, ମନ ତାର ଏକାନ୍ତ ନିଜସ୍ୱ । ଉଭୟ ପ୍ରବୃତ୍ତି ଏବଂ ନିବୃତ୍ତି ବରାବର ବ୍ୟକ୍ତି ଉପରେ ଆଧିପତ୍ୟ ବିସ୍ତାର ପାଇଁ ବ୍ୟସ୍ତ । ପଶୁତ୍ୱ ଏବଂ ଦେବତ୍ୱ ଏ ଦୁଇଟି ଶକ୍ତି ବ୍ୟକ୍ତିଠାରେ ବିଦ୍ୟମାନ । ଏହି ମନୁଷ୍ୟ ନିଜ ଶକ୍ତିର ଅପବ୍ୟବହାର କରି ପଶୁରେ ପରିଣତ ହୋଇପାରେ ଏବଂ ସମୟରେ ଶକ୍ତି ଓ ବିବେକର ଚାଳନା ଯୋଗୁଁ ସେ ମଧ୍ୟ ଦେବତ୍ୱର ଅଧିକାରୀ ହୋଇପାରେ । ପ୍ରାବନ୍ଧିକ ଜୀବନର ଏହି ମୌଳିକ ସମସ୍ୟା ଉପରେ ଆଲୋକପାତ କରିଛନ୍ତି ଯେ ସତ୍ୟ-ପ୍ରେମରେ ବିଭୋର ହୋଇ ନିଜକୁ ଉପଲବ୍ଧି କରି ପାରିଲେ ମନୁଷ୍ୟ ନିଶ୍ଚୟ ଦେବତ୍ୱ ପ୍ରାପ୍ତ ହେବ ।

---

## ବିବର୍ତ୍ତନବାଦର କଥା

୧୯୨୨ ମସିହାରେ ଲେଖକଙ୍କର ଜନ୍ମ । ସେ ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣୀ ବିଜ୍ଞାନ ବିଭାଗରେ ମୁଖ୍ୟ ଅଧ୍ୟାପକ । ସେ 'ପ୍ରାଣୀବିଜ୍ଞାନ' ସମ୍ପର୍କୀୟ ବହୁ ପ୍ରବନ୍ଧ ପତ୍ର ପତ୍ରିକାମାନଙ୍କରେ ଲେଖି ପରିଚିତ । 'ବେଙ୍ଗ' ସମ୍ପର୍କରେ ତାଙ୍କର ଖଣ୍ଡିଏ ଗ୍ରନ୍ଥ ପ୍ରକାଶିତ ହୋଇଛି ।

ପ୍ରାବନ୍ଧିକ ଆଲୋଚ୍ୟ ପ୍ରବନ୍ଧରେ ମାନବ-ସୃଷ୍ଟିର ଏକ ଅତି ଉପାଦେୟ ପ୍ରଶ୍ନ ଆଲୋଚନା କରିଛନ୍ତି । ମନୀଷୀ ଚାର୍ଲସ୍ ରବର୍ଟ ଡାର୍‌ଉଇନ୍ ( ୧୮୦୯ ରୁ ୧୮୮୨ ) ବିବର୍ତ୍ତନବାଦ ତଥ୍ୟର ଜନ୍ମଦାତା ।

କି ମଣିଷ, କି ପଶୁ, କି ଉଦ୍ଭିଦ ପ୍ରତ୍ୟେକଙ୍କ ମଧ୍ୟରେ ନିଜ ନିଜର ଅସ୍ତିତ୍ୱ ପାଇଁ ଯେ ଅନବରତ ସଂଗ୍ରାମ ଚାଲିଛି ଲେଖକ ତାହାହିଁ ପ୍ରବନ୍ଧରେ ସୂଚିତ କରିଛନ୍ତି ।



## ପରିବାର

ଅଧ୍ୟାପକ ବିପିନବିହାରୀ ରାୟ

ଲେଖକଙ୍କର ଜନ୍ମ ୧୮୮୯ ମସିହାରେ । ଓଡ଼ିଆ ସାହିତ୍ୟରେ ପ୍ରସିଦ୍ଧ ପ୍ରାବନ୍ଧିକ ଏବଂ ଦାର୍ଶନିକ ଭାବରେ ଅଧ୍ୟାପକ ରାୟ ସୁପରିଚିତ । ସେ ଓଡ଼ିଶାର ବିଖ୍ୟାତ ରେଭେନ୍‌ସା କଲେଜରେ ଦର୍ଶନ ଶାସ୍ତ୍ରରେ ଅଧ୍ୟାପକ କାର୍ଯ୍ୟ କରି ଅବସର ଗ୍ରହଣ କରିଛନ୍ତି । ଓଡ଼ିଆ ଭାଷାରେ ଦାର୍ଶନିକ ଚିନ୍ତାମୂଳକ ପ୍ରବନ୍ଧର ଅଭାବ ଦୂରକରି ଅଧ୍ୟାପକ ରାୟ ବହୁ ପ୍ରବନ୍ଧ ରଚନା କରିଛନ୍ତି ଏବଂ ଓଡ଼ିଆ ପତ୍ର ପତ୍ରିକାରେ ସେ ସବୁ ପ୍ରକାଶିତ ଏବଂ ଆଦୃତ ହୋଇଅଛି । ତର୍କ ଶାସ୍ତ୍ର, ପ୍ରବନ୍ଧ ସୋପାନ, ସାମାଜିକ ପ୍ରବନ୍ଧ ପ୍ରଭୃତି ତାଙ୍କର ଶ୍ରେଷ୍ଠ ପ୍ରବନ୍ଧ ସଂକଳନ । ଓଡ଼ିଆ ଗଦ୍ୟ ସାହିତ୍ୟରେ ଅଧ୍ୟାପକ ରାୟ ଏକ ନିର୍ଦ୍ଦିଷ୍ଟ ଶୈଳୀର ପ୍ରବର୍ତ୍ତକ ରୂପେ ସ୍ୱୀକୃତ ।

ଆଲୋଚ୍ୟ ପ୍ରବନ୍ଧରେ ଲେଖକ ଭାରତୀୟ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷିତ କରିଛନ୍ତି । ପରିବାର ହିଁ ସାମାଜିକ ଜୀବନର ହୃତ୍‌ପିଣ୍ଡ ଏବଂ ପରିବାର ମଧ୍ୟରେ ବ୍ୟକ୍ତିର ସର୍ବବିଧ ବିକାଶ ସମ୍ଭବ, ପାରିବାରିକ ଜୀବନର ମହତ୍ତ୍ୱ ତଥା ପବିତ୍ରତା ସର୍ବବାଦୀ ସମ୍ମତ । ଭକ୍ତି, ପ୍ରେମ, ସ୍ନେହ ତଥା ଅନ୍ୟାନ୍ୟ ମାନବିକ ଗୁଣର ପରିପ୍ରକାଶ ଏବଂ ଶିକ୍ଷା ସଦ୍‌ବୃତ୍ତିର ଅନୁଶୀଳନ ପାଇଁ ପରିବାର ହିଁ ଉପଯୁକ୍ତ କ୍ଷେତ୍ର । ପାରିବାରିକ ଜୀବନର ଯାହା କିଛି ସୌନ୍ଦର୍ଯ୍ୟ ଏବଂ ଆକର୍ଷଣ ତାହା ପ୍ରାବନ୍ଧିକ ଶକ୍ତିଶାଳୀ ଭାଷାରେ ବଳିଷ୍ଠ ଯୁକ୍ତିସହ ପ୍ରତିପାଦନ କରିଛନ୍ତି ।

## ବିଦ୍ୟାବତ୍ତା ଓ ଧନବତ୍ତା

କବିବର ରାଧାନାଥ ରାୟଙ୍କର (୧୮୪୮—୧୯୦୮) ସୁଯୋଗ୍ୟ ପୁତ୍ର ରୂପେ ଶଶିଭୂଷଣ ରାୟ (୧୮୭୭—୧୯୪୩) ଉଚ୍ଚକୋଟୀର ସମସ୍ୟାମୂଳକ ଚିନ୍ତାତ୍ମକ ଏବଂ ବର୍ଣ୍ଣନାତ୍ମକ ପ୍ରବନ୍ଧ ଲେଖି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି। କବିବର ରାଧାନାଥ କାବ୍ୟ, କବିତା ଲେଖି ଯେପରି ଉତ୍କଳୀୟ ପ୍ରକୃତିର ମନୋଜ୍ଞ ଚିତ୍ର ପ୍ରଦାନ କରିଥିଲେ, ଶଶିଭୂଷଣ ସେହିପରି ପ୍ରବନ୍ଧ ମାଧ୍ୟମରେ ଉତ୍କଳୀୟ ପ୍ରକୃତିର ଯଥାର୍ଥ ରସୋତ୍ତୀର୍ଣ୍ଣ ଆଲେଖ୍ୟ ଦେଇଯାଇଛନ୍ତି।

ଉତ୍କଳ ପ୍ରକୃତି, ଦାକ୍ଷିଣାତ୍ୟ ଭ୍ରମଣ, ଉତ୍କଳର ଚିତ୍ରଚିତ୍ର, ପ୍ରବନ୍ଧ ପ୍ରବାହ ପ୍ରଭୃତି ତାଙ୍କର ମୂଲ୍ୟବାନ ପ୍ରବନ୍ଧ ସଙ୍କଳନ।

ଆଲୋଚ୍ୟ ପ୍ରବନ୍ଧରେ ଲେଖକ ଏକ ଦିଗରେ ବିଦ୍ୟା, ପାଣ୍ଡିତ୍ୟ, ଜ୍ଞାନ ଓ ଅନ୍ୟଦିଗରେ ଧନବତ୍ତା ଏହାର ସମ୍ପର୍କରେ ତୁଳନାତ୍ମକ ଆଲୋଚନା କରି ବିଦ୍ୟାବତ୍ତା ତଥା ଜ୍ଞାନର ଉତ୍କର୍ଷ ପ୍ରତିପ୍ରଦାନ କରିଅଛନ୍ତି। ଧନପିପାସା ବିପତ୍ତିଜନକ, ବିଳାସ ବ୍ୟସନ ଆତୁର ମାତ୍ରାତ୍ମକ। କିନ୍ତୁ ବିଦ୍ୟାବତ୍ତାର ଅସୀମ ସର୍ବୋଚ୍ଚ ବିଦ୍ୟା ଚର୍ଚ୍ଚାରେ ଯେଉଁ ଆନନ୍ଦ ଲଭିହୁଏ, ତାହା ଶାଶ୍ୱତ ଏବଂ ପ୍ରକୃତ।

---

## ଦୁନିଆ ରୀତି ଏ

ଚିନ୍ତାତ୍ମକ ଏବଂ ସରଳ ପ୍ରବନ୍ଧ ଲେଖି ଯେଉଁ ମୁଷ୍ଟିମେୟ ଚିନ୍ତାଶୀଳ ସାହିତ୍ୟିକ ଓଡ଼ିଆ ସାହିତ୍ୟରେ ସୁନାମ ଅର୍ଜନ କରିଛନ୍ତି ଗୋପାଳଚନ୍ଦ୍ର ପ୍ରହରାଜ ସେମାନଙ୍କ ମଧ୍ୟରେ ଅନ୍ୟତମ। "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା କୋଷ" ତାଙ୍କର ଅମଳିନ କୃତି। ତାଙ୍କର ଗଦ୍ୟ ରଚନାରେ ସଂସ୍କାର ତଥା ବ୍ୟଙ୍ଗଚିତ୍ରର ପ୍ରଭାବ ଅଧିକ। "ଭାଗବତ ଟୁଙ୍ଗୀରେ ସନ୍ଧ୍ୟା" "ବାଇ ମହାନ୍ତି ପାଞ୍ଜି" "ନନାଙ୍କ ବସ୍ତାନି" ତାଙ୍କର ବହୁ ଆଦୃତ ପ୍ରବନ୍ଧ ପୁସ୍ତକ।

"ଦୁନିଆ ରୀତି ଏ" ପ୍ରବନ୍ଧରେ ଲେଖକ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଏବଂ ସମାଜ ମଧ୍ୟରେ ମୌଳିକ ସମ୍ପର୍କର ଅବତାରଣା କରିଛନ୍ତି।

ବନ୍ଧୁତା ସମ୍ବନ୍ଧ ଉଦ୍ଦେଶ୍ୟ ଉନ୍ନତ ଏବଂ ନିର୍ମଳ ହେବା ଉଚିତ। ବିପଦବେଳେ ଯେ ବନ୍ଧୁ ସେ ପ୍ରକୃତ ବନ୍ଧୁ। ପ୍ରାବନ୍ଧିକ ଅନ୍ୟପ୍ରକାର ବନ୍ଧୁତାକୁ "ଦେଖା ସୁନ୍ଦର କଖାରୁ ବଡ଼ି" ବୋଲି ଅଭିହିତ କରିଛନ୍ତି। ପ୍ରାବନ୍ଧିକଙ୍କର ଯୁକ୍ତି ଯେ ନିଃସ୍ୱାର୍ଥପର ବନ୍ଧୁତା ହିଁ ପ୍ରକୃତ ବନ୍ଧୁତା ଏବଂ ତାହା ସ୍ଥାୟୀ ହୁଏ। ଅନ୍ୟଥା ଖୋଟ ନିଆଁ ସମ୍ପର୍କ ଉପୁଜି ଥାଏ।

---

## ପ୍ରାଚୀନ ଯାଜପୁର

ପ୍ରାବନ୍ଧିକ ଓଡ଼ିଆ ସାହିତ୍ୟରେ ସୁପରିଚିତ । ସେ ଧାରାବାହିକ ଭାବରେ ଓଡ଼ିଶାର ପ୍ରତ୍ନତତ୍ତ୍ୱ ସମ୍ପର୍କୀୟ ପ୍ରବନ୍ଧ ସମୂହ ବିଭିନ୍ନ ପତ୍ରପତ୍ରିକାରେ ଲେଖିଥାନ୍ତି । ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ସମ୍ପର୍କରେ ତାଙ୍କର ଗବେଷଣାମୂଳକ ରଚନା ସର୍ବଜନାଦୃତ । ଆଲୋଚ୍ୟ ପ୍ରବନ୍ଧରେ ଲେଖକ ଓଡ଼ିଶାର ପ୍ରସିଦ୍ଧ ପୌରାଣିକ ବିରଜାକ୍ଷେତ୍ର ସମ୍ପର୍କରେ ବିସ୍ତୃତ ଆଲୋଚନା କରିଛନ୍ତି । ଯାଜପୁର ଉତ୍କଳରେ ଦେବୀ ପୂଜାର ପ୍ରଧାନ ପୀଠ । ବିରଜାଦେବୀ ଅତି ପ୍ରାଚୀନ । ବୈତରଣୀ ନଦୀର ଉତ୍ତର ତଟରେ ବରାହ ପୀଠ ଅବସ୍ଥିତ । ପ୍ରାଚୀନ ଓଡ଼ିଶାର ବିଭିନ୍ନ ରାଜ ବଂଶର ରାଜତ୍ୱରେ ଏ ଠାରେ ଯେଉଁସବୁ କୀର୍ତ୍ତି ସ୍ଥାପିତ ହୋଇଥିଲା ତାହାର ଯୁଗୋପଯୋଗୀ ଆଭାସ ଏହି ପ୍ରବନ୍ଧରୁ ମିଳିଥାଏ



## ପୁଷ୍ପଗିରି ବିଶ୍ୱବିଦ୍ୟାଳୟ

ସ୍ୱର୍ଗତ ଘନଶ୍ୟାମ ଦାସ ଓଡ଼ିଶାର ବୃହତ୍ତମ କଲେଜ ରେଭେନ୍‌ସା କଲେଜରେ ବହୁ ବର୍ଷ ଧରି ଇତିହାସ ଅଧ୍ୟାପକ ଥିଲେ । ତାଙ୍କର ପ୍ରବନ୍ଧଗୁଡ଼ିକ ମୁଖ୍ୟତଃ ଐତିହାସିକ ଗବେଷଣାମୂଳକ । ପ୍ରାଚୀନ ଓଡ଼ିଶାର ଶିକ୍ଷା, ସଂସ୍କୃତି ଓ ସଭ୍ୟତା ଉପରେ ଆଲୋକପାତ କରି ସେ ବହୁ ପ୍ରବନ୍ଧ ରଚନା କରି ଯାଇଛନ୍ତି । ଆଲୋଚ୍ୟ ପ୍ରବନ୍ଧରେ ପ୍ରାବନ୍ଧିକ ଭାରତବର୍ଷର ଏକ ପ୍ରସିଦ୍ଧ ପ୍ରାଚୀନ ବିଶ୍ୱବିଦ୍ୟାଳୟ ସଂପର୍କରେ ଗଭୀର ଅଧ୍ୟୟନ କରିଛନ୍ତି । ପୁଷ୍ପଗିରି ବିଶ୍ୱ ବିଦ୍ୟାଳୟ ଯେ ଦିନେ ଶିକ୍ଷା, ସଂସ୍କୃତି ଓ ଜ୍ଞାନର ଦୀପସ୍ତମ୍ଭ ସଦୃଶ ଥିଲା ଏହା ହିଁ ପ୍ରବନ୍ଧରେ ପ୍ରଦର୍ଶିତ ।



## ମହାଭାରତର ରାଜନୀତି

ଆଲୋଚ୍ୟ ପ୍ରବନ୍ଧରେ ଲେଖକ ପ୍ରାଚୀନ ଭାରତୀୟ ସାହିତ୍ୟର ଏକ ବିଶିଷ୍ଟ ପର୍ଯ୍ୟାୟ 'ମହାଭାରତ' ସଂପର୍କରେ ଆଲୋଚନା କରିଛନ୍ତି । ବିଶେଷତଃ ମହାଭାରତ ଯେ ରାଷ୍ଟ୍ରନୀତି, ସମାଜନୀତି ଏବଂ ଶିକ୍ଷା ନୀତିର ଏକ ପ୍ରଧାନ ଉତ୍ସ ଏବ ପ୍ରାଚୀନ ଭାରତରେ ରାଷ୍ଟ୍ରନୀତି କିପରି ଥିଲା ତାହା ହିଁ ପ୍ରବନ୍ଧରେ ପ୍ରାବନ୍ଧିକ ଶକ୍ତିଶାଳୀ ଭାଷାରେ ଆଲୋଚନା କରିଛନ୍ତି । ମହାଭାରତର ନାନା କାହାଣୀ ଓ ଚରିତ୍ର ସାହାଯ୍ୟରେ ତାହାଙ୍କର ପ୍ରତିପାଦିତ ବିଷୟ ଅଧିକ ସ୍ପଷ୍ଟ ହୋଇଅଛି ।



# ଅମ୍ବିରଦେବଙ୍କ ଓରୁଗଣ୍ଟି ଶାସନ

ଦକ୍ଷିଣ ଓଡ଼ିଶାର ଶିଳା-ସଂସ୍କୃତ କ୍ଷେତ୍ରରେ ଲେଖକ ସୁପରିଚିତ । ତାଙ୍କର ପ୍ରବନ୍ଧ ସମୂହ ପ୍ରତ୍ନତତ୍ତ୍ୱ ସମ୍ବନ୍ଧୀୟ । ଆଲୋଚ୍ୟ ପ୍ରବନ୍ଧରେ ଲେଖକ ପ୍ରାଚୀନ ଓଡ଼ିଶାର ଏକ ପ୍ରଧାନ ଐତିହାସିକ ତଥ୍ୟ ଉପରେ ଆଲୋକପାତ କରିଛନ୍ତି । ଓଡ଼ିଶାର ଦକ୍ଷିଣ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷାର ଯେଉଁ ସ୍ୱାତନ୍ତ୍ର୍ୟ ରକ୍ଷିତ ହୋଇଥିଲା ତାହାହିଁ ପ୍ରବନ୍ଧରେ ପ୍ରତିଫଳିତ । ଅମ୍ବିରଦେବ ବଡ଼ ପ୍ରତାପୀ ଓ ବଳବାନ ରଜା ଥିଲେ । ସେ ଯବନ-ମାନଙ୍କୁ ପରାଜିତ କରିଥିବାର ଜଣାଯାଏ । ତାହାଙ୍କର ପୁତ୍ର କପିଳେଶ୍ୱର ଦେବ ମହାପାତ୍ର ତେଲଙ୍ଗାନା ରାଜ୍ୟର ଚେଡ଼ିମାନଙ୍କର ଶାସକରୂପେ ରହି ଶାସନ କରୁଥିଲେ ।

ସେହିପରି ବିଶଦବିବରଣୀ ଏହି ଐତିହାସିକ ତଥ୍ୟ ସମ୍ବଳିତ ପ୍ରବନ୍ଧରୁ ଜଣାପଡ଼େ ।

---

# ଯୌବନ

ଓଡ଼ିଆ ସାହିତ୍ୟରେ ପ୍ରସିଦ୍ଧ ପ୍ରାବନ୍ଧିକ ଶଶିଭୂଷଣ ରାୟ ଆଲୋଚ୍ୟ ପ୍ରବନ୍ଧରେ ମନୁଷ୍ୟ ଜୀବନର ଏକ ପ୍ରଧାନ ବିଭାଗ ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି । ବାଲ୍ୟାବସ୍ଥାପରେ ଯୌବନର ଆଗମ ହୁଏ । ଯୌବନ ସ୍ପର୍ଶରେ ମାନବ ହୃଦୟ ନିହିତ ବିଚିତ୍ର ଭାବ ନିଚୟ ପ୍ରସ୍ଫୁଟିତ ହୁଏ । ଯୌବନ ହିଁ ମାନବ ଜୀବନର ସାରଭାଗ । ମଧୁମୟ ଯୌବନ ଚିର-ସ୍ଥାୟୀ ହେଉ ଏହା ସମସ୍ତଙ୍କର ବାସନା । କିନ୍ତୁ ସମୟର ଗତି ଅପ୍ରତିହତ ତେଣୁ ଯୌବନ ରୂପ ମାହେନ୍ଦ୍ର ଯୋଗର ପ୍ରତ୍ୟେକ ମୁହୂର୍ତ୍ତ ଉପରେ ଜୀବନର ସଫଳତା ନିର୍ଭର କରେ । ଏହା ସମସ୍ତେ ମନେ ରଖିବା ଉଚିତ ।

ପ୍ରେମ, ବନ୍ଧୁତା ଓ ଅନ୍ୟାନ୍ୟ ମାନବିକ ଗୁଣର ବିକାଶ ନିମିତ୍ତ ଯୌବନ ହିଁ ପ୍ରକୃଷ୍ଟ ସମୟ । ପ୍ରାବନ୍ଧିକ ଏ ପ୍ରବନ୍ଧରେ ସମସ୍ତେ ଯେପରି ଯୌବନାବସ୍ଥାର ସଦ୍ ବ୍ୟବହାର କରିବେ ଓ ପ୍ରକୃତ ମନୁଷ୍ୟତାର ବିକାଶ ନିମନ୍ତେ ଚେଷ୍ଟିତ ହେବେ ତାହା ହିଁ ସୂଚିତ କରିଛନ୍ତି । ତେଣୁ ଯୌବନରେ ମାନବର ଦାୟିତ୍ୱ ସର୍ବାଧିକ । ସେଥିପାଇଁ ଏହି ସମୟରେ ସତର୍କତା ଅବଲମ୍ବନ କର୍ତ୍ତବ୍ୟ ।

# ଶିକ୍ଷା

ମାନବଜୀବନର ସମସ୍ତ ବିକାଶର ହେତୁ ହେଉଛି ଶିକ୍ଷା; କିନ୍ତୁ ସେ ଶିକ୍ଷା କି ପ୍ରକାର ହେବା ଉଚିତ ? ବ୍ୟକ୍ତି ଓ ସମାଜର ଶିକ୍ଷା ପ୍ରତି କି ପ୍ରକାର ଅଭିମୁଖ୍ୟ ହେବା ଉଚିତ, ଏହା ହେଉଛି ଏକ ମୌଳିକ ପ୍ରଶ୍ନ । ବିଶ୍ୱ ସମ୍ବନ୍ଧରେ ପ୍ରକୃତ ତତ୍ତ୍ୱ ଜାଣିବା ହେଉଛି ଶିକ୍ଷା ଏବଂ ସେହି ଶିକ୍ଷାର ପ୍ରକୃତ ଶିକ୍ଷକ ବ୍ୟକ୍ତିର ହୃଦୟ । ଭୌତିକ ଏବଂ ଆଧ୍ୟାତ୍ମିକ ଜ୍ଞାନର ଗନ୍ତାଘର ହେଉଛି ନିଜର ମନ । ତାହା ସୁପ୍ତ ଅବସ୍ଥାରେ ଥାଏ ଅଉ ବାହାରର ଶିକ୍ଷକ ତାକୁ ଜାଗ୍ରତ କରାଇ ଥାଏ । ଆଲୋଚନା ପ୍ରସଙ୍ଗରେ ପ୍ରାବନ୍ଧିକ ଶ୍ରୀମଦ୍ ଭଗବତ ବର୍ଣ୍ଣିତ ଅବଧୂତ ସନ୍ନ୍ୟାସୀଙ୍କର ଚବିଶ ଗୁରୁ କଥା ଉଲ୍ଲେଖ କରିଛନ୍ତି । ଜଗତରେ କେହି କାହାକୁ ଶିକ୍ଷା ଦିଏ ନାହିଁ । ବାହାର ଶିକ୍ଷକ କେବଳ ପରାମର୍ଶ ଦିଏ । ବାହାର ଶିକ୍ଷକ ଭିତରର ଶିକ୍ଷକକୁ ଜାଗ୍ରତ କରାଇ ଜ୍ଞାନର ବିକାଶ କରାଏ ।

ପ୍ରାବନ୍ଧିକ ନିଜେ ଅଧ୍ୟାପନାକ୍ଷେତ୍ରରେ ନିଯୁକ୍ତ, ତେଣୁ ତାଙ୍କର ଶିକ୍ଷା ସଂପର୍କୀୟ ଏହି ଆଲୋଚନା ସ୍ୱ ଅଭିଜ୍ଞତାପ୍ରସୂତ— ।

ଲେଖକଙ୍କର ଶିକ୍ଷା ସମସ୍ୟା ସମ୍ପର୍କରେ ବିଭିନ୍ନ ପ୍ରବନ୍ଧ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହୋଇଅଛି ।

# ଆକସ୍ମିକତା ଓ ଆବିଷ୍କାର

ଡକ୍ଟର ବିଦ୍ୟାଧର ପାଢ଼ୀ (ଜନ୍ମ ୧୯୧୩), ରେଭେନ୍ସା କଲେଜରେ ଉଦ୍ଭିଦ ବିଜ୍ଞାନରେ ରିଡ଼ର୍ ଏବଂ ଉଦ୍ଭିଦ ବିଜ୍ଞାନ ସଂପର୍କୀୟ ତାଙ୍କର ବହୁ ପ୍ରବନ୍ଧ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହୋଇଅଛି । ଆଲୋଚ୍ୟ ପ୍ରବନ୍ଧଟି ତାଙ୍କର ଗବେଷଣାପ୍ରସୂତ ମୌଳିକ ରଚନା ।

ମାନବ ସମାଜର ବିକାଶ ଏବଂ ଅନ୍ଧକାର ଯୁଗରୁ ଆରମ୍ଭ କରି ବିଂଶ-ଶତାବ୍ଦୀର ସଭ୍ୟତା ପ୍ରବାହ ପର୍ଯ୍ୟନ୍ତ ତାର ଯେଉଁ ଅଗ୍ରଗତି ତାହାର ଇତିହାସ ଯେପରି କୌତୂହଳୋଦ୍ଦୀପକ ସେପରି ରହସ୍ୟମୟ । ସଭ୍ୟତା ବିକାଶର ପ୍ରାକ୍‌କାଳରେ ମନୁଷ୍ୟ ଶିକାର ଖୋଜୁ ଖୋଜୁ ସେ ନିଆଁର ସଂଧାନ ପାଇଥିବ ଏବଂ ପରେ ଦୈବାତ୍ କେବେ ପଥରକୁ ପଥର ଦେହରେ ପିଟି ବା କାଠକୁ କାଠ ଦେହରେ ଘଷି ସେ ନିଆଁ ଉତ୍ପାଦନ କରିବା ଶିଖିଥିବ । ସେହିପରି ପ୍ରାଚୀନ ନାବିକମାନେ ରୋଷେଇ କରୁଁ କରୁଁ କାଚର ସଂଧାନ ପାଇଥିବେ । ସେହିପରି ଉତ୍ତର ଆମେରିକାର ଆଦିବାସୀ ଟିଏ କମ୍ବଳ ରଙ୍ଗେଇବାକୁ ଯାଇ ଅଗ୍ନିନିକ ଭିତରେ ପେଟ୍ରୋଲ ଆବିଷ୍କାର କରିଥିବ । ସଭ୍ୟତାର ଇତିହାସ ଏହିପରି ଆକସ୍ମିକ ଆବିଷ୍କାରରେ ପରିପୂର୍ଣ୍ଣ । କଲମ୍ବସଙ୍କ ଆମେରିକା ଆବିଷ୍କାର, ବିଦ୍ୟୁତ ଶକ୍ତିର ବିକାଶ, ଫାରାଡେଙ୍କ ଡାଇନାମୋ, ପଦାର୍ଥ-

ବିଜ୍ଞାନର ପ୍ରୟୋଗ ଫଳରେ ରେଡ଼ିଓ, ଟେଲିଫୋନ, ଟେଲିଭିଜନ ପ୍ରଭୃତିର ଉଦ୍ଭାବନ, ଇନ୍‌ସୁଲିନ ଆବିଷ୍କାର ଯେପରି ଆକସ୍ମିକ ସେହିପରି ସଭ୍ୟତାର ଇତିହାସରେ ଏକ ଏକ ପ୍ରଧାନ ଘଟଣା ।

ପ୍ରାବନ୍ଧିକ ବିଜ୍ଞାନ-କ୍ଷେତ୍ରରେ ଗବେଷଣାରତ ଥିବାରୁ, ଆଲୋଚ୍ୟ ପ୍ରବନ୍ଧରେ ସମଗ୍ର ଆବିଷ୍କାର ଏବଂ ଉଦ୍ଭାବନ ତଥ୍ୟ ଶକ୍ତିଶାଳୀ ଭାଷାରେ ବ୍ୟକ୍ତ କରି ପାରିଛନ୍ତି ।

## ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟ

ଲେଖକ ଶିକ୍ଷା ବିଜ୍ଞାନରେ ଅଧ୍ୟାପକ । ସଂଶ୍ଳିଷ୍ଟ ପ୍ରବନ୍ଧରେ ଆଧୁନିକ ଶିକ୍ଷା ଓ ତାର ବିଭିନ୍ନ ସମସ୍ୟା ସହିତ ଲେଖକ ସଂପୃକ୍ତ । ପ୍ରବନ୍ଧରେ ଲେଖକ ମାନସିକ ସ୍ୱାସ୍ଥ୍ୟ ଏବଂ ଶାରୀରିକ ସ୍ୱାସ୍ଥ୍ୟ ମଧ୍ୟରେ ପ୍ରଭେଦ କରି ଏବଂ ମନୁଷ୍ୟ ଜୀବନରେ ଉଭୟ ଶାରୀରିକ ଏବଂ ମାନସିକ ବିକାଶ ଆବଶ୍ୟକ ଏହାହିଁ ପ୍ରାନ୍ଧିକ ଅନୁଭବ କରିଛନ୍ତି । କାରଣ ବ୍ୟକ୍ତିକୁ ବଳିଷ୍ଠ ଏବଂ ସୁସ୍ଥ ସବଳ କରି ଗଢ଼ିବାକୁ ଗଲେ ଉଭୟର ବିକାଶ ଅପରିହାର୍ଯ୍ୟ । ସେଥିପାଇଁ ଲେଖକ ଦୈହିକ ବିକାଶ ଏବଂ ମାନସିକ ବିକାଶ ପାଇଁ କି କି ଉପାଦାନ ଦରକାର ତାହାର ମଧ୍ୟ ସୂଚନା ଦେଇଛନ୍ତି । ବ୍ୟକ୍ତିର ପୂର୍ଣ୍ଣାଙ୍ଗ ବିକାଶ କିମ୍ବା ପୂର୍ଣ୍ଣତା ଶିକ୍ଷାର ଏହି ମୌଳିକ ନିୟମ ରକ୍ଷା ଉପରେ ନିର୍ଭର କରେ ।

## ଶକ୍ତି ସନ୍ଧାନ

ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ (୧୮୯୦—୧୯୬୭), ନିଜର ବିଭିନ୍ନ ରଚନା ଦ୍ୱାରା ଓଡ଼ିଆ ସାହିତ୍ୟରେ ସୁପରିଚିତ । କି କବିତା, କି ପ୍ରବନ୍ଧ, ପ୍ରତ୍ୟେକ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ ଏବଂ ସମାଜ ସେବାଥିଲା ତାଙ୍କ କର୍ମମୟ ଜୀବନର ଏକ ବିଶିଷ୍ଟ ଦିଗ ।

ସମଗ୍ର ସୃଷ୍ଟିରେ ଦୁଇଟି ଶକ୍ତି କାର୍ଯ୍ୟ କରୁଅଛି—ଗୋଟିଏ ମନ୍ଦ ଓ ଆଉ ଗୋଟିଏ ଶୁଦ୍ଧ, ସୁନ୍ଦର, ନିର୍ମଳ ଶକ୍ତି । ମାନବ ଜୀବନରେ ମଧ୍ୟ ଦୁଇଗୋଟି ଶକ୍ତି ବିଦ୍ୟମାନ । ଏହି ମନ୍ଦ ଏବଂ ଶୁଦ୍ଧ ଶକ୍ତି ମଧ୍ୟରେ ବରାବର ସଂଘର୍ଷ ଚାଲିଛି ଏବଂ ମନ୍ଦଶକ୍ତି ଠାରୁ ଦୂରେଇ ରହିବା ବ୍ୟକ୍ତିର ପ୍ରକୃତ କର୍ତ୍ତବ୍ୟ । ସେଥିପାଇଁ ଲେଖକ କହିଛନ୍ତି ଯେ ଭାବନା ଠିକ୍ ହେଲେ କାର୍ଯ୍ୟ ଠିକ୍ ହେବ । ଜୀବନରେ ଅହମିକା ବର୍ଜନୀୟ ।

## ସଂସ୍କୃତିର ସଙ୍କେତ

ସୁନିର୍ବାଚିତ ଭାଷାରେ ବେଶ୍ ମାପଚୁପ କରି ସାମାନ୍ୟ ଗ୍ରେଟ ଗ୍ରେଟ ଘଟଣାକୁ ସଜେଇ କରି ଲେଖିବା ଏହି ଲେଖକଙ୍କର କୃତିତ୍ୱ । ଅର୍ଥନୀତି ଶାସ୍ତ୍ରରେ ଓଡ଼ିଆ ଏବଂ ସଂସ୍କୃତ ଭାଷାରେ ତାଙ୍କର ଦକ୍ଷତା ସୁବିଦିତ । ତାଙ୍କର ବହୁ ତଥ୍ୟ-ପ୍ରଧାନ ପ୍ରବନ୍ଧ

ବଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଅଛି । ଲେଖକ ବର୍ତ୍ତମାନ ଉତ୍କଳ ବିଶ୍ୱ-ବିଦ୍ୟାଳୟର କୁଳପତି । ସଭ୍ୟତା ଓ ସଂସ୍କୃତି ଦୁଇଟି ପୃଥକ୍ ଜିନିଷ ନୁହେଁ ଏବଂ ଏହି ଦୁଇଟି ଧାରା ମନୁଷ୍ୟ ସମାଜକୁ ଆଗ୍ରହୀ କରି ପ୍ରବାହିତ । ଲେଖକ ଆଲୋଚ୍ୟ ପ୍ରବନ୍ଧରେ ଭାରତୀୟ ସଂସ୍କୃତି ଓ ତାର ସ୍ୱରୂପ ସମ୍ପର୍କରେ ଯେପରି ବିଶ୍ଳେଷଣ କରିଛନ୍ତି ତାହା ତାଙ୍କର ମୌଳିକ ଦୃଷ୍ଟିକୋଣର ପରିଚାୟକ ।

## ମାର୍କଟ୍ୱେନ୍ ଓ ତାଙ୍କର ଜନ୍ମଭୂମି

ଅଧ୍ୟାପକ ଡକ୍ଟର କୃଷ୍ଣଚନ୍ଦ୍ର ଦାଶ ( ଜନ୍ମ ୧୯୧୪ ), ଓଡ଼ିଆ ସାହିତ୍ୟରେ ସୁପରିଚିତ । କାବ୍ୟ କବିତା, ସମାଲୋଚନାତ୍ମକ ପ୍ରବନ୍ଧ ଏବଂ ବିଦେଶ ଭ୍ରମଣ କାହାଣୀ ଲେଖି ଲେଖକ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ପ୍ରଭାତୀ, ବାରଣୀ, କଳକଲ୍ଲୋଳ, ନବମାଳିକା, ପାଷାଣ ଚରଣେ ରକ୍ତ ପ୍ରଭୃତି ତାଙ୍କର କବିତା ସଙ୍କଳନ । ଲଙ୍କାଯାତ୍ରୀ, ମୋ ସ୍ୱପ୍ନର କାଶ୍ମୀର ତାଙ୍କର ଭ୍ରମଣ ପୁସ୍ତକ । ଉପାଦେୟ ଶିଶୁସାହିତ୍ୟ ରଚନାରେ ସେ ମଧ୍ୟ ଅଗ୍ରଣୀ । ଲେଖକ ଓଡ଼ିଶାର "ଲୋକଗୀତ" ଉପରେ ଗବେଷଣା କରିଛନ୍ତି ।

ଆଲୋଚ୍ୟ ପ୍ରବନ୍ଧଟି ଲେଖକଙ୍କର ବିଦେଶରେ ଭ୍ରମଣ ଅନୁଭୂତି ଦ୍ୱାରା ଲିଖିତ । ଆମେରିକାର ବିଖ୍ୟାତ ଚିନ୍ତାଶୀଳ ଲେଖକଙ୍କ ଜୀବନୀ ସୁନ୍ଦର ଆଉ ସରସ ଭାଷାରେ ଉପସ୍ଥାପନ କରି ପାରିଛନ୍ତି ।

## ଭାଷା ଓ ଆଞ୍ଚଳିକତା

ଏହି ସନ୍ଦର୍ଭର ଲେଖକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ସମଗ୍ର ଓଡ଼ିଶାରେ ସୁପରିଚିତ । ସେ ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନର ପ୍ରଧାନ ଅଧ୍ୟାପକ । ସ୍ପଷ୍ଟବାଦୀ ବକ୍ତା ଓ ରାଜନୀତିମୂଳକ ପ୍ରାବନ୍ଧିକ ଭାବରେ ତାଙ୍କର ପ୍ରତିଷ୍ଠା ଓ ପ୍ରାଧାନ୍ୟ ସର୍ବଜନସ୍ୱୀକୃତ । ଛାତ୍ରଜୀବନରୁ ସେ ଏହି ପ୍ରତିଭାର ଅଧିକାରୀ ହୋଇ ଆସିଛନ୍ତି । ସାମ୍ପ୍ରତିକ ବିଶ୍ଳେଷଣ ତାଙ୍କର ଏକ ବିଶେଷତ୍ୱ । ବର୍ତ୍ତମାନ ଦେଶରେ ବିକାଶ ଲାଭ କରୁଥିବା ଆଞ୍ଚଳିକତାର ମୂଳକାରଣ ସେ ଏହି ପ୍ରବନ୍ଧରେ ନିର୍ଦ୍ଦେଶ କରି ତାହାର ଉପାଦେୟତା ତଥା ବିପଜ୍ଜନକତା ଉଭୟ ଦିଗରୁ ବିଚାର କରିଅଛନ୍ତି । ଯେଉଁ ସମସ୍ୟା ଆଜି ଦେଶରେ ଘୋର ବିବଦମାନ ବିଷୟ ହୋଇ ଠିଆ ହୋଇଛି— ଯାହା ହୁଏତ ଆମର ଐକ୍ୟ ଓ ସ୍ୱାଧୀନତା ଉପରେ ଦିନେ ଆଞ୍ଚ ଆଣିପାରେ ସେହି ପରି ପ୍ରଶ୍ନ ଉପରେ ଡକ୍ଟର ଦାସଙ୍କର ଏହି ଉପାଦେୟ ନିବନ୍ଧ ଯେ ଯଥେଷ୍ଟ ଆଲୋକ-ପାତ କରିପାରିଛି ଏଥିରେ ସନ୍ଦେହ ନାହିଁ ।